॥ ଶ୍ରୀହରିଃ ॥

1476

# ଶ୍ରୀଦୁର୍ଗାସପ୍ତଶତୀ ସଚିତ୍ର

## ଓଡ଼ିଆ ଅନୁବାଦ ତଥା ପାଠ-ବିଧି-ସହିତ

**श्रीदुर्गासप्तशती ( ओड़िआ )**




ଗୀତାପ୍ରେସ୍, ଗୋରଖପୁର

1476

॥ ଶ୍ରୀଦୁର୍ଗାଦେବ୍ୟୈ ନମଃ ॥

# ସଚିତ୍ର

# ଶ୍ରୀଦୁର୍ଗାସପ୍ତଶତୀ

## ଓଡ଼ିଆ ଅନୁବାଦ ତଥା ପାଠ-ବିଧି ସହିତ

श्रीदुर्गासप्तशती सटीक ( ओड़िआ )

ଯା ଶ୍ରୀଃ ସ୍ୱୟଂ ସୁକୃତିନାଂ ଭବନେଷ୍ୱଲକ୍ଷ୍ମୀଃ
ପାପାତ୍ମନାଂ କୃତଧିୟାଂ ହୃଦୟେଷୁ ବୁଦ୍ଧିଃ ।
ଶ୍ରଦ୍ଧା ସତାଂ କୁଳଜନପ୍ରଭବସ୍ୟ ଲଜ୍ଜା
ତାଂ ତ୍ୱାଂ ନତାଃ ସ୍ମ ପରିପାଳୟ ଦେବି ବିଶ୍ୱମ୍ ॥

ଅନୁବାଦକ

ପଣ୍ଡିତ ମାର୍କଣ୍ଡ ଦାସ

॥ ଶ୍ରୀଦୁର୍ଗାଦେବ୍ୟୈ ନମଃ ॥

# ବିଷୟ-ସୂଚୀ

ବିଷୟ ପୃଷ୍ଠା-ସଂଖ୍ୟା

॥ ଓଁ ନମଶ୍ଚଣ୍ଡିକାୟୈ ॥

# ପ୍ରଥମ ସଂସ୍କରଣର ନିବେଦନ

**ଦେବି ପ୍ରପନ୍ନାର୍ତ୍ତିହରେ ପ୍ରସୀଦ ପ୍ରସୀଦ ମାତର୍ଜଗତୋଽଖିଳସ୍ୟ ।**
**ପ୍ରସୀଦ ବିଶ୍ୱେଶ୍ୱରି ପାହି ବିଶ୍ୱଂ ତ୍ୱମୀଶ୍ୱରୀ ଦେବି ଚରାଚରସ୍ୟ ॥**

ଦୁର୍ଗାସପ୍ତଶତୀ ହିନ୍ଦୁଧର୍ମର ସର୍ବସମ୍ମାନିତ ଗ୍ରନ୍ଥ । ଏଥିରେ ଭଗବତୀଙ୍କ କୃପାର ସୁନ୍ଦର ଇତିହାସ ସହିତ ଅନେକ ଗୂଢ଼ ସାଧନରହସ୍ୟ ପରିପୂର୍ଣ୍ଣ ହୋଇଛି । କର୍ମ, ଭକ୍ତି ଏବଂ ଜ୍ଞାନର ତ୍ରିବିଧ ମନ୍ଦାକିନୀ ପ୍ରବାହିତ ହେଉଥିବା ଏହି ଗ୍ରନ୍ଥ ଭକ୍ତମାନଙ୍କ ପାଇଁ ବାଞ୍ଛାକଳ୍ପତରୁ ଅଟେ । ସକାମ ଭକ୍ତ ଏହାର ସେବନଦ୍ୱାରା ମନୋଽଭିଳଷିତ ଦୁର୍ଲଭତମ ବସ୍ତୁ ବା ସ୍ଥିତି ସହଜରେ ପ୍ରାପ୍ତ କରନ୍ତି ଏବଂ ନିଷ୍କାମ ଭକ୍ତ ପରମ ଦୁର୍ଲଭ ମୋକ୍ଷକୁ ପ୍ରାପ୍ତ ହୋଇ କୃତାର୍ଥ ହୁଅନ୍ତି । ରାଜା ସୁରଥଙ୍କୁ ମହର୍ଷି ମେଧା କହିଲେ—**''ତାମୁପୈହି ମହାରାଜ ଶରଣଂ ପରମେଶ୍ୱରୀମ୍ । ଆରାଧିତା ସୈବ ନୃଣାଂ ଭୋଗସ୍ୱର୍ଗାପବର୍ଗଦା ॥''** ହେ ମହାରାଜ ! ଆପଣ ସେହି ଭଗବତୀ ପରମେଶ୍ୱରୀଙ୍କ ଶରଣାଗତ ହୁଅନ୍ତୁ । ସେ ଆରାଧନାଦ୍ୱାରା ପ୍ରସନ୍ନ ହୋଇ ମନୁଷ୍ୟମାନଙ୍କୁ ଭୋଗ, ସ୍ୱର୍ଗ ଏବଂ ଅପୁନରାବର୍ତ୍ତୀ ମୋକ୍ଷ ପ୍ରଦାନ କରନ୍ତି । ଏହି ଅନୁସାରେ ଆରାଧନା କରି ଐଶ୍ୱର୍ଯ୍ୟକାମୀ ରାଜା ସୁରଥ ଅଖଣ୍ଡ ସାମ୍ରାଜ୍ୟ ପ୍ରାପ୍ତ ହେଲେ ଏବଂ ବୈରାଗ୍ୟବାନ୍ ସମାଧି ବୈଶ୍ୟ ଦୁର୍ଲଭ ଜ୍ଞାନ ପାଇ ମୋକ୍ଷ ଲାଭ କଲେ । ବର୍ତ୍ତମାନ ପର୍ଯ୍ୟନ୍ତ ଆଶୀର୍ବାଦରୂପ ଏହି ମନ୍ତ୍ରମୟ ଗ୍ରନ୍ଥର ଆଶ୍ରୟଦ୍ୱାରା ଜଣା ନାହିଁ କେତେ ଯେ ଆର୍ତ୍ତ, ଅର୍ଥାର୍ଥୀ, ଜିଜ୍ଞାସୁ ତଥା ପ୍ରେମୀ ଭକ୍ତ ନିଜର ମନୋରଥ ସଫଳ କରିଛନ୍ତି । ଆନନ୍ଦର କଥା ଯେ—ଜଗଜ୍ଜନନୀ ଭଗବତୀ ଦୁର୍ଗାଙ୍କ କୃପାରୁ ସେହି ସପ୍ତଶତୀ ସଂକ୍ଷିପ୍ତ ପାଠବିଧି ସହ ପାଠକମାନଙ୍କ ସମ୍ମୁଖରେ ପୁସ୍ତକରୂପେ ଉପସ୍ଥାପନ କରାଯାଉଛି । ଏଠାରେ କଥାଭାଗ ତଥା ଅନ୍ୟ କଥାମାନ ସେହିଗୁଡ଼ିକ ହିଁ ଅଟେ, ଯାହା ହିନ୍ଦୀ ଭାଷାରେ 'କଲ୍ୟାଣ'ର ବିଶେଷାଙ୍କ 'ସଂକ୍ଷିପ୍ତ ମାର୍କଣ୍ଡେୟ-ବ୍ରହ୍ମପୁରାଣାଙ୍କ'ରେ ପ୍ରକାଶିତ ହୋଇ ସାରିଛି । ଏତଦ୍ ବ୍ୟତୀତ କେତେକ ଉପଯୋଗୀ ସ୍ତୋତ୍ର ମଧ୍ୟ ଏଥିରେ ଉପନିବଦ୍ଧ କରାଯାଇଛି ।

ଏଥିରେ ପାଠ କରିବା ପାଇଁ ବିଧି ସ୍ପଷ୍ଟ, ସରଳ ଏବଂ ପ୍ରାମାଣିକ

ରୂପରେ ଦିଆଯାଇଛି । ଏହାର ମୂଳପାଠକୁ ବିଶେଷତଃ ଶୁଦ୍ଧ ରଖିବାକୁ ପ୍ରଚେଷ୍ଟା କରାଯାଇଛି । ପାଠକମାନଙ୍କ ସୁବିଧା ନିମନ୍ତେ କେତେକ ମହତ୍ତ୍ୱପୂର୍ଣ୍ଣ ପାଠାନ୍ତର ମଧ୍ୟ ଦିଆଯାଇଛି । ଶାପୋଦ୍ଧାରର ଅନେକ ପ୍ରକାରର ମାର୍ଗ କୁହାଯାଇଛି । କବଚ, ଅର୍ଗଳା ଏବଂ କୀଳକର ଅର୍ଥ ମଧ୍ୟ ପ୍ରଦାନ କରାଯାଇଛି । ବୈଦିକ ଓ ତାନ୍ତ୍ରିକ ରାତ୍ରିସୂକ୍ତ ଏବଂ ଦେବୀସୂକ୍ତ ସହ ଦେବ୍ୟଥର୍ବଶୀର୍ଷ, ସିଦ୍ଧ-କୁଞ୍ଜିକା ସ୍ତୋତ୍ର, ମୂଳ ସପ୍ତଶ୍ଳୋକୀ ଦୁର୍ଗା, ଶ୍ରୀଦୁର୍ଗାଦ୍ୱାତ୍ରିଂଶନ୍ନାମମାଳା, ଶ୍ରୀଦୁର୍ଗାଷ୍ଟୋତ୍ତରଶତନାମସ୍ତୋତ୍ର, ଶ୍ରୀଦୁର୍ଗାମାନସପୂଜା ଏବଂ ଦେବ୍ୟ-ପରାଧକ୍ଷମାପନ ସ୍ତୋତ୍ର ସ୍ଥାନିତ ହେବା ଦ୍ୱାରା ପୁସ୍ତକର ଉପାଦେୟତା ବିଶେଷଭାବରେ ବୃଦ୍ଧି ପାଇଛି । ନବାର୍ଣ୍ଣବିଧି ତ ଅଛି, ଆବଶ୍ୟକ ନ୍ୟାସ ମଧ୍ୟ ଦିଆଯାଇଛି । ସପ୍ତଶତୀର ମୂଳ ଶ୍ଳୋକର ସମ୍ପୂର୍ଣ୍ଣ ଅର୍ଥ ଦିଆଯାଇଛି । ତିନୋଟି ରହସ୍ୟ ମଧ୍ୟରେ ଆସିଥିବା କେତେକ ଗୂଢ଼ ବିଷୟଗୁଡ଼ିକୁ ମଧ୍ୟ ଟିପ୍ପଣୀଦ୍ୱାରା ସ୍ପଷ୍ଟ କରାଯାଇଛି । ଉକ୍ତ ବିଶେଷତ୍ୱଗୁଡ଼ିକ ଯୋଗୁଁ ଏହା ପାଠ ଓ ଅଧ୍ୟୟନ ନିମନ୍ତେ ଅତ୍ୟନ୍ତ ଉପଯୋଗୀ ଓ ଉତ୍ତମ ପୁସ୍ତକ ରୂପେ ପରିଗଣିତ ହୁଏ ।

ସପ୍ତଶତୀ ପାଠରେ ବିଧିକୁ ଧ୍ୟାନ ରଖିବା ଅତି ଆବଶ୍ୟକ । ତାହା ମଧ୍ୟରୁ ସବୁଠାରୁ ବଡ଼ କଥା ହେଉଛି ଭଗବତୀ ଦୁର୍ଗାମାତାଙ୍କ ଚରଣରେ ପ୍ରେମପୂର୍ଣ୍ଣ ଭକ୍ତି । ଶ୍ରଦ୍ଧା ଓ ଭକ୍ତି ସହିତ ଜଗଦମ୍ବାଙ୍କୁ ସ୍ମରଣ କରି ସପ୍ତଶତୀକୁ ପାଠ କରୁଥିବା ବ୍ୟକ୍ତି ତାଙ୍କର କୃପା ଯଥାଶୀଘ୍ର ଅନୁଭବ କରିପାରେ । ଆଶା ଯେ ପ୍ରେମୀପାଠକ ଏହାର ପାରାୟଣଦ୍ୱାରା ଉପକୃତ ହେବେ । ଯଦ୍ୟପି ପୁସ୍ତକକୁ ସବୁଦୃଷ୍ଟିରୁ ଶୁଦ୍ଧ କରିବା ପାଇଁ ବହୁତ ଚେଷ୍ଟା କରାଯାଇଛି, ତଥାପି ପ୍ରମାଦବଶତଃ କେତେକ ଅଶୁଦ୍ଧି ରହିବା ଅସମ୍ଭବ ନୁହେଁ । ଏହିପରି ଭ୍ରମନିମନ୍ତେ କ୍ଷମା ପ୍ରାର୍ଥନା କରିବା ସହିତ ଆମେ ପାଠକମାନଙ୍କୁ ଅନୁରୋଧ କରୁଁ ଯେ ସେମାନେ ଆମକୁ ଭ୍ରମ ବିଷୟରେ ସୂଚିତ କରିବା ଉଚିତ । ତାହାଫଳରେ ଭବିଷ୍ୟତରେ ସେସବୁ ଶୁଦ୍ଧ ହେବା ସମ୍ଭବପର ହେବ ।

—**ହନୁମାନପ୍ରସାଦ ପୋଦ୍ଦାର**

# ଅଥ ସପ୍ତଶ୍ଳୋକୀ ଦୁର୍ଗା

*ଶିବ ଉବାଚ—*

**ଦେବି ତ୍ୱଂ ଭକ୍ତସୁଲଭେ ସର୍ବକାର୍ଯ୍ୟବିଧାୟିନୀ ।**
**କଲୌ ହି କାର୍ଯ୍ୟସିଦ୍ଧ୍ୟର୍ଥମୁପାୟଂ ବ୍ରୂହି ଯତ୍ନତଃ ॥**

*ଦେବ୍ୟୁବାଚ—*

**ଶୃଣୁ ଦେବ ପ୍ରବକ୍ଷ୍ୟାମି କଲୌ ସର୍ବେଷ୍ଟସାଧନମ୍ ।**
**ମୟା ତବୈବ ସ୍ନେହେନାପ୍ୟମ୍ବାସ୍ତୁତିଃ ପ୍ରକାଶ୍ୟତେ ॥**

ଓଁ ଅସ୍ୟ ଶ୍ରୀଦୁର୍ଗାସପ୍ତଶ୍ଳୋକୀସ୍ତୋତ୍ରମନ୍ତ୍ରସ୍ୟ ନାରାୟଣ ଋଷିଃ, ଅନୁଷ୍ଟୁପ୍ ଛନ୍ଦଃ, ଶ୍ରୀମହାକାଳୀମହାଲକ୍ଷ୍ମୀମହାସରସ୍ୱତ୍ୟୋ ଦେବତାଃ, ଶ୍ରୀଦୁର୍ଗାପ୍ରୀତ୍ୟର୍ଥଂ ସପ୍ତଶ୍ଳୋକୀ-ଦୁର୍ଗାପାଠେ ବିନିୟୋଗଃ ।

**ଓଁ ଜ୍ଞାନିନାମପି ଚେତାଂସି ଦେବୀ ଭଗବତୀ ହି ସା ।**
**ବଳାଦାକୃଷ୍ୟ ମୋହାୟ ମହାମାୟା ପ୍ରଯଚ୍ଛତି ॥ ୧ ॥**
**ଦୁର୍ଗେ ସ୍ମୃତା ହରସି ଭୀତିମଶେଷଜନ୍ତୋଃ**
**ସ୍ୱସ୍ଥୈଃ ସ୍ମୃତା ମତିମତୀବ ଶୁଭାଂ ଦଦାସି ।**
**ଦାରିଦ୍ର୍ୟଦୁଃଖଭୟହାରିଣି କା ତ୍ୱଦନ୍ୟା**
**ସର୍ବୋପକାରକରଣାୟ ସଦାର୍ଦ୍ରଚିତ୍ତା ॥ ୨ ॥**

---

**ଶିବ କହିଲେ**—ହେ ଦେବି ! ତୁମେ ଭକ୍ତମାନଙ୍କ ପାଇଁ ସୁଲଭ ହୋଇଥାଅ ଏବଂ ସମସ୍ତ କର୍ମର ବିଧାନକାରିଣୀ ଅଟ । କଳିଯୁଗରେ କାମନାଗୁଡ଼ିକର ସିଦ୍ଧି ନିମନ୍ତେ ଯଦି କୌଣସି ଉପାୟ ଅଛି; ତେବେ ସେସବୁ ଆପଣା ବାଣୀଦ୍ୱାରା ପୂର୍ଣ୍ଣରୂପେ ବ୍ୟକ୍ତ କର ।

**ଦେବୀ କହିଲେ**—ହେ ଦେବ ! ଆପଣଙ୍କର ମୋ ଉପରେ ବହୁତ ସ୍ନେହ ଅଛି । କଳିଯୁଗରେ ସମସ୍ତ କାମନାଗୁଡ଼ିକୁ ସିଦ୍ଧ କରିବା ପାଇଁ ଯେଉଁ ସାଧନ ଅଛି; ସେସବୁ ମୁଁ କହୁଛି; ଶ୍ରବଣ କରନ୍ତୁ । ତାହାର ନାମ 'ଅମ୍ବାସ୍ତୁତି' ।

॥ ଓଁ ॥ ଏହି ଦୁର୍ଗା ସପ୍ତଶ୍ଳୋକୀ ସ୍ତୋତ୍ର ମନ୍ତ୍ରର ନାରାୟଣ ଋଷି, ଅନୁଷ୍ଟୁପ୍ ଛନ୍ଦ, ଶ୍ରୀମହାକାଳୀ, ମହାଲକ୍ଷ୍ମୀ ଏବଂ ମହାସରସ୍ୱତୀ ଦେବତା ଅଟନ୍ତି । ଶ୍ରୀଦୁର୍ଗାଙ୍କୁ ପ୍ରସନ୍ନ କରିବା ନିମନ୍ତେ ସପ୍ତଶ୍ଳୋକୀ ଦୁର୍ଗାପାଠରେ ଏହାର ବିନିଯୋଗ କରାଯାଏ ।

ସେହି ଭଗବତୀ ମହାମାୟା ଦେବୀ ଜ୍ଞାନୀମାନଙ୍କର ଚିତ୍ତକୁ ମଧ୍ୟ ବଳପୂର୍ବକ ଆକର୍ଷଣ କରି ମୋହରେ ନିକ୍ଷେପ କରନ୍ତି ॥ ୧ ॥

ମା ଦୁର୍ଗେ ! ଆପଣଙ୍କୁ ସ୍ମରଣ କରିବା ମାତ୍ରକେ ଆପଣ ସମସ୍ତ ପ୍ରାଣୀଙ୍କର ଭୟ ହରଣ କରନ୍ତି ଏବଂ ସ୍ୱସ୍ଥ ପୁରୁଷମାନେ ଚିନ୍ତନ କଲା ମାତ୍ରକେ ସେମାନଙ୍କୁ ପରମ କଲ୍ୟାଣମୟୀ ବୁଦ୍ଧି ପ୍ରଦାନ. କରନ୍ତି । ହେ ଦୁଃଖୀ, ଦରିଦ୍ରତା ଏବଂ ଭୟକୁ ହରଣ କରୁଥିବା ଦେବି ! ଆପଣଙ୍କ ବ୍ୟତୀତ ଆଉ କିଏ ବା

ସର୍ବମଙ୍ଗଳମଙ୍ଗଲ୍ୟେ ଶିବେ ସର୍ବାର୍ଥସାଧିକେ ।
ଶରଣ୍ୟେ ତ୍ର୍ୟମ୍ବକେ ଗୌରି ନାରାୟଣି ନମୋଽସ୍ତୁ ତେ ॥ ୩ ॥
ଶରଣାଗତଦୀନାର୍ତ୍ତପରିତ୍ରାଣପରାୟଣେ ।
ସର୍ବସ୍ୟାର୍ତ୍ତିହରେ ଦେବି ନାରାୟଣି ନମୋଽସ୍ତୁ ତେ ॥ ୪ ॥
ସର୍ବସ୍ୱରୂପେ ସର୍ବେଶେ ସର୍ବଶକ୍ତିସମନ୍ୱିତେ ।
ଭୟେଭ୍ୟସ୍ତ୍ରାହି ନୋ ଦେବି ଦୁର୍ଗେ ଦେବି ନମୋଽସ୍ତୁ ତେ ॥ ୫ ॥
ରୋଗାନଶେଷାନପହଂସି ତୁଷ୍ଟା
ରୁଷ୍ଟା ତୁ କାମାନ୍ ସକଲାନଭୀଷ୍ଟାନ୍ ।
ତ୍ୱାମାଶ୍ରିତାନାଂ ନ ବିପନ୍ନରାଣାଂ
ତ୍ୱାମାଶ୍ରିତା ହ୍ୟାଶ୍ରୟତାଂ ପ୍ରୟାନ୍ତି ॥ ୬ ॥
ସର୍ବାବାଧାପ୍ରଶମନଂ ତ୍ରୈଲୋକ୍ୟସ୍ୟାଖିଳେଶ୍ୱରି ।
ଏବମେବ ତ୍ୱୟା କାର୍ଯ୍ୟମସ୍ମଦ୍‌ବୈରିବିନାଶନମ୍ ॥ ୭ ॥
॥ ଇତି ଶ୍ରୀସପ୍ତଶ୍ଳୋକୀ ଦୁର୍ଗା ସମ୍ପୂର୍ଣ୍ଣା ॥



ଅଛନ୍ତି; ଯାହାଙ୍କର ଚିତ୍ତ ସମସ୍ତଙ୍କର ଉପକାର କରିବା ନିମନ୍ତେ ସର୍ବଦା ଦୟାର୍ଦ୍ର ରହେ ॥ ୨ ॥

ହେ ନାରାୟଣି ! ତୁମେ ସମସ୍ତ ପ୍ରକାରର ମଙ୍ଗଳପ୍ରଦାନକାରିଣୀ ମଙ୍ଗଳମୟୀ ଅଟ । କଲ୍ୟାଣଦାୟିନୀ ଶିବା ଅଟ । ସମସ୍ତ ପୁରୁଷାର୍ଥର ସିଦ୍ଧକାରିଣୀ ଶରଣାଗତ-ବତ୍ସଳା, ତ୍ରିନେତ୍ରଯୁକ୍ତା ଏବଂ ଗୌରୀ ଅଟ । ତୁମ୍ଭଙ୍କୁ ନମସ୍କାର କରୁଛି ॥ ୩ ॥

ଶରଣରେ ଆସିଥିବା ଦୁଃଖୀ ଏବଂ ପୀଡ଼ିତମାନଙ୍କୁ ରକ୍ଷା କରିବାରେ ସଂଲଗ୍ନ ରହିଥିବା ଏବଂ ସମସ୍ତଙ୍କ ପୀଡ଼ା ଦୂର କରୁଥିବା ହେ ନାରାୟଣୀ ଦେବି ! ତୁମ୍ଭଙ୍କୁ ନମସ୍କାର କରୁଛି ॥ ୪ ॥

ସର୍ବସ୍ୱରୂପା, ସର୍ବେଶ୍ୱରୀ ତଥା ସମସ୍ତପ୍ରକାରର ଶକ୍ତିସମ୍ପନ୍ନା ଦିବ୍ୟରୂପା ହେ ଦୁର୍ଗାଦେବି ! ସମସ୍ତ ଭୟରୁ ଆମ୍ଭଙ୍କୁ ରକ୍ଷା କର । ତୁମ୍ଭଙ୍କୁ ନମସ୍କାର କରୁଛି ॥ ୫ ॥

ହେ ଦେବି ! ତୁମ୍ଭେ ପ୍ରସନ୍ନ ହେବାମାତ୍ରକେ ସମସ୍ତ ରୋଗକୁ ନଷ୍ଟ କରିଦିଅ ଏବଂ କୁପିତ ହେଲେ ମନୋବାଞ୍ଛିତ ସମସ୍ତ କାମନା ବିନାଶ କରିଦିଅ । ଯେଉଁ ଲୋକ ତୁମର ଶରଣାଗତ ହୁଅନ୍ତି; ସେମାନଙ୍କ ଉପରେ ବିପଦ ଆଦୌ ଆସେ ନାହିଁ । ତୁମ୍ଭର ଶରଣାଗତ ମନୁଷ୍ୟ ଅନ୍ୟମାନଙ୍କୁ ମଧ୍ୟ ଶରଣ ପ୍ରଦାନ କରିପାରେ ॥ ୬ ॥

ହେ ସର୍ବେଶ୍ୱରି ! ତୁମ୍ଭେ ଏହିପ୍ରକାରେ ତ୍ରିଲୋକର ସମସ୍ତ ପ୍ରତିବନ୍ଧକକୁ ଶାନ୍ତ କର ଏବଂ ଆମ୍ଭ ଶତ୍ରୁମାନଙ୍କୁ ବିନାଶ କର ॥ ୭ ॥

॥ ଶ୍ରୀସପ୍ତଶ୍ଳୋକୀ ଦୁର୍ଗା ସମ୍ପୂର୍ଣ୍ଣ ॥



ଓଁ

॥ ଶ୍ରୀଦୁର୍ଗାୟୈ ନମଃ ॥

# ଶ୍ରୀଦୁର୍ଗାଷ୍ଟୋତ୍ତରଶତନାମସ୍ତୋତ୍ରମ୍

*ଈଶ୍ୱର ଉବାଚ*

**ଶତନାମ ପ୍ରବକ୍ଷ୍ୟାମି ଶୃଣୁଷ୍ୱ କମଲାନନେ ।**
**ଯସ୍ୟ ପ୍ରସାଦମାତ୍ରେଣ ଦୁର୍ଗା ପ୍ରୀତା ଭବେତ୍ ସତୀ ॥ ୧ ॥**
**ଓଁ ସତୀ ସାଧ୍ୱୀ ଭବପ୍ରୀତା ଭବାନୀ ଭବମୋଚନୀ ।**
**ଆର୍ଯ୍ୟା ଦୁର୍ଗା ଜୟା ଚାଦ୍ୟା ତ୍ରିନେତ୍ରା ଶୂଳଧାରିଣୀ ॥ ୨ ॥**
**ପିନାକଧାରିଣୀ ଚିତ୍ରା ଚଣ୍ଡଘଣ୍ଟା ମହାତପାଃ ।**
**ମନୋ ବୁଦ୍ଧିରହଂକାରା ଚିତ୍ତରୂପା ଚିତା ଚିତିଃ ॥ ୩ ॥**
**ସର୍ବମନ୍ତ୍ରମୟୀ ସତ୍ତା ସତ୍ୟାନନ୍ଦସ୍ୱରୂପିଣୀ ।**
**ଅନନ୍ତା ଭାବିନୀ ଭାବ୍ୟା ଭବ୍ୟାଭବ୍ୟା ସଦାଗତିଃ ॥ ୪ ॥**

---

**ମହାଦେବ ଶଙ୍କର ଦେବୀପାର୍ବତୀଙ୍କୁ କହିଲେ**—ହେ କମଳାନନେ ! ବର୍ତ୍ତମାନ ମୁଁ ଅଷ୍ଟୋତ୍ତରଶତନାମକୁ ବର୍ଣ୍ଣନା କରୁଛି । ଯାହାର ପ୍ରସାଦ(ପାଠ ବା ଶ୍ରବଣ)ମାତ୍ରକେ ପରମ ସାଧ୍ୱୀ ଭଗବତୀ ଦୁର୍ଗା ପ୍ରସନ୍ନ ହୋଇ ଯାଆନ୍ତି; ତାହା ଶୁଣ ॥ ୧ ॥

୧ ଓଁ ସତୀ, ୨ ସାଧ୍ୱୀ, ୩ ଭବପ୍ରୀତା (ଭଗବାନ୍ ଶଙ୍କରଙ୍କ ଉପରେ ପ୍ରୀତି ରଖୁଥିବା), ୪ ଭବାନୀ, ୫ ଭବମୋଚନୀ (ସଂସାରବନ୍ଧନରୁ ମୁକ୍ତ କରୁଥିବା), ୬ ଆର୍ଯ୍ୟା, ୭ ଦୁର୍ଗା, ୮ ଜୟା, ୯ ଆଦ୍ୟା, ୧୦ ତ୍ରିନେତ୍ରା, ୧୧ ଶୂଳଧାରିଣୀ, ୧୨ ପିନାକଧାରିଣୀ, ୧୩ ଚିତ୍ରା, ୧୪ ଚଣ୍ଡଘଣ୍ଟା (ପ୍ରଚଣ୍ଡ ସ୍ୱରରେ ଘଣ୍ଟାନାଦ କରୁଥିବା), ୧୫ ମହାତପାଃ (ଅଧିକ ତପସ୍ୟା କରୁଥିବା), ୧୬ ମନ (ମନନଶକ୍ତି), ୧୭ ବୁଦ୍ଧି (ବୋଧଶକ୍ତି) ୧୮ ଅହଙ୍କାରା (ଅହଂତ୍ୱର ଆଶ୍ରୟ), ୧୯ ଚିତ୍ତରୂପା, ୨୦ ଚିତା, ୨୧ ଚିତିଃ (ଚେତନା), ୨୨ ସର୍ବମନ୍ତ୍ରମୟୀ, ୨୩ ସତ୍ତା (ସତ୍‌ସ୍ୱରୂପା), ୨୪ ସତ୍ୟାନନ୍ଦସ୍ୱରୂପିଣୀ, ୨୫ ଅନନ୍ତା (ଯାହାଙ୍କ ସ୍ୱରୂପର କୌଣସି ଅନ୍ତ ନାହିଁ), ୨୬ ଭାବିନୀ (ସମସ୍ତଙ୍କୁ ଉତ୍ପନ୍ନ କରୁଥିବା), ୨୭ ଭାବ୍ୟା (ଭାବନା ଏବଂ ଧ୍ୟାନ କରିବାଯୋଗ୍ୟ), ୨୮ ଭବ୍ୟା (କଲ୍ୟାଣରୂପା), ୨୯ ଅଭବ୍ୟା (ଯାହାଙ୍କଠାରୁ ବଳି ଭବ୍ୟ କିଏ ନାହିଁ),

ଶାମ୍ଭବୀ ଦେବମାତା ଚ ଚିନ୍ତା ରତ୍ନପ୍ରିୟା ସଦା ।
ସର୍ବବିଦ୍ୟା ଦକ୍ଷକନ୍ୟା ଦକ୍ଷଯଜ୍ଞବିନାଶିନୀ ॥ ୫ ॥
ଅପର୍ଣ୍ଣାନେକବର୍ଣ୍ଣା ଚ ପାଟଳା ପାଟଳାବତୀ ।
ପଟ୍ଟାମ୍ବରପରୀଧାନା କଳମଞ୍ଜୀରରଞ୍ଜିନୀ ॥ ୬ ॥
ଅମେୟବିକ୍ରମା କ୍ରୂରା ସୁନ୍ଦରୀ ସୁରସୁନ୍ଦରୀ ।
ବନଦୁର୍ଗା ଚ ମାତଙ୍ଗୀ ମତଙ୍ଗମୁନିପୂଜିତା ॥ ୭ ॥
ବ୍ରାହ୍ମୀ ମାହେଶ୍ୱରୀ ଚୈନ୍ଦ୍ରୀ କୌମାରୀ ବୈଷ୍ଣବୀ ତଥା ।
ଚାମୁଣ୍ଡା ଚୈବ ବାରାହୀ ଲକ୍ଷ୍ମୀଶ୍ଚ ପୁରୁଷାକୃତିଃ ॥ ୮ ॥
ବିମଲୋତ୍କର୍ଷିଣୀ ଜ୍ଞାନା କ୍ରିୟା ନିତ୍ୟା ଚ ବୁଦ୍ଧିଦା ।
ବହୁଳା ବହୁଳପ୍ରେମା ସର୍ବବାହନବାହନା ॥ ୯ ॥
ନିଶୁମ୍ଭଶୁମ୍ଭହନନୀ ମହିଷାସୁରମର୍ଦ୍ଦିନୀ ।
ମଧୁକୈଟଭହନ୍ତ୍ରୀ ଚ ଚଣ୍ଡମୁଣ୍ଡବିନାଶିନୀ ॥ ୧୦ ॥

୩୦ ସଦାଗତି, ୩୧ ଶାମ୍ଭବୀ (ଶିବପ୍ରିୟା), ୩୨ ଦେବମାତା, ୩୩ ଚିନ୍ତା, ୩୪ ରତ୍ନପ୍ରିୟା, ୩୫ ସର୍ବବିଦ୍ୟା, ୩୬ ଦକ୍ଷକନ୍ୟା, ୩୭ ଦକ୍ଷଯଜ୍ଞବିନାଶିନୀ, ୩୮ ଅପର୍ଣ୍ଣା (ତପସ୍ୟାସମୟରେ ପତ୍ରକୁ ମଧ୍ୟ ଖାଉ ନ ଥିବା), ୩୯ ଅନେକବର୍ଣ୍ଣା (ଅନେକରଙ୍ଗଯୁକ୍ତା), ୪୦ ପାଟଳା (ଲାଲରଙ୍ଗଯୁକ୍ତା), ୪୧ ପାଟଳାବତୀ (ଗୋଲାପପୁଷ୍ପ ବା ରକ୍ତପୁଷ୍ପ ଧାରଣ କରୁଥିବା), ୪୨ ପଟ୍ଟାମ୍ବରପରୀଧାନା (ରେଶମବସ୍ତ୍ର ପରିଧାନ କରିଥିବା), ୪୩ କଳମଞ୍ଜୀରରଞ୍ଜିନୀ (ମଧୁର ଧ୍ୱନି କରୁଥିବା ମଞ୍ଜୀରକୁ ଧାରଣ କରି ପ୍ରସନ୍ନ ରହୁଥିବା), ୪୪ ଅମେୟବିକ୍ରମା (ଅସୀମ ପରାକ୍ରମଶାଳିନୀ), ୪୫ କ୍ରୂରା (ଦୈତ୍ୟମାନଙ୍କ ପ୍ରତି କଠୋର), ୪୬ ସୁନ୍ଦରୀ, ୪୭ ସୁରସୁନ୍ଦରୀ, ୪୮ ବନଦୁର୍ଗା, ୪୯ ମାତଙ୍ଗୀ, ୫୦ ମତଙ୍ଗମୁନିପୂଜିତା, ୫୧ ବ୍ରାହ୍ମୀ, ୫୨ ମାହେଶ୍ୱରୀ, ୫୩ ଐନ୍ଦ୍ରୀ, ୫୪ କୌମାରୀ, ୫୫ ବୈଷ୍ଣବୀ, ୫୬ ଚାମୁଣ୍ଡା, ୫୭ ବାରାହୀ, ୫୮ ଲକ୍ଷ୍ମୀ, ୫୯ ପୁରୁଷାକୃତି, ୬୦ ବିମଳା, ୬୧ ଉତ୍କର୍ଷିଣୀ, ୬୨ ଜ୍ଞାନା, ୬୩ କ୍ରିୟା, ୬୪ ନିତ୍ୟା, ୬୫ ବୁଦ୍ଧିଦା, ୬୬ ବହୁଳା, ୬୭ ବହୁଳପ୍ରେମା, ୬୮ ସର୍ବବାହନବାହନା, ୬୯ ନିଶୁମ୍ଭଶୁମ୍ଭହନନୀ, ୭୦ ମହିଷାସୁରମର୍ଦ୍ଦିନୀ, ୭୧ ମଧୁକୈଟଭହନ୍ତ୍ରୀ, ୭୨ ଚଣ୍ଡମୁଣ୍ଡବିନାଶିନୀ, ୭୩ ସର୍ବାସୁରବିନାଶା, ୭୪ ସର୍ବଦାନବଘାତିନୀ, ୭୫

ସର୍ବାସୁରବିନାଶା ଚ ସର୍ବଦାନବଘାତିନୀ ।
ସର୍ବଶାସ୍ତ୍ରମୟୀ ସତ୍ୟା ସର୍ବାସ୍ତ୍ରଧାରିଣୀ ତଥା ॥ ୧୧ ॥
ଅନେକଶସ୍ତ୍ରହସ୍ତା ଚ ଅନେକାସ୍ତ୍ରସ୍ୟ ଧାରିଣୀ ।
କୁମାରୀ ଚୈକକନ୍ୟା ଚ କୈଶୋରୀ ଯୁବତୀ ଯତିଃ ॥ ୧୨ ॥
ଅପ୍ରୌଢା ଚୈବ ପ୍ରୌଢା ଚ ବୃଦ୍ଧମାତା ବଳପ୍ରଦା ।
ମହୋଦରୀ ମୁକ୍ତକେଶୀ ଘୋରରୂପା ମହାବଳା ॥ ୧୩ ॥
ଅଗ୍ନିଜ୍ୱାଳା ରୌଦ୍ରମୁଖୀ କାଳରାତ୍ରିସ୍ତପସ୍ୱିନୀ ।
ନାରାୟଣୀ ଭଦ୍ରକାଳୀ ବିଷ୍ଣୁମାୟା ଜଳୋଦରୀ ॥ ୧୪ ॥
ଶିବଦୂତୀ କରାଳୀ ଚ ଅନନ୍ତା ପରମେଶ୍ୱରୀ ।
କାତ୍ୟାୟନୀ ଚ ସାବିତ୍ରୀ ପ୍ରତ୍ୟକ୍ଷା ବ୍ରହ୍ମବାଦିନୀ ॥ ୧୫ ॥
ଯ ଇଦଂ ପ୍ରପଠେନ୍ନିତ୍ୟଂ ଦୁର୍ଗାନାମଶତାଷ୍ଟକମ୍ ।
ନାସାଧ୍ୟଂ ବିଦ୍ୟତେ ଦେବି ତ୍ରିଷୁ ଲୋକେଷୁ ପାର୍ବତି ॥ ୧୬ ॥
ଧନଂ ଧାନ୍ୟଂ ସୁତଂ ଜାୟାଂ ହୟଂ ହସ୍ତିନମେବ ଚ ।
ଚତୁର୍ବର୍ଗଂ ତଥା ଗ୍ରନ୍ତେ ଲଭେତ୍‌ମୁକ୍ତିଞ୍ଚ ଶାଶ୍ୱତୀମ୍ ॥ ୧୭ ॥

---

ସର୍ବଶାସ୍ତ୍ରମୟୀ, ୭୬ ସତ୍ୟା, ୭୭ ସର୍ବାସ୍ତ୍ରଧାରିଣୀ, ୭୮ ଅନେକଶସ୍ତ୍ରହସ୍ତା, ୭୯ ଅନେକାସ୍ତ୍ରଧାରିଣୀ, ୮୦ କୁମାରୀ, ୮୧ ଏକକନ୍ୟା, ୮୨ କୈଶୋରୀ, ୮୩ ଯୁବତୀ, ୮୪ ଯତିଃ, ୮୫ ଅପ୍ରୌଢା, ୮୬ ପ୍ରୌଢା, ୮୭ ବୃଦ୍ଧମାତା, ୮୮ ବଳପ୍ରଦା, ୮୯ ମହୋଦରୀ, ୯୦ ମୁକ୍ତକେଶୀ, ୯୧ ଘୋରରୂପା, ୯୨ ମହାବଳା, ୯୩ ଅଗ୍ନିଜ୍ୱାଳା, ୯୪ ରୌଦ୍ରମୁଖୀ, ୯୫ କାଳରାତ୍ରି, ୯୬ ତପସ୍ୱିନୀ, ୯୭ ନାରାୟଣୀ, ୯୮ ଭଦ୍ରକାଳୀ, ୯୯ ବିଷ୍ଣୁମାୟା, ୧୦୦ ଜଳୋଦରୀ, ୧୦୧ ଶିବଦୂତୀ, ୧୦୨ କରାଳୀ, ୧୦୩ ଅନନ୍ତା (ବିନାଶରହିତା), ୧୦୪ ପରମେଶ୍ୱରୀ, ୧୦୫ କାତ୍ୟାୟନୀ, ୧୦୬ ସାବିତ୍ରୀ, ୧୦୭ ପ୍ରତ୍ୟକ୍ଷା, ୧୦୮ ବ୍ରହ୍ମବାଦିନୀ ॥ ୨—୧୫ ॥

ହେ ଦେବୀ ପାର୍ବତୀ । ଯେଉଁ ବ୍ୟକ୍ତି ପ୍ରତିଦିନ ଦୁର୍ଗାଦେବୀଙ୍କ ଏହି ଅଷ୍ଟୋତ୍ତରଶତ ନାମକୁ ପାଠ କରେ; ତାହାପାଇଁ ଏହି ତିନିଲୋକରେ କୌଣସି କାର୍ଯ୍ୟ ଅସାଧ୍ୟ ରହେ ନାହିଁ ॥ ୧୬ ॥ ସେ ଧନ, ଧାନ୍ୟ, ପୁତ୍ର, ସ୍ତ୍ରୀ, ଅଶ୍ୱ, ହସ୍ତୀ,

କୁମାରୀଂ ପୂଜୟିତ୍ୱା ତୁ ଧ୍ୟାତ୍ୱା ଦେବୀଂ ସୁରେଶ୍ୱରୀମ୍ ।
ପୂଜୟେତ୍ ପରୟା ଭକ୍ତ୍ୟା ପଠେନ୍ନାମଶତାଷ୍ଟକମ୍ ॥ ୧୮ ॥
ତସ୍ୟ ସିଦ୍ଧିର୍ଭବେଦ୍ ଦେବି ସର୍ବୈଃ ସୁରବରୈରପି ।
ରାଜାନୋ ଦାସତାଂ ଯାନ୍ତି ରାଜ୍ୟଶ୍ରିୟମବାପ୍ନୁୟାତ୍ ॥ ୧୯ ॥
ଗୋରୋଚନାଲକ୍ତକକୁଙ୍କୁମେନ
ସିନ୍ଦୂରକର୍ପୂରମଧୁତ୍ରୟେଣ ।
ବିଲିଖ୍ୟ ଯନ୍ତ୍ରଂ ବିଧିନା ବିଧିଜ୍ଞୋ
ଭବେତ୍ ସଦା ଧାରୟତେ ପୁରାରିଃ ॥ ୨୦ ॥
ଭୌମାବାସ୍ୟାନିଶାମଗ୍ରେ ଚନ୍ଦ୍ରେ ଶତଭିଷାଂ ଗତେ ।
ବିଲିଖ୍ୟ ପ୍ରପଠେତ୍ ସ୍ତୋତ୍ରଂ ସ ଭବେତ୍ ସମ୍ପଦାଂ ପଦମ୍ ॥ ୨୧ ॥

*ଇତି ଶ୍ରୀବିଶ୍ୱସାରତନ୍ତ୍ରେ ଦୁର୍ଗାଷ୍ଟୋତ୍ତରଶତନାମସ୍ତୋତ୍ରଂ ସମାପ୍ତମ୍ ।*



---

ଧର୍ମ ଆଦି ଚାରି ପୁରୁଷାର୍ଥ ତଥା ଶେଷରେ ସନାତନ ମୁକ୍ତିକୁ ପ୍ରାପ୍ତ ହୁଏ ॥ ୧୭ ॥ କୁମାରୀଙ୍କ ପୂଜନ ଏବଂ ଦେବୀ ସୁରେଶ୍ୱରୀଙ୍କୁ ଧ୍ୟାନ କରି ପରାଭକ୍ତି ସହିତ ତାଙ୍କର ପୂଜା କରିବା ଉଚିତ । ତା'ପରେ ଅଷ୍ଟୋତ୍ତରଶତନାମକୁ ପାଠ କରିବା ଉଚିତ ॥ ୧୮ ॥ ହେ ଦେବି ! ଯିଏ ଏପରି କରେ; ତାହାକୁ ସମସ୍ତ ଶ୍ରେଷ୍ଠ ଦେବତାମାନଙ୍କଠାରୁ ସିଦ୍ଧି ପ୍ରାପ୍ତ ହୁଏ । ରାଜା ମଧ୍ୟ ତାହାର ଦାସ ହୋଇଯାଆନ୍ତି । ସେ ରାଜ୍ୟଲକ୍ଷ୍ମୀଙ୍କୁ ପ୍ରାପ୍ତ କରେ ॥ ୧୯ ॥ ଗୋରଚନା, ଲାକ୍ଷା, କୁଙ୍କୁମ, ସିନ୍ଦୂର, କର୍ପୂର, ଘୃତ (ଅଥବା ଦୁଧ), ଚିନି ଏବଂ ମଧୁ (ମହୁ)—ଏହି ପଦାର୍ଥଗୁଡ଼ିକୁ ଏକତ୍ର କରି, ଏହାଦ୍ୱାରା ବିଧିପୂର୍ବକ ଯନ୍ତ୍ର ଲେଖି ଯେଉଁ ବିଧିଜ୍ଞ ପୁରୁଷ ସର୍ବଦା ସେହି ଯନ୍ତ୍ରକୁ ଧାରଣ କରେ; ସେ ଶିବଙ୍କ ତୁଲ୍ୟ (ମୋକ୍ଷରୂପ) ହୋଇଯାଏ ॥ ୨୦ ॥ ଭୌମବତୀ ଅମାବସ୍ୟାର ଅର୍ଦ୍ଧରାତ୍ରିରେ ଯେତେବେଳେ ଚନ୍ଦ୍ରମା ଶତଭିଷା ନକ୍ଷତ୍ର ଉପରେ ଅବସ୍ଥାନ କରିଥିବେ; ସେହିସମୟରେ ଏହି ସ୍ତୋତ୍ରକୁ ଲେଖି ଯିଏ ଏହାକୁ ପାଠ କରେ; ସେ ସମ୍ପତ୍ତିଶାଳୀ ହୁଏ ॥ ୨୧ ॥



# ପାଠବିଧିଃ*

ସାଧକ ସ୍ନାନ କରି ପବିତ୍ର ହୋଇ ଆସନ ଶୁଦ୍ଧିକ୍ରିୟା ସଂପନ୍ନ କରି ଶୁଦ୍ଧ ଆସନ ଉପରେ ବସିବା ଉଚିତ । ସଙ୍ଗରେ ଶୁଦ୍ଧ ଜଳ, ପୂଜନ ସାମଗ୍ରୀ ଏବଂ ଶ୍ରୀଦୁର୍ଗାସପ୍ତଶତୀର ପୁସ୍ତକ ରଖିବା ଉଚିତ । ପୁସ୍ତକକୁ ନିଜ ସମ୍ମୁଖରେ କାଷ୍ଠ ଆଦିର ଶୁଦ୍ଧ ଆସନ ଉପରେ ବିରାଜମାନ କରାଇବା ଉଚିତ । ଲଲାଟରେ ନିଜ ରୁଚି ଅନୁସାରେ ଭସ୍ମ, ଚନ୍ଦନ ଅଥବା କୁଙ୍କୁମ ଲଗାଇବା ଉଚିତ । ଶିଖା ବାନ୍ଧିବା ଉଚିତ । ପୁଣି ପୂର୍ବାଭିମୁଖ ହୋଇ ତତ୍ତ୍ୱଶୁଦ୍ଧି ପାଇଁ ଚାରିଥର ଆଚମନ କରିବା ଉଚିତ । ସେହିସମୟରେ ନିମ୍ନଲିଖିତ ଚାରୋଟି ମନ୍ତ୍ରକୁ କ୍ରମଶଃ ପଢିବା ଉଚିତ—

---

* ଏହି ବିଧି ଏଠାରେ ସଂକ୍ଷିପ୍ତଭାବରେ ଦିଆଯାଇଛି । ନବରାତ୍ର ଆଦି ବିଶେଷ କ୍ଷେତ୍ରରେ ତଥା ଶତଚଣ୍ଡୀ ଆଦି ଅନୁଷ୍ଠାନଗୁଡ଼ିକରେ ବିସ୍ତୃତ ବିଧିର ଉପଯୋଗ କରାଯାଇଛି । ସେଥିରେ ଯନ୍ତ୍ରସ୍ଥ କଳଶ, ଗଣେଶ, ନବଗ୍ରହ, ମାତୃକା, ବାସ୍ତୁ, ସପ୍ତର୍ଷି, ସପ୍ତଚିରଞ୍ଜୀବ, ୬୪ ଯୋଗିନୀ, ୫୦ କ୍ଷେତ୍ରପାଳ ତଥା ଅନ୍ୟାନ୍ୟ ଦେବତାମାନଙ୍କର ବୈଦିକବିଧିରେ ପୂଜା ହୁଏ । ଅଖଣ୍ଡ ଦୀପର ବ୍ୟବସ୍ଥା କରାଯାଏ । ଦେବୀପ୍ରତିମାର ଅଙ୍ଗନ୍ୟାସ ଏବଂ ଅଗ୍ନ୍ୟୁତ୍ତାରଣ ଆଦି ବିଧି ସହିତ ବିଧିବତ୍ ପୂଜା କରାଯାଏ । ନବଦୁର୍ଗାପୂଜା, ଜ୍ୟୋତିଃପୂଜା, ବଟୁକ-ଗଣେଶାଦି ସହିତ କୁମାରୀପୂଜା, ଅଭିଷେକ, ନାନ୍ଦୀଶ୍ରାଦ୍ଧ, ରକ୍ଷାବନ୍ଧନ, ପୁଣ୍ୟାହବାଚନ, ମଙ୍ଗଳପାଠ, ଗୁରୁପୂଜା, ତୀର୍ଥାବାହନ, ମନ୍ତ୍ର-ସ୍ନାନ ଆଦି ତଥା ଆସନଶୁଦ୍ଧି, ପ୍ରାଣାୟାମ, ଭୂତଶୁଦ୍ଧି, ପ୍ରାଣପ୍ରତିଷ୍ଠା, ଅନ୍ତର୍ମାତୃକାନ୍ୟାସ, ବହିର୍ମାତୃକାନ୍ୟାସ, ସୃଷ୍ଟିନ୍ୟାସ, ସ୍ଥିତିନ୍ୟାସ, ଶକ୍ତିକଳାନ୍ୟାସ, ଶିବକଳାନ୍ୟାସ, ହୃଦୟାଦିନ୍ୟାସ, ଷୋଢାନ୍ୟାସ, ବିଲୋମନ୍ୟାସ, ତତ୍ତ୍ୱନ୍ୟାସ, ଅକ୍ଷରନ୍ୟାସ, ବ୍ୟାପକନ୍ୟାସ, ଧ୍ୟାନ, ପୀଠପୂଜା, ବିଶେଷାର୍ଘ୍ୟ, କ୍ଷେତ୍ରକୀଳନ, ମନ୍ତ୍ରପୂଜା, ବିବିଧ ମୁଦ୍ରାବିଧି, ଆବରଣପୂଜା ଏବଂ ପ୍ରଧାନପୂଜା ଆଦି ଶାସ୍ତ୍ରୀୟ ପଦ୍ଧତି ଅନୁସାରେ ଅନୁଷ୍ଠାନ ହୁଏ । ଏହି ପ୍ରକାରେ ବିସ୍ତୃତ ବିଧିରେ ପୂଜା କରିବାକୁ ଇଚ୍ଛା କରୁଥିବା ଭକ୍ତମାନେ ଅନ୍ୟାନ୍ୟ ପୂଜାପଦ୍ଧତିର ସହାୟତାରେ ଭଗବତୀଙ୍କୁ ଆରାଧନା କରି ପାଠ ଆରମ୍ଭ କରିବା ଉଚିତ ।

ଓଁ ଐଂ ଆତ୍ମତତ୍ତ୍ୱଂ ଶୋଧୟାମି ନମଃ ସ୍ୱାହା ।
ଓଁ ହ୍ରୀଂ ବିଦ୍ୟାତତ୍ତ୍ୱଂ ଶୋଧୟାମି ନମଃ ସ୍ୱାହା ।
ଓଁ କ୍ଲୀଂ ଶିବତତ୍ତ୍ୱଂ ଶୋଧୟାମି ନମଃ ସ୍ୱାହା ।
ଓଁ ଐଂ ହ୍ରୀଂ କ୍ଲୀଂ ସର୍ବତତ୍ତ୍ୱଂ ଶୋଧୟାମି ନମଃ ସ୍ୱାହା ।

ତତ୍‌ପଶ୍ଚାତ୍ ପ୍ରାଣାୟାମ କରି ଗଣେଶ ଆଦି ଦେବତା ଏବଂ ଗୁରୁଜନମାନଙ୍କୁ ପ୍ରଣାମ କରିବା ଉଚିତ । ପୁନଶ୍ଚ **"ଓଁ ପବିତ୍ରେସ୍ଥୋ ବୈଷ୍ଣବ୍ୟୌ"** ଇତ୍ୟାଦି ମନ୍ତ୍ରଦ୍ୱାରା କୁଶର ପବିତ୍ରୀ ଧାରଣ କରି ହସ୍ତରେ ରକ୍ତରଙ୍ଗର ପୁଷ୍ପ, ଅକ୍ଷତ ଏବଂ ଜଳ ନେଇ ନିମ୍ନ ମତେ ସଙ୍କଳ୍ପ କରିବା ଉଚିତ—

**ଓଁ ବିଷ୍ଣୁର୍ବିଷ୍ଣୁର୍ବିଷ୍ଣୁଃ । ଓଁ ନମଃ ପରମାତ୍ମନେ, ଶ୍ରୀପୁରାଣପୁରୁଷୋତ୍ତମସ୍ୟ ଶ୍ରୀବିଷ୍ଣୋରାଜ୍ଞୟା ପ୍ରବର୍ତ୍ତମାନସ୍ୟାଦ୍ୟ ଶ୍ରୀବ୍ରହ୍ମଣୋ ଦ୍ୱିତୀୟପରାର୍ଦ୍ଧେ ଶ୍ରୀଶ୍ୱେତବାରାହକଳ୍ପେ ବୈବସ୍ୱତମନ୍ୱନ୍ତରେଽଷ୍ଟାବିଂଶତିତମେ କଳିଯୁଗେ ପ୍ରଥମଚରଣେ ଜମ୍ବୂଦ୍ୱୀପେ ଭାରତବର୍ଷେ ଭରତଖଣ୍ଡେ ଆର୍ଯ୍ୟାବର୍ତ୍ତା-ନ୍ତର୍ଗତବ୍ରହ୍ମାବର୍ତ୍ତୈକଦେଶେ ପୁଣ୍ୟପ୍ରଦେଶେ ବୌଦ୍ଧାବତାରେ ବର୍ତ୍ତମାନେ ଯଥାନାମସଂବତ୍ସରେ ଅମୁକାୟନେ ମହାମାଙ୍ଗଲ୍ୟପ୍ରଦେ ମାସାନାମ୍ ଉତ୍ତମେ ଅମୁକମାସେ ଅମୁକପକ୍ଷେ ଅମୁକତିଥୌ ଅମୁକବାସରାନ୍ୱିତାୟାମ୍ ଅମୁକନକ୍ଷତ୍ରେ ଅମୁକରାଶିସ୍ଥିତେ ସୂର୍ଯ୍ୟେ ଅମୁକାମୁକରାଶିସ୍ଥିତେଷୁ ଚନ୍ଦ୍ରଭୌମବୁଧଗୁରୁଶୁକ୍ରଶନିଷୁ ସତ୍ସୁ ଶୁଭେ ଯୋଗେ ଶୁଭକରଣେ ଏବଂଗୁଣବିଶେଷଣବିଶିଷ୍ଟାୟାଂ ଶୁଭପୁଣ୍ୟତିଥୌ ସକଳଶାସ୍ତ୍ରଶ୍ରୁତିସ୍ମୃତିପୁରାଣୋକ୍ତଫଳପ୍ରାପ୍ତିକାମଃ ଅମୁକଗୋତ୍ରୋତ୍ପନ୍ନଃ ଅମୁକଶର୍ମା ଅହଂ ମମାତ୍ମନଃ ସପୁତ୍ରସ୍ତ୍ରୀବାନ୍ଧବସ୍ୟ ଶ୍ରୀନବଦୁର୍ଗାନୁଗ୍ରହତୋ ଗ୍ରହକୃତ-ରାଜକୃତସର୍ବବିଧପୀଡାନିବୃତ୍ତିପୂର୍ବକଂ ନୈରୁଜ୍ୟଦୀର୍ଘାୟୁଃପୁଷ୍ଟିଧନଧାନ୍ୟସମୃଦ୍ଧ୍ୟର୍ଥଂ ଶ୍ରୀନବଦୁର୍ଗାପ୍ରସାଦେନ ସର୍ବାପନ୍ନିବୃତ୍ତିସର୍ବାଭୀଷ୍ଟଫଳାବାପ୍ତିଧର୍ମାର୍ଥକାମମୋକ୍ଷ-ଚତୁର୍ବିଧପୁରୁଷାର୍ଥସିଦ୍ଧିଦ୍ୱାରା ଶ୍ରୀମହାକାଳୀମହାଲକ୍ଷ୍ମୀମହାସରସ୍ୱତୀଦେବତାପ୍ରୀତ୍ୟର୍ଥଂ ଶାପୋଦ୍ଧାରପୁରଃସରଂ କବଚାର୍ଗଳାକୀଳକପାଠବେଦତନ୍ତ୍ରୋକ୍ତରାତ୍ରିସୂକ୍ତ-ପାଠଦେବ୍ୟଥର୍ବଶୀର୍ଷପାଠନ୍ୟାସବିଧିସହିତନବାର୍ଣ୍ଣଜପସପ୍ତଶତୀନ୍ୟାସଧ୍ୟାନ-ସହିତଚରିତ୍ରସମ୍ବନ୍ଧିବିନିଯୋଗନ୍ୟାସଧ୍ୟାନପୂର୍ବକଂ ଚ 'ମାର୍କଣ୍ଡେୟ ଉବାଚ ॥ ସାବର୍ଣ୍ଣିଃ ସୂର୍ଯ୍ୟତନୟୋ ଯୋ ମନୁଃ କଥ୍ୟତେଽଷ୍ଟମଃ ।' ଇତ୍ୟାଦ୍ୟାରଭ୍ୟ 'ସାବର୍ଣ୍ଣି-ର୍ଭବିତା ମନୁଃ' ଇତ୍ୟନ୍ତଂ ଦୁର୍ଗାସପ୍ତଶତୀପାଠଂ ତଦନ୍ତେ ନ୍ୟାସବିଧିସହିତ-ନବାର୍ଣ୍ଣମନ୍ତ୍ରଜପଂ ବେଦତନ୍ତ୍ରୋକ୍ତଦେବୀସୂକ୍ତପାଠଂ ରହସ୍ୟତ୍ରୟପଠନଂ ଶାପୋଦ୍ଧାରାଦିକଂ ଚ କରିଷ୍ୟେ ।**

ଏହିପ୍ରକାର ପ୍ରତିଜ୍ଞା (ସଙ୍କଳ୍ପ) କରି ଦେବୀଙ୍କୁ ଧ୍ୟାନ କରି ପଞ୍ଚୋପଚାର ବିଧିରେ ପୁସ୍ତକକୁ ପୂଜା[୧] କରିବା ଉଚିତ । ଯୋନିମୁଦ୍ରା ପ୍ରଦର୍ଶନ କରି ଭଗବତୀଙ୍କୁ ପ୍ରଣାମ କରିବା ଉଚିତ । ପୁନଃ ମୂଳ ନବାର୍ଣ୍ଣ ମନ୍ତ୍ରଦ୍ୱାରା ପୀଠ ଆଦିରେ ଆଧାରଶକ୍ତିକୁ ସ୍ଥାପନ କରି ତାହା ଉପରେ ପୁସ୍ତକ ସ୍ଥାପନ କରିବା ଉଚିତ[୨] । ଏହାପରେ ଶାପୋଦ୍ଧାର[୩] କରିବା ଉଚିତ । ଏହା ଅନେକ ପ୍ରକାରର ଅଛି । 'ଓଁ ହ୍ରୀଂ କ୍ଲୀଂ ଶ୍ରୀଂ କ୍ରାଂ କ୍ରୀଂ ଚଣ୍ଡିକାଦେବ୍ୟୈ ଶାପନାଶାନୁଗ୍ରହଂ କୁରୁ କୁରୁ ସ୍ୱାହା'—ଏହି ମନ୍ତ୍ରକୁ ଆରମ୍ଭରେ ଏବଂ ଶେଷରେ ସାତ ଥର ଜପ କରିବା ଉଚିତ । ଏହାକୁ **'ଶାପୋଦ୍ଧାର ମନ୍ତ୍ର'** କୁହାଯାଏ । ଏହାପରେ ଉତ୍କୀଳନ ମନ୍ତ୍ର ଜପ କରାଯାଏ । ଆରମ୍ଭରେ ଓ ଶେଷରେ ଏହାକୁ ଏକୋଇଶି ଥର ଲେଖାଏଁ ଜପ କରାଯାଏ । ଏହି ମନ୍ତ୍ର ଏଇ ପ୍ରକାର ଅଟେ—'ଓଁ ଶ୍ରୀଂ କ୍ଲୀଂ ହ୍ରୀଂ ସପ୍ତଶତି ଚଣ୍ଡିକେ ଉତ୍କୀଳନଂ କୁରୁ କୁରୁ ସ୍ୱାହା' । ଏହାକୁ ଜପ କରିବା ପରେ ଆରମ୍ଭରେ ଓ ଶେଷରେ ସାତ ସାତ ଥର ମୃତସଂଜୀବନୀ ବିଦ୍ୟାକୁ ଜପ କରିବା ଉଚିତ; ଯାହାକି ଏହିପ୍ରକାର— 'ଓଁ ହ୍ରୀଂ ହ୍ରୀଂ ବଂ ବଂ ଐଂ ଐଂ ମୃତସଂଜୀବନି ବିଦ୍ୟେ ମୃତମୁତ୍ଥାପୟୋତ୍ଥାପୟ

---

୧. ପୁସ୍ତକପୂଜାର ମନ୍ତ୍ର—

ଓଁ ନମୋ ଦେବ୍ୟୈ ମହାଦେବ୍ୟୈ ଶିବାୟୈ ସତତଂ ନମଃ ।
ନମଃ ପ୍ରକୃତ୍ୟୈ ଭଦ୍ରାୟୈ ନିୟତାଃ ପ୍ରଣତାଃ ସ୍ମ ତାମ୍ ॥

(ବାରାହୀତନ୍ତ୍ର ତଥା ଚିଦମ୍ବରସଂହିତା) ।

୨. ଧ୍ୟାତ୍ୱା ଦେବୀଂ ପଞ୍ଚପୂଜାଂ କୃତ୍ୱା ଯୋନ୍ୟା ପ୍ରଣମ୍ୟ ଚ ।
ଆଧାରଂ ସ୍ଥାପ୍ୟ ମୂଳେନ ସ୍ଥାପୟେତ୍ତତ୍ର ପୁସ୍ତକମ୍ ॥

୩. 'ସପ୍ତଶତୀ-ସର୍ବସ୍ୱ'ର ଉପାସନା-କ୍ରମରେ ପ୍ରଥମେ ଶାପୋଦ୍ଧାର କରି ପରେ ଷଡ଼ଙ୍ଗ ସହ ପାଠ କରିବାକୁ ନିର୍ଣ୍ଣୟ କରାଯାଇଛି । ତେଣୁ କବଚ ଆଦି ପାଠର ପୂର୍ବରୁ ହିଁ ଶାପୋଦ୍ଧାର କରିବା ଉଚିତ । କାତ୍ୟାୟନୀ-ତନ୍ତ୍ରରେ ଶାପୋଦ୍ଧାର ତଥା ଉତ୍କୀଳନର କଥା ଆଉ ଏକ ପ୍ରକାରେ କୁହାଯାଇଛି—'ଅନ୍ତ୍ୟାଦ୍ୟାର୍କଦ୍ୱିରୁଦ୍ରତ୍ରିଦିଗବ୍ଧ୍ୟଙ୍କେଷ୍ୱିଭର୍ତ୍ତବଃ । ଅଶ୍ୱୋଽଶ୍ୱ ଇତି ସର୍ଗାଣାଂ ଶାପୋଦ୍ଧାରେ ମନୋଃ କ୍ରମଃ ॥' 'ଉତ୍କୀଳନେ ଚରିତ୍ରାଣାଂ ମଧ୍ୟାଦ୍ୟନ୍ତମିତି କ୍ରମଃ ।' ଅର୍ଥାତ୍ ସପ୍ତଶତୀରେ ଥିବା ଅଧ୍ୟାୟକୁ ୧୩ଶ-୧ମ, ୧୨ଶ-୨ୟ, ୧୧ଶ-୩ୟ, ୧୦ମ-୪ର୍ଥ, ୯ମ-୫ମ, ଏବଂ ୮ମ-୬ଷ୍ଠ କ୍ରମରେ ପାଠ କରି ଶେଷରେ ସପ୍ତମ ଅଧ୍ୟାୟକୁ ଦୁଇଥର ପାଠ କରିବା ବିଧେୟ । ଏହା ଶାପୋଦ୍ଧାର ଅଟେ ଏବଂ ପ୍ରଥମେ ମଧ୍ୟମ ଚରିତ୍ରର, ପୁନଃ ପ୍ରଥମ ଚରିତ୍ରର, ତତ୍ପଶ୍ଚାତ୍ ଉତ୍ତର ଚରିତ୍ରର ପାଠ କରିବାକୁ 'ଉତ୍କୀଳନ' କୁହାଯାଏ । କେତେକଙ୍କ ମତରେ କୀଳକରେ

କ୍ରାଁ ହ୍ରୀଁ ହ୍ରୀଁ ବଂ ସ୍ୱାହା ।' ମାରୀଚକଳ୍ପ ଅନୁସାରେ ସପ୍ତଶତୀଶାପବିମୋଚନର ମନ୍ତ୍ର ଏହା ଅଟେ—ଓଁ ଶ୍ରୀଂ ଶ୍ରୀଂ କ୍ଲାଁ ହୂଂ ଓଁ ଐଂ କ୍ଷୋଭୟ ମୋହୟ ଉତ୍କୀଳୟ ଉତ୍କୀଳୟ ଉତ୍କୀଳୟ ଠଂ ଠଂ।' ଏହି ମନ୍ତ୍ରକୁ ଆରମ୍ଭରେ ହିଁ ଶହେ ଆଠ ଥର ଜପ କରିବା ଦରକାର। ପାଠର ଶେଷରେ ନୁହେଁ। ଅଥବା ରୁଦ୍ରଯାମଳ ମହାତନ୍ତ୍ରର ଅନ୍ତର୍ଗତ ଦୁର୍ଗାକଳ୍ପରେ କୁହାଯାଇଥିବା ଚଣ୍ଡିକା-ଶାପ-ବିମୋଚନ ମନ୍ତ୍ରଗୁଡ଼ିକୁ ଆରମ୍ଭରେ ହିଁ ପାଠ କରିବା ଉଚିତ। ସେହି ମନ୍ତ୍ର ଏହିପ୍ରକାର ଅଟେ—

**ଓଁ ଅସ୍ୟ ଶ୍ରୀଚଣ୍ଡିକାୟା ବ୍ରହ୍ମବସିଷ୍ଠବିଶ୍ୱାମିତ୍ରଶାପବିମୋଚନମନ୍ତ୍ରସ୍ୟ ବସିଷ୍ଠନାରଦସଂବାଦସାମବେଦାଧିପତିବ୍ରହ୍ମାଣ ଋଷୟଃ ସର୍ବୈଶ୍ୱର୍ଯ୍ୟକାରିଣୀ ଶ୍ରୀଦୁର୍ଗା ଦେବତା ଚରିତ୍ରତ୍ରୟଂ ବୀଜଂ ହ୍ରୀଂ ଶକ୍ତିଃ ତ୍ରିଗୁଣାତ୍ମସ୍ୱରୂପଚଣ୍ଡିକାଶାପବିମୁକ୍ତୌ ମମ ସଂକଳ୍ପିତକାର୍ଯ୍ୟସିଦ୍ଧ୍ୟର୍ଥେ ଜପେ ବିନିଯୋଗଃ।**

**ଓଁ (ହ୍ରୀଂ) ରୀଂ ରେତଃସ୍ୱରୂପିଣ୍ୟୈ ମଧୁକୈଟଭମର୍ଦ୍ଦିନ୍ୟୈ ବ୍ରହ୍ମବସିଷ୍ଠ-ବିଶ୍ୱାମିତ୍ରଶାପାଦ୍ ବିମୁକ୍ତା ଭବ ॥ ୧ ॥ ଓଁ ଶ୍ରୀଂ ବୁଦ୍ଧିସ୍ୱରୂପିଣ୍ୟୈ ମହିଷାସୁର-ସୈନ୍ୟନାଶିନ୍ୟୈ ବ୍ରହ୍ମବସିଷ୍ଠବିଶ୍ୱାମିତ୍ରଶାପାଦ୍ ବିମୁକ୍ତା ଭବ ॥ ୨ ॥ ଓଁ ରଂ ରକ୍ତସ୍ୱରୂପିଣ୍ୟୈ ମହିଷାସୁରମର୍ଦ୍ଦିନ୍ୟୈ ବ୍ରହ୍ମବସିଷ୍ଠବିଶ୍ୱାମିତ୍ରଶାପାଦ୍ ବିମୁକ୍ତା ଭବ ॥ ୩ ॥ ଓଁ କ୍ଷୁଂ କ୍ଷୁଧାସ୍ୱରୂପିଣ୍ୟୈ ଦେବବନ୍ଦିତାୟୈ ବ୍ରହ୍ମବସିଷ୍ଠବିଶ୍ୱାମିତ୍ରଶାପାଦ୍**

---

ନିର୍ଦ୍ଦେଶ କରାଯାଇଥିବା 'ଦଦାତି ପ୍ରତିଗୃହ୍ଣାତି'ର ନିୟମଦ୍ୱାରା କୃଷ୍ଣପକ୍ଷର ଅଷ୍ଟମୀ ବା ଚତୁର୍ଦ୍ଦଶୀ ତିଥିରେ ଦେବୀଙ୍କୁ ସର୍ବସ୍ୱ ସମର୍ପଣ କରି ତାଙ୍କର ହୋଇ ତାଙ୍କର ପ୍ରସାଦ ରୂପରେ ପ୍ରତ୍ୟେକ ବସ୍ତୁ ଉପଯୋଗ କରିବା ହିଁ ଶାପୋଦ୍ଧାର ଏବଂ ଉତ୍କୀଳନ ଅଟେ। ଆଉ କେତେକ କହନ୍ତି—ଛଅ ଅଙ୍ଗସହିତ ପାଠ କରିବା ହିଁ ଶାପୋଦ୍ଧାର ଅଟେ। ଅଙ୍ଗଗୁଡ଼ିକର ତ୍ୟାଗ ହିଁ ଶାପ ଅଟେ। କେତେକ ବିଦ୍ୱାନ୍‌ଙ୍କ ମତରେ ଶାପୋଦ୍ଧାର କର୍ମ ଅନିବାର୍ଯ୍ୟ ନୁହେଁ, କାରଣ ରହସ୍ୟାଧ୍ୟାୟରେ ସ୍ପଷ୍ଟଭାବରେ କୁହାଯାଇଛି ଯେ ଯିଏ ଗୋଟିଏ ଦିନରେ ସମଗ୍ର ପାଠ ପଢ଼ିପାରନ୍ତି ନାହିଁ; ସେ ପ୍ରଥମ ଦିନ କେବଳ ମଧ୍ୟମ ଚରିତ୍ରକୁ ଏବଂ ଦ୍ୱିତୀୟ ଦିନ ଶେଷ ଦୁଇ ଚରିତ୍ରକୁ ପାଠ କରିବା ଉଚିତ। ଏତଦ୍‌ବ୍ୟତୀତ ଯିଏ ପ୍ରତିଦିନ ନିୟମପୂର୍ବକ ପାଠ କରନ୍ତି; ତାଙ୍କ ପାଇଁ ଗୋଟିଏ ଦିନରେ ଥରେ ପାଠ ନ ହେଲେ ବି ଏକ, ଦୁଇ, ଏକ, ଚାରି, ଦୁଇ, ଏକ ଏବଂ ଦୁଇଟି ଅଧ୍ୟାୟର କ୍ରମରେ ସାତଦିନ ମଧ୍ୟରେ ପାଠ ସଂପୂର୍ଣ୍ଣ କରିବାର ନିୟମ ରହିଛି। ଏପରି ଦଶାରେ ପ୍ରତିଦିନ ଶାପୋଦ୍ଧାର ଏବଂ କୀଳକ କିପରି ସମ୍ଭବ ? ହଁ, ଯାହା ହେଉ, ଏଠାରେ ଜିଜ୍ଞାସୁମାନଙ୍କ ଉପକାର ନିମନ୍ତେ ଶାପୋଦ୍ଧାର ଏବଂ ଉତ୍କୀଳନ ଉଭୟର ବିଧାନ ଦିଆଯାଇଛି।

ବିମୁକ୍ତା ଭବ ॥ ୪ ॥ ଓଁ ଛାଂ ଛାୟାସ୍ୱରୂପିଣ୍ୟୈ ଦୂତସଂବାଦିନ୍ୟୈ ବ୍ରହ୍ମବସିଷ୍ଠବିଶ୍ୱାମିତ୍ରଶାପାଦ୍ ବିମୁକ୍ତା ଭବ ॥ ୫ ॥ ଓଁ ଶଂ ଶକ୍ତିସ୍ୱରୂପିଣ୍ୟୈ ଧୂମ୍ରଲୋଚନଘାତିନ୍ୟୈ ବ୍ରହ୍ମବସିଷ୍ଠବିଶ୍ୱାମିତ୍ରଶାପାଦ୍ ବିମୁକ୍ତା ଭବ ॥ ୬ ॥ ଓଁ ତୃଂ ତୃଷାସ୍ୱରୂପିଣ୍ୟୈ ଚଣ୍ଡମୁଣ୍ଡବଧକାରିଣ୍ୟୈ ବ୍ରହ୍ମବସିଷ୍ଠବିଶ୍ୱାମିତ୍ରଶାପାଦ୍ ବିମୁକ୍ତା ଭବ ॥ ୭ ॥ ଓଁ କ୍ଷାଂ କ୍ଷାନ୍ତିସ୍ୱରୂପିଣ୍ୟୈ ରକ୍ତବୀଜବଧକାରିଣ୍ୟୈ ବ୍ରହ୍ମ-ବସିଷ୍ଠବିଶ୍ୱାମିତ୍ରଶାପାଦ୍ ବିମୁକ୍ତା ଭବ ॥ ୮ ॥ ଓଁ ଜାଂ ଜାତିସ୍ୱରୂପିଣ୍ୟୈ ନିଶୁମ୍ଭବଧକାରିଣ୍ୟୈ ବ୍ରହ୍ମବସିଷ୍ଠବିଶ୍ୱାମିତ୍ରଶାପାଦ୍ ବିମୁକ୍ତା ଭବ ॥ ୯ ॥ ଓଁ ଲଂ ଲଜ୍ଜାସ୍ୱରୂପିଣ୍ୟୈ ଶୁମ୍ଭବଧକାରିଣ୍ୟୈ ବ୍ରହ୍ମବସିଷ୍ଠବିଶ୍ୱାମିତ୍ରଶାପାଦ୍ ବିମୁକ୍ତା ଭବ ॥ ୧୦ ॥ ଓଁ ଶାଂ ଶାନ୍ତିସ୍ୱରୂପିଣ୍ୟୈ ଦେବସ୍ତୁତ୍ୟୈ ବ୍ରହ୍ମବସିଷ୍ଠବିଶ୍ୱାମିତ୍ରଶାପାଦ୍ ବିମୁକ୍ତା ଭବ ॥ ୧୧ ॥ ଓଁ ଶ୍ରଂ ଶ୍ରଦ୍ଧାସ୍ୱରୂପିଣ୍ୟୈ ସକଳଫଳଦାତ୍ର୍ୟୈ ବ୍ରହ୍ମବସିଷ୍ଠବିଶ୍ୱାମିତ୍ରଶାପାଦ୍ ବିମୁକ୍ତା ଭବ॥ ୧୨ ॥ ଓଁ କାଂ କାନ୍ତିସ୍ୱରୂପିଣ୍ୟୈ ରାଜବରପ୍ରଦାୟୈ ବ୍ରହ୍ମବସିଷ୍ଠବିଶ୍ୱାମିତ୍ରଶାପାଦ୍ ବିମୁକ୍ତା ଭବ॥ ୧୩ ॥ ଓଁ ମାଂ ମାତୃସ୍ୱରୂପିଣ୍ୟୈ ଅନର୍ଗଳମହିମସହିତାୟୈ ବ୍ରହ୍ମବସିଷ୍ଠବିଶ୍ୱାମିତ୍ରଶାପାଦ୍ ବିମୁକ୍ତା ଭବ ॥ ୧୪ ॥ ଓଁ ହ୍ରୀଂ ଶ୍ରୀଂ ଦୁଂ ଦୁର୍ଗାୟୈ ସଂ ସର୍ବୈଶ୍ୱର୍ଯ୍ୟକାରିଣ୍ୟୈ ବ୍ରହ୍ମବସିଷ୍ଠବିଶ୍ୱାମିତ୍ରଶାପାଦ୍ ବିମୁକ୍ତା ଭବ ॥ ୧୫ ॥ ଓଁ ଐଂ ହ୍ରୀଂ କ୍ଲୀଂ ନମଃ ଶିବାୟୈ ଅଭେଦ୍ୟକବଚସ୍ୱରୂପିଣ୍ୟୈ ବ୍ରହ୍ମବସିଷ୍ଠବିଶ୍ୱାମିତ୍ରଶାପାଦ୍ ବିମୁକ୍ତା ଭବ ॥ ୧୬ ॥ ଓଁ କ୍ରୀଂ କାଲ୍ୟୈ କାଳି ହ୍ରୀଂ ଫଟ୍ ସ୍ୱାହାୟୈ ଋଗ୍‌ବେଦସ୍ୱରୂପିଣ୍ୟୈ ବ୍ରହ୍ମବସିଷ୍ଠବିଶ୍ୱାମିତ୍ରଶାପାଦ୍ ବିମୁକ୍ତା ଭବ ॥ ୧୭ ॥ ଓଁ ଐଂ ହ୍ରୀଂ କ୍ଲୀଂ ମହାକାଳୀମହାଲକ୍ଷ୍ମୀମହାସରସ୍ୱତୀସ୍ୱରୂପିଣ୍ୟୈ ତ୍ରିଗୁଣାତ୍ମିକାୟୈ ଦୁର୍ଗାଦେବ୍ୟୈ ନମଃ ॥ ୧୮ ॥

ଇତ୍ୟେବଂ ହି ମହାମନ୍ତ୍ରାନ୍ ପଠିତ୍ୱା ପରମେଶ୍ୱର ।
ଚଣ୍ଡୀପାଠଂ ଦିବା ରାତ୍ରୌ କୁର୍ଯ୍ୟାଦେବ ନ ସଂଶୟଃ ॥ ୧୯ ॥
ଏବଂ ମନ୍ତ୍ରଂ ନ ଜାନାତି ଚଣ୍ଡୀପାଠଂ କରୋତି ଯଃ ।
ଆତ୍ମାନଂ ଚୈବ ଦାତାରଂ କ୍ଷୀଣଂ କୁର୍ଯ୍ୟାନ୍ନ ସଂଶୟଃ ॥ ୨୦ ॥

ଏହିପରି ଶାପୋଦ୍ଧାର କରିବା ପରେ ଅନ୍ତର୍ମାତୃକା-ବହିର୍ମାତୃକା ଆଦି ନ୍ୟାସ କରିବା ଉଚିତ । ପୁନଶ୍ଚ ଶ୍ରୀଦେବୀଙ୍କୁ ଧ୍ୟାନ କରି ରହସ୍ୟରେ ନିର୍ଦ୍ଦେଶ କରାଯାଇଥିବା ଅନୁସାରେ ନଅଟି କୋଷ୍ଟଯୁକ୍ତ ଯନ୍ତ୍ରରେ ମହାଲକ୍ଷ୍ମୀ ଆଦିଙ୍କୁ ପୂଜା କରିବା ଉଚିତ । ଏହାପରେ ଛଅଟି ଅଙ୍ଗ ସହିତ ଦୁର୍ଗାସପ୍ତଶତୀ ପାଠ

ଆରମ୍ଭ କରାଯାଏ । କବଚ, ଅର୍ଗଳା, କୀଳକ ଏବଂ ତିନୋଟି ରହସ୍ୟ—ଏସବୁ ସପ୍ତଶତୀର ଛଅଟି ଅଙ୍ଗରୂପେ ସ୍ୱୀକୃତ ହୋଇଛି । ଏହାର କ୍ରମରେ ମଧ୍ୟ ମତଭେଦ ଅଛି । ଚିଦମ୍ବର ସଂହିତାରେ ପ୍ରଥମେ ଅର୍ଗଳା ପୁନଶ୍ଚ କୀଳକ ତଥା ଶେଷରେ କବଚ ପାଠ କରିବା ବିଧାନ ଅଛି* । କିନ୍ତୁ ଯୋଗରତ୍ନାବଳୀରେ ପାଠର କ୍ରମ ଏହାଠାରୁ ଭିନ୍ନ ଅଟେ । ସେଥିରେ କବଚକୁ ବୀଜ, ଅର୍ଗଳାକୁ ଶକ୍ତି ତଥା କୀଳକକୁ କୀଳକ ବୋଲି ସଂଜ୍ଞା ଦିଆଯାଇଛି । ଯେପରି ସବୁମନ୍ତ୍ରରେ ପ୍ରଥମେ ବୀଜର, ପୁନଶ୍ଚ ଶକ୍ତିର ତଥା ଶେଷରେ କୀଳକର ଉଚ୍ଚାରଣ ହୁଏ; ସେହିପରି ଏଠାରେ ମଧ୍ୟ ପ୍ରଥମେ କବଚରୂପ ବୀଜର, ପୁନଃ ଅର୍ଗଳାରୂପା ଶକ୍ତିର ତଥା ଶେଷରେ କୀଳକରୂପ କୀଳକର କ୍ରମଶଃ ପାଠ ହେବା ଉଚିତ । ଏଠାରେ ଏହି କ୍ରମ ଅନୁସୃତ ହୋଇଛି ।



---

* ଅର୍ଗଳଂ କୀଳକଂ ଚାଦୌ ପଠିତ୍ୱା କବଚଂ ପଠେତ୍ ।
ଜପ୍ୟା ସପ୍ତଶତୀ ପଶ୍ଚାତ୍ ସିଦ୍ଧିକାମେନ ମନ୍ତ୍ରିଣା ॥
କବଚଂ ବୀଜମାଦିଷ୍ଟମର୍ଗଳା ଶକ୍ତିରୁଚ୍ୟତେ ।
କୀଳକଂ କୀଳକଂ ପ୍ରାହୁଃ ସପ୍ତଶତ୍ୟା ମହାମନୋଃ ॥

ଯଥା ସର୍ବମନ୍ତ୍ରେଷୁ ବୀଜଶକ୍ତିକୀଳକାନାଂ ପ୍ରଥମମୁଚ୍ଚାରଣଂ ତଥା ସପ୍ତଶତୀପାଠେଽପି କବଚାର୍ଗଳାକୀଳକାନାଂ ପ୍ରଥମଂ ପାଠଃ ସ୍ୟାତ୍ ।

ଏହି ପ୍ରକାର ଅନେକ ତନ୍ତ୍ର ଅନୁସାରେ ସପ୍ତଶତୀର ପାଠକ୍ରମ ଅନେକ ପ୍ରକାରରେ ଉପଲବ୍ଧ ହୁଏ । ଏପରି ଦଶାରେ ନିଜ ଦେଶରେ ପାଠର ଯାହା କ୍ରମ ପୂର୍ବପରମ୍ପରାରେ ପ୍ରଚଳିତ ହେଉଛି, ତାହାକୁ ଅନୁସରଣ କରିବା ଉତ୍ତମ ।



# ଅଥ ଦେବ୍ୟାଃ କବଚମ୍

ଓଁ ଅସ୍ୟ ଶ୍ରୀଚଣ୍ଡୀକବଚସ୍ୟ ବ୍ରହ୍ମା ଋଷିଃ, ଅନୁଷ୍ଟୁପ୍ ଛନ୍ଦଃ, ଚାମୁଣ୍ଡା ଦେବତା, ଅଙ୍ଗନ୍ୟାସୋକ୍ତମାତରୋ ବୀଜମ୍, ଦିଗ୍‌ବନ୍ଧଦେବତାସ୍ତତ୍ତ୍ୱମ୍, ଶ୍ରୀଜଗଦମ୍ବାପ୍ରୀତ୍ୟର୍ଥେ ସପ୍ତଶତୀପାଠାଙ୍ଗତ୍ୱେନ ଜପେ ବିନିଯୋଗଃ ।

**ଓଁ ନମଶ୍ଚଣ୍ଡିକାୟୈ ॥**

*ମାର୍କଣ୍ଡେୟ ଉବାଚ*

**ଓଁ ଯଦ୍‌ଗୁହ୍ୟଂ ପରମଂ ଲୋକେ ସର୍ବରକ୍ଷାକରଂ ନୃଣାମ୍ ।**
**ଯନ୍ନ କସ୍ୟଚିଦାଖ୍ୟାତଂ ତନ୍ମେ ବ୍ରୂହି ପିତାମହ ॥ ୧ ॥**

*ବ୍ରହ୍ମୋବାଚ*

**ଅସ୍ତି ଗୁହ୍ୟତମଂ ବିପ୍ର ସର୍ବଭୂତୋପକାରକମ୍ ।**
**ଦେବ୍ୟାସ୍ତୁ କବଚଂ ପୁଣ୍ୟଂ ତଚ୍ଛୃଣୁଷ୍ୱ ମହାମୁନେ ॥ ୨ ॥**
**ପ୍ରଥମଂ ଶୈଳପୁତ୍ରୀ ଚ ଦ୍ୱିତୀୟଂ ବ୍ରହ୍ମଚାରିଣୀ ।**

---

ଓଁ ଚଣ୍ଡିକାଦେବୀଙ୍କୁ ନମସ୍କାର ।

**ଶ୍ରୀମାର୍କଣ୍ଡେୟ ଋଷି କହିଲେ**—ହେ ପିତାମହ ! ଯାହା ଏହି ସଂସାରରେ ପରମ ଗୋପନୀୟ ତଥା ମନୁଷ୍ୟମାନଙ୍କୁ ସବୁ ପ୍ରକାରେ ରକ୍ଷା କରେ ଏବଂ ଆପଣ ବର୍ତ୍ତମାନ ସୁଦ୍ଧା ଯାହା କାହାକୁ କହିନାହାଁନ୍ତି; ଏତାଦୃଶ କୌଣସି ସାଧନକୁ ମୋତେ କହନ୍ତୁ ॥ ୧ ॥

**ବ୍ରହ୍ମା କହିଲେ**—ହେ ବ୍ରହ୍ମନ୍ ! ଏହିପ୍ରକାର ସାଧନ କେବଳ ଦେବୀଙ୍କ କବଚ ଅଟେ । ଯାହା ଗୋପନୀୟଠାରୁ ମଧ୍ୟ ପରମ ଗୋପନୀୟ, ପବିତ୍ର ତଥା ସମସ୍ତ ପ୍ରାଣୀମାନଙ୍କର ଉପକାରକ ଅଟେ । ହେ ମହାମୁନେ ! ତାହାକୁ ଶ୍ରବଣ କରନ୍ତୁ ॥ ୨ ॥ ଦେବୀଙ୍କର ନଅଟି ମୂର୍ତ୍ତି ରହିଛି; ତାହାକୁ 'ନବଦୁର୍ଗା' କହନ୍ତି । ତେଣୁ ଏଠାରେ ତାଙ୍କର ପୃଥକ୍ ପୃଥକ୍ ନାମ ପ୍ରକାଶ କରୁଛି । ପ୍ରଥମ ନାମ 'ଶୈଳପୁତ୍ରୀ'[୧] । ଦ୍ୱିତୀୟ ମୂର୍ତ୍ତିର ନାମ ବ୍ରହ୍ମଚାରିଣୀ[୨] ।

---

୧. ଗିରିରାଜ ହିମାଳୟଙ୍କ ପୁତ୍ରୀ 'ପାର୍ବତୀଦେବୀ' । ଯଦ୍ୟପି ଇଏ ସମସ୍ତଙ୍କ ଅଧୀଶ୍ୱରୀ ଅଟନ୍ତି, ତଥାପି ହିମାଳୟଙ୍କ ତପସ୍ୟା ଓ ପ୍ରାର୍ଥନାଦ୍ୱାରା ପ୍ରସନ୍ନ ହୋଇ କୃପାପୂର୍ବକ ତାଙ୍କର ପୁତ୍ରୀରୂପରେ ପ୍ରକଟିତ ହୋଇଛନ୍ତି । ଏହି ବୃତ୍ତାନ୍ତ ପୁରାଣମାନଙ୍କରେ ପ୍ରସିଦ୍ଧ । ୨. ବ୍ରହ୍ମ ଚାରୟିତୁଂ ଶୀଳଂ ଯସ୍ୟାଃ ସା ବ୍ରହ୍ମଚାରିଣୀ—ସଚ୍ଚିଦାନନ୍ଦମୟ ବ୍ରହ୍ମସ୍ୱରୂପର ପ୍ରାପ୍ତି କରାଇବା

ତୃତୀୟଂ ଚନ୍ଦ୍ରଘଣ୍ଟେତି କୂଷ୍ମାଣ୍ଡେତି ଚତୁର୍ଥକମ୍ ॥ ୩ ॥
ପଞ୍ଚମଂ ସ୍କନ୍ଦମାତେତି ଷଷ୍ଠଂ କାତ୍ୟାୟନୀତି ଚ ।
ସପ୍ତମଂ କାଳରାତ୍ରୀତି ମହାଗୌରୀତି ଚାଷ୍ଟମମ୍ ॥ ୪ ॥
ନବମଂ ସିଦ୍ଧିଦାତ୍ରୀ ଚ ନବଦୁର୍ଗାଃ ପ୍ରକୀର୍ତ୍ତିତାଃ ।
ଉକ୍ତାନ୍ୟେତାନି ନାମାନି ବ୍ରହ୍ମଣୈବ ମହାତ୍ମନା ॥ ୫ ॥
ଅଗ୍ନିନା ଦହ୍ୟମାନସ୍ତୁ ଶତ୍ରୁମଧ୍ୟେ ଗତୋ ରଣେ ।
ବିଷମେ ଦୁର୍ଗମେ ଚୈବ ଭୟାର୍ତ୍ତାଃ ଶରଣଂ ଗତାଃ ॥ ୬ ॥
ନ ତେଷାଂ ଜାୟତେ କିଞ୍ଚିଦଶୁଭଂ ରଣସଙ୍କଟେ ।
ନାପଦଂ ତସ୍ୟ ପଶ୍ୟାମି ଶୋକଦୁଃଖଭୟଂ ନ ହି ॥ ୭ ॥

---

ତୃତୀୟ ସ୍ୱରୂପ ଚନ୍ଦ୍ରଘଣ୍ଟା[୩] ନାମରେ ପ୍ରସିଦ୍ଧ । ଚତୁର୍ଥ ମୂର୍ତ୍ତିକୁ କୂଷ୍ମାଣ୍ଡା[୪] କହନ୍ତି । ପଞ୍ଚମ ଦୁର୍ଗାଙ୍କ ନାମ ସ୍କନ୍ଦମାତା[୫] । ଦେବୀଙ୍କ ଷଷ୍ଠ ରୂପକୁ କାତ୍ୟାୟନୀ[୬] କହନ୍ତି । ସପ୍ତମ କାଳରାତ୍ରି[୭] ଏବଂ ଅଷ୍ଟମ ସ୍ୱରୂପ ମହାଗୌରୀ[୮] ନାମରେ ପ୍ରସିଦ୍ଧ ଅଟେ । ନବମ ଦୁର୍ଗାଙ୍କ ନାମ ସିଦ୍ଧିଦାତ୍ରୀ[୯] ଅଟେ । ଏହି ସବୁ ନାମ ସର୍ବଜ୍ଞ ମହାତ୍ମା ବେଦ ଭଗବାନ୍‌ଙ୍କ ଦ୍ୱାରା ହିଁ ପ୍ରତିପାଦିତ ହୋଇଛି ॥ ୩—୫ ॥ ଯେଉଁ ମନୁଷ୍ୟ ଅଗ୍ନିରେ ଦଗ୍ଧ ହେଉଛି; ରଣଭୂମିରେ ଶତ୍ରୁମାନଙ୍କଦ୍ୱାରା ପରିବେଷ୍ଟିତ ହୋଇଯାଇଛି; ବିଷମ ସଙ୍କଟରେ ପଡ଼ିଛି ତଥା ଏହିପ୍ରକାର ଭୟରେ ଆତୁର ହୋଇ ଯେଉଁମାନେ ଭଗବତୀ ଦୁର୍ଗାଙ୍କ ଶରଣ ନେଇଛନ୍ତି; ସେମାନଙ୍କର କେବେ

---

ଯାହାଙ୍କର ସ୍ୱଭାବ; ସେ 'ବ୍ରହ୍ମଚାରିଣୀ' ଅଟନ୍ତି । ୩. ଚନ୍ଦ୍ରଃ ଘଣ୍ଟାୟାଂ ଯସ୍ୟାଃ ସା—ଆହ୍ଲାଦକାରୀ ଚନ୍ଦ୍ରମା ଯାହାଙ୍କ ଘଣ୍ଟାରେ ରହିଛନ୍ତି—ସେହି ଦେବୀଙ୍କ ନାମ 'ଚନ୍ଦ୍ରଘଣ୍ଟା' । ୪. କୁତ୍ସିତଃ ଉଷ୍ମା କୂଷ୍ମା—ତ୍ରିବିଧତାପଯୁତଃ ସଂସାରଃ, ସ ଅଣ୍ଡେ ମାଂସପେଶ୍ୟାମୁଦରରୂପାୟାଂ ଯସ୍ୟାଃ ସା କୂଷ୍ମାଣ୍ଡା । ଅର୍ଥାତ୍ ତ୍ରିବିଧ ତାପଯୁକ୍ତ ସଂସାର ଯାହାଙ୍କ ଉଦରରେ ଅବସ୍ଥାନ କରିଛି; ସେହି ଭଗବତୀଙ୍କୁ 'କୂଷ୍ମାଣ୍ଡା' କୁହାଯାଏ । ୫. ଛାନ୍ଦୋଗ୍ୟଶ୍ରୁତି ଅନୁସାରେ ଭଗବତୀଙ୍କ ଶକ୍ତିରୁ ଉତ୍ପନ୍ନ ହୋଇଥିବା ସନତ୍‌କୁମାରଙ୍କ ନାମ ସ୍କନ୍ଦ ଅଟେ । ତାଙ୍କର ମାତା ହୋଇଥିବାରୁ ତାହାଙ୍କୁ 'ସ୍କନ୍ଦମାତା' କୁହାଯାଏ । ୬. ଦେବତାମାନଙ୍କ କାର୍ଯ୍ୟସିଦ୍ଧି କରିବା-ନିମନ୍ତେ ଦେବୀ ମହର୍ଷି କାତ୍ୟାୟନଙ୍କ ଆଶ୍ରମରେ ପ୍ରକଟିତ ହୋଇଥିଲେ । ମହର୍ଷି ତାଙ୍କୁ ନିଜର କନ୍ୟାରୂପେ ଗ୍ରହଣ କରିଥିଲେ । ତେଣୁ ସେ 'କାତ୍ୟାୟନୀ' ନାମରେ ପ୍ରସିଦ୍ଧ । ୭. ସମସ୍ତଙ୍କ ମୃତ୍ୟୁରୂପକ କାଳର ରାତ୍ରି (ବିନାଶିକା) ହେବାରୁ ତାଙ୍କର ନାମ 'କାଳରାତ୍ରି' ଅଟେ । ୮. ତପସ୍ୟାଦ୍ୱାରା ଅତି ଗୌରବର୍ଣ୍ଣ ପ୍ରାପ୍ତ ହୋଇଥିବାରୁ ସେ 'ମହାଗୌରୀ' ନାମରେ ଖ୍ୟାତ । ୯. ସିଦ୍ଧି ଅର୍ଥାତ୍ ମୋକ୍ଷପ୍ରଦାନ କରୁଥିବାରୁ ତାଙ୍କର ନାମ 'ସିଦ୍ଧିଦାତ୍ରୀ' ଅଟେ ।

ଯୈସ୍ତୁ ଭକ୍ତ୍ୟା ସ୍ମୃତା ନୂନଂ ତେଷାଂ ବୃଦ୍ଧିଃ ପ୍ରଜାୟତେ ।
ଯେ ତ୍ୱାଂ ସ୍ମରନ୍ତି ଦେବେଶି ରକ୍ଷସେ ତାନ୍ନ ସଂଶୟଃ ॥ ୮ ॥
ପ୍ରେତସଂସ୍ଥା ତୁ ଚାମୁଣ୍ଡା ବାରାହୀ ମହିଷାସନା ।
ଐନ୍ଦ୍ରୀ ଗଜସମାରୂଢା ବୈଷ୍ଣବୀ ଗରୁଡାସନା ॥ ୯ ॥
ମାହେଶ୍ୱରୀ ବୃଷାରୂଢା କୌମାରୀ ଶିଖିବାହନା ।
ଲକ୍ଷ୍ମୀଃ ପଦ୍ମାସନା ଦେବୀ ପଦ୍ମହସ୍ତା ହରିପ୍ରିୟା ॥ ୧୦ ॥
ଶ୍ୱେତରୂପଧରା ଦେବୀ ଈଶ୍ୱରୀ ବୃଷବାହନା ।
ବ୍ରାହ୍ମୀ ହଂସସମାରୂଢା ସର୍ବାଭରଣଭୂଷିତା ॥ ୧୧ ॥
ଇତ୍ୟେତା ମାତରଃ ସର୍ବାଃ ସର୍ବଯୋଗସମନ୍ୱିତାଃ ।
ନାନାଭରଣଶୋଭାଢ୍ୟା ନାନାରତ୍ନୋପଶୋଭିତାଃ ॥ ୧୨ ॥

---

କୌଣସି ଅମଙ୍ଗଳ ହୁଏ ନାହିଁ। ଯୁଦ୍ଧ ସମୟରେ ବିପଦ ପଡ଼ିଲେ ମଧ୍ୟ ସେମାନଙ୍କ ଉପରେ କୌଣସି ବିପତ୍ତି ଦେଖାଦିଏ ନାହିଁ। ସେମାନଙ୍କୁ ଶୋକ, ଦୁଃଖ ଏବଂ ଭୟପ୍ରାପ୍ତି ହୁଏ ନାହିଁ ॥ ୬-୭ ॥

ଯେଉଁମାନେ ଭକ୍ତିପୂର୍ବକ ଦେବୀଙ୍କୁ ସ୍ମରଣ କରନ୍ତି; ସେମାନଙ୍କର ନିଶ୍ଚିତ ଭାବରେ ଅଭ୍ୟୁଦୟ ହୁଏ। ହେ ଦେବେଶ୍ୱରି ! ଯେଉଁ ବ୍ୟକ୍ତି ତୁମ୍ଭର ଚିନ୍ତନ କରନ୍ତି; ସେମାନଙ୍କୁ ତୁମ୍ଭେ ନିଃସନ୍ଦେହରେ ରକ୍ଷା କର ॥ ୮ ॥ ଚାମୁଣ୍ଡାଦେବୀ ପ୍ରେତ ଉପରେ ଆରୂଢ଼ ହୁଅନ୍ତି। ବାରାହୀ ମଇଁଷି ଉପରେ ଆସନ ସ୍ଥାପନ କରିଛନ୍ତି। ଐନ୍ଦ୍ରୀଦେବୀ ବାହନ ଐରାବତ ହସ୍ତୀରେ ଆରୂଢ଼ା ଅଛନ୍ତି। ବୈଷ୍ଣବୀଦେବୀ ଗରୁଡ଼ ଉପରେ ଆସନ ବିସ୍ତାର କରିଛନ୍ତି ॥ ୯ ॥ ମାହେଶ୍ୱରୀ ବୃଷଭ ଉପରେ ଆରୂଢ଼ା ହୋଇଛନ୍ତି। କୌମାରୀଙ୍କ ବାହନ ମୟୂର। ଭଗବାନ୍ ବିଷ୍ଣୁଙ୍କର ପ୍ରିୟତମା ଲକ୍ଷ୍ମୀଦେବୀ କମଳାସନ ଉପରେ ବିରାଜମାନ ହୋଇଛନ୍ତି ଏବଂ ହସ୍ତରେ କମଳ ଧାରଣ କରିଛନ୍ତି ॥ ୧୦ ॥ ବୃଷଭ ଉପରେ ଆରୂଢ଼ା ଈଶ୍ୱରୀଦେବୀ ଶ୍ୱେତରୂପ ଧାରଣ କରିଛନ୍ତି। ବ୍ରାହ୍ମୀ ଦେବୀ ହଂସ ଉପରେ ବସିଛନ୍ତି ଏବଂ ସମସ୍ତପ୍ରକାର ଆଭୂଷଣଦ୍ୱାରା ବିଭୂଷିତା ହୋଇଛନ୍ତି ॥ ୧୧ ॥ ଏହିପ୍ରକାର ଏଇ ସମସ୍ତ ମାତୃଗଣ ସମସ୍ତ ପ୍ରକାର ଯୋଗଶକ୍ତିସମ୍ପନ୍ନା ଅଟନ୍ତି। ଏମାନଙ୍କ ବ୍ୟତୀତ ଆହୁରି ମଧ୍ୟ ଅନେକ ଦେବୀ ଅଛନ୍ତି; ଯେଉଁମାନେ ଅନେକପ୍ରକାରର ଆଭୂଷଣରେ ଶୋଭାଯୁକ୍ତ ତଥା ନାନାପ୍ରକାରର ରତ୍ନରେ ସୁଶୋଭିତା ହୋଇଛନ୍ତି ॥ ୧୨ ॥

ଦୃଶ୍ୟନ୍ତେ ରଥମାରୂଢା ଦେବ୍ୟଃ କ୍ରୋଧସମାକୁଳାଃ ।
ଶଙ୍ଖଂ ଚକ୍ରଂ ଗଦାଂ ଶକ୍ତିଂ ହଳଂ ଚ ମୁସଳାୟୁଧମ୍ ॥ ୧୩ ॥
ଖେଟକଂ ତୋମରଂ ଚୈବ ପରଶୁଂ ପାଶମେବ ଚ ।
କୁନ୍ତାୟୁଧଂ ତ୍ରିଶୂଳଂ ଚ ଶାର୍ଙ୍ଗମାୟୁଧମୁତ୍ତମମ୍ ॥ ୧୪ ॥
ଦୈତ୍ୟାନାଂ ଦେହନାଶାୟ ଭକ୍ତାନାମଭୟାୟ ଚ ।
ଧାରୟନ୍ତ୍ୟାୟୁଧାନୀତ୍ଥଂ ଦେବାନାଂ ଚ ହିତାୟ ବୈ ॥ ୧୫ ॥
ନମସ୍ତେଽସ୍ତୁ ମହାରୌଦ୍ରେ ମହାଘୋରପରାକ୍ରମେ ।
ମହାବଳେ ମହୋତ୍ସାହେ ମହାଭୟବିନାଶିନି ॥ ୧୬ ॥
ତ୍ରାହି ମାଂ ଦେବି ଦୁଷ୍ପ୍ରେକ୍ଷ୍ୟେ ଶତ୍ରୂଣାଂ ଭୟବର୍ଦ୍ଧିନି ।
ପ୍ରାଚ୍ୟାଂ ରକ୍ଷତୁ ମାମୈନ୍ଦ୍ରୀ ଆଗ୍ନେୟ୍ୟାମଗ୍ନିଦେବତା ॥ ୧୭ ॥
ଦକ୍ଷିଣେଽବତୁ ବାରାହୀ ନୈର୍ଋତ୍ୟାଂ ଖଡ୍‌ଗଧାରିଣୀ ।
ପ୍ରତୀଚ୍ୟାଂ ବାରୁଣୀ ରକ୍ଷେଦ୍ ବାୟବ୍ୟାଂ ମୃଗବାହିନୀ ॥ ୧୮ ॥

---

ଏହି ସବୁ ଦେବୀମାନେ କ୍ରୋଧାପନ୍ନା ହୋଇଛନ୍ତି ଏବଂ ଭକ୍ତମାନଙ୍କ ରକ୍ଷା ନିମନ୍ତେ ରଥ ଉପରେ ବସିଥିବାର ଦେଖା ଯାଉଛନ୍ତି । ଏମାନେ ଶଙ୍ଖ, ଚକ୍ର, ଗଦା, ଶକ୍ତି, ହଳ ଏବଂ ମୁସଳ, ଖେଟକ (ଢାଲ) ଏବଂ ତୋମର, ପରଶୁ ତଥା ପାଶ, କୁନ୍ତ, ତ୍ରିଶୂଳ ଏବଂ ଉତ୍ତମ ଶାର୍ଙ୍ଗଧନୁ ଆଦି ଅସ୍ତ୍ରଶସ୍ତ୍ର ନିଜ ହସ୍ତରେ ଧାରଣ କରିଛନ୍ତି । ଦୈତ୍ୟମାନଙ୍କ ଶରୀରକୁ ବିନାଶ କରିବା, ଭକ୍ତମାନଙ୍କୁ ଅଭୟ ବର ପ୍ରଦାନ କରିବା ଏବଂ ଦେବତାମାନଙ୍କର କଲ୍ୟାଣ କରିବା ନିମନ୍ତେ ସେ ଶସ୍ତ୍ର ଧାରଣ କରିଛନ୍ତି ॥ ୧୩—୧୫ ॥ (କବଚ ପାଠ ଆରମ୍ଭ କରିବା ପୂର୍ବରୁ ଏହିପ୍ରକାର ପ୍ରାର୍ଥନା କରିବା ଉଚିତ) ମହାନ୍ ରୌଦ୍ରରୂପ, ଅତ୍ୟନ୍ତ ଘୋର ପରାକ୍ରମ, ମହାନ୍ ବଳ ଏବଂ ମହାନ୍ ଉତ୍ସାହଯୁକ୍ତା ହେ ଦେବି ! ତୁମେ ମହାନ୍ ଭୟର ବିନାଶିନୀ ଅଟ । ତୁମ୍ଭଙ୍କୁ ନମସ୍କାର ॥ ୧୬ ॥ ତୁମ୍ଭ ଆଡ଼କୁ ଚାହିଁବା ମଧ୍ୟ କଷ୍ଟକର । ଶତ୍ରୁମାନଙ୍କ ଭୟବର୍ଦ୍ଧିନୀ ହେ ଜଗଦମ୍ବିକେ ! ମୋତେ ରକ୍ଷା କର ॥

ପୂର୍ବଦିଗରେ ଐନ୍ଦ୍ରୀ (ଇନ୍ଦ୍ରଶକ୍ତି) ମୋତେ ରକ୍ଷା କରନ୍ତୁ । ଅଗ୍ନିକୋଣରେ ଅଗ୍ନିଶକ୍ତି, ଦକ୍ଷିଣଦିଗରେ ବାରାହୀ ତଥା ନୈର୍ଋତକୋଣରେ ଖଡ୍ଗଧାରିଣୀ ମୋତେ ରକ୍ଷା କରନ୍ତୁ । ପଶ୍ଚିମଦିଗରେ ବାରୁଣୀ ଏବଂ ବାୟବ୍ୟକୋଣରେ ମୃଗ ଉପରେ ଆରୂଢ଼ା ଦେବୀ ମୋତେ ରକ୍ଷା କରନ୍ତୁ ॥ ୧୭-୧୮ ॥

ଉଦୀଚ୍ୟାଂ ପାତୁ କୌମାରୀ ଐଶାନ୍ୟାଂ ଶୂଳଧାରିଣୀ ।
ଊର୍ଦ୍ଧ୍ୱଂ ବ୍ରହ୍ମାଣି ମେ ରକ୍ଷେଦଧସ୍ତାଦ୍ ବୈଷ୍ଣବୀ ତଥା ॥ ୧୯ ॥
ଏବଂ ଦଶ ଦିଶୋ ରକ୍ଷେଚ୍ଚାମୁଣ୍ଡା ଶବବାହନା ।
ଜୟା ମେ ଚାଗ୍ରତଃ ପାତୁ ବିଜୟା ପାତୁ ପୃଷ୍ଠତଃ ॥ ୨୦ ॥
ଅଜିତା ବାମପାର୍ଶ୍ୱେ ତୁ ଦକ୍ଷିଣେ ଚାପରାଜିତା ।
ଶିଖାମୁଦ୍ୟୋତିନୀ ରକ୍ଷେଦୁମା ମୂର୍ଦ୍ଧ୍ନି ବ୍ୟବସ୍ଥିତା ॥ ୨୧ ॥
ମାଳାଧରୀ ଲଲାଟେ ଚ ଭ୍ରୁବୌ ରକ୍ଷେଦ୍ ଯଶସ୍ୱିନୀ ।
ତ୍ରିନେତ୍ରା ଚ ଭ୍ରୁବୋର୍ମଧ୍ୟେ ଯମଘଣ୍ଟା ଚ ନାସିକେ ॥ ୨୨ ॥
ଶଙ୍ଖିନୀ ଚକ୍ଷୁଷୋର୍ମଧ୍ୟେ ଶ୍ରୋତ୍ରୟୋର୍ଦ୍ୱାରବାସିନୀ ।
କପୋଲୌ କାଳିକା ରକ୍ଷେତ୍‌କର୍ଣ୍ଣମୂଳେ ତୁ ଶାଙ୍କରୀ ॥ ୨୩ ॥
ନାସିକାୟାଂ ସୁଗନ୍ଧା ଚ ଉତ୍ତରୋଷ୍ଠେ ଚ ଚର୍ଚ୍ଚିକା ।
ଅଧରେ ଚାମୃତକଳା ଜିହ୍ୱାୟାଞ୍ଚ ସରସ୍ୱତୀ ॥ ୨୪ ॥

---

ଉତ୍ତରଦିଗରେ କୌମାରୀ ଏବଂ ଈଶାନକୋଣରେ ଶୂଳଧାରିଣୀ ଦେବୀ ରକ୍ଷା କରନ୍ତୁ । ହେ ବ୍ରହ୍ମାଣି ! ତୁମେ ଊର୍ଦ୍ଧ୍ୱଦେଶରେ ମୋତେ ରକ୍ଷା କର ଏବଂ ବୈଷ୍ଣବୀ ଦେବୀ ଅଧୋଭାଗରେ ମୋତେ ରକ୍ଷା କରନ୍ତୁ ॥ ୧୯ ॥

ଏହି ପ୍ରକାର ଶବକୁ ନିଜ ବାହନରୂପେ ରଖିଥିବା ଚାମୁଣ୍ଡାଦେବୀ ଦଶଦିଗରୁ ମୋତେ ରକ୍ଷା କରନ୍ତୁ । ଜୟା ପୁରୋଭାଗରେ ଏବଂ ବିଜୟା ପଶ୍ଚାଦ୍‌ଭାଗରେ ମୋତେ ରକ୍ଷା କରନ୍ତୁ ॥ ୨୦ ॥ ବାମଭାଗରେ ଅଜିତା ଏବଂ ଦକ୍ଷିଣଭାଗରେ ଅପରାଜିତା ରକ୍ଷା କରନ୍ତୁ । ଉଦ୍ୟୋତିନୀ ଶିଖାକୁ ରକ୍ଷା କରନ୍ତୁ । ଉମା ମୋର ମସ୍ତକ ଉପରେ ବିରାଜମାନ ହୋଇ ରକ୍ଷା କରନ୍ତୁ ॥ ୨୧ ॥ ଲଲାଟରେ ମାଳାଧାରୀ ରକ୍ଷା କରନ୍ତୁ ଏବଂ ଯଶସ୍ୱିନୀ ଦେବୀ ମୋର ଦୁଇ ଭ୍ରୂଲତାକୁ ସଂରକ୍ଷଣ କରନ୍ତୁ । ଭ୍ରୂଲତାର ମଧ୍ୟଭାଗରେ ତ୍ରିନେତ୍ରା ଏବଂ ନାସିକାପୁଟକୁ ଯମଘଣ୍ଟାଦେବୀ ରକ୍ଷା କରନ୍ତୁ ॥ ୨୨ ॥ ଦୁଇନେତ୍ରର ମଧ୍ୟଭାଗରେ ଶଙ୍ଖିନୀ ଏବଂ କର୍ଣ୍ଣରେ ଦ୍ୱାରବାସିନୀ ରକ୍ଷା କରନ୍ତୁ । କାଳିକା ଦେବୀ କପୋଳକୁ ତଥା ଭଗବତୀ ଶାଙ୍କରୀ କର୍ଣ୍ଣଦ୍ୱୟର ମୂଳଭାଗକୁ ରକ୍ଷା କରନ୍ତୁ ॥ ୨୩ ॥ ନାସିକାରେ ସୁଗନ୍ଧା ଏବଂ ଉପର ଓଠରେ ଚର୍ଚ୍ଚିକା ଦେବୀ ରହି ରକ୍ଷା କରନ୍ତୁ । ନୀଚ ଓଷ୍ଠରେ ଅମୃତକଳା ଏବଂ ଜିହ୍ୱାରେ ସରସ୍ୱତୀ ଦେବୀ ଅବସ୍ଥାନ କରି ରକ୍ଷା କରନ୍ତୁ ॥ ୨୪ ॥

ଦନ୍ତାନ୍ ରକ୍ଷତୁ କୌମାରୀ କଣ୍ଠଦେଶେ ତୁ ଚଣ୍ଡିକା ।
ଘଣ୍ଟିକାଂ ଚିତ୍ରଘଣ୍ଟା ଚ ମହାମାୟା ଚ ତାଳୁକେ ॥ ୨୫ ॥
କାମାକ୍ଷୀ ଚିବୁକଂ ରକ୍ଷେଦ୍ ବାଚଂ ମେ ସର୍ବମଙ୍ଗଳା ।
ଗ୍ରୀବାୟାଂ ଭଦ୍ରକାଳୀ ଚ ପୃଷ୍ଠବଂଶେ ଧନୁର୍ଧରୀ ॥ ୨୬ ॥
ନୀଳଗ୍ରୀବା ବହିଃକଣ୍ଠେ ନଳିକାଂ ନଳକୂବରୀ ।
ସ୍କନ୍ଧୟୋଃ ଖଡ୍‌ଗିନୀ ରକ୍ଷେଦ୍ ବାହୂ ମେ ବଜ୍ରଧାରିଣୀ ॥ ୨୭ ॥
ହସ୍ତୟୋର୍ଦଣ୍ଡିନୀ ରକ୍ଷେଦମ୍ବିକା ଚାଙ୍ଗୁଳୀଷୁ ଚ ।
ନଖାଞ୍ଛୂଳେଶ୍ୱରୀ ରକ୍ଷେତ୍ କୁକ୍ଷୌ ରକ୍ଷେତ୍‌କୁଳେଶ୍ୱରୀ ॥ ୨୮ ॥
ସ୍ତନୌ ରକ୍ଷେନ୍ମହାଦେବୀ ମନଃ ଶୋକବିନାଶିନୀ ।
ହୃଦୟେ ଲଳିତା ଦେବୀ ଉଦରେ ଶୂଳଧାରିଣୀ ॥ ୨୯ ॥
ନାଭୌ ଚ କାମିନୀ ରକ୍ଷେଦ୍ ଗୁହ୍ୟଂ ଗୁହ୍ୟେଶ୍ୱରୀ ତଥା ।
ପୂତନା କାମିକା ମେଢ୍ରଂ ଗୁଦେ ମହିଷବାହିନୀ ॥ ୩୦ ॥

---

କୌମାରୀ ଦାନ୍ତଗୁଡ଼ିକୁ ଏବଂ ଚଣ୍ଡିକା କଣ୍ଠପ୍ରଦେଶକୁ ରକ୍ଷା କରନ୍ତୁ । ଚିତ୍ରଘଣ୍ଟା ଗଳାର ଘଣ୍ଟିକାକୁ ଏବଂ ମହାମାୟା ତାଳୁରେ ରହି ରକ୍ଷା କରନ୍ତୁ ॥ ୨୫ ॥ କାମାକ୍ଷୀ ଚିବୁକ ଏବଂ ସର୍ବମଙ୍ଗଳା ମୋ ବାଣୀକୁ ରକ୍ଷା କରନ୍ତୁ । ଭଦ୍ରକାଳୀ ଗ୍ରୀବାରେ ଏବଂ ଧନୁର୍ଦ୍ଧରୀ ପୃଷ୍ଠବଂଶ (ମେରୁଦଣ୍ଡ)ରେ ରହି ରକ୍ଷା କରନ୍ତୁ ॥ ୨୬ ॥ କଣ୍ଠର ବହିର୍ଭାଗରେ ନୀଳଗ୍ରୀବା ଏବଂ କଣ୍ଠନଳୀରେ ନଳକୂବରୀ ରକ୍ଷା କରନ୍ତୁ । ଦୁଇ ସ୍କନ୍ଧକୁ ଖଡ୍‌ଗିନୀ ଏବଂ ମୋର ଦୁଇଟି ଭୁଜକୁ ବଜ୍ରଧାରିଣୀ ରକ୍ଷା କରନ୍ତୁ ॥ ୨୭ ॥ ଦୁଇ ହସ୍ତକୁ ଦଣ୍ଡିନୀ ଏବଂ ଅଙ୍ଗୁଳିଗୁଡ଼ିକୁ ଅମ୍ବିକା ରକ୍ଷା କରନ୍ତୁ । ଶୂଳେଶ୍ୱରୀ ନଖଗୁଡ଼ିକୁ ରକ୍ଷା କରନ୍ତୁ । କୁଳେଶ୍ୱରୀ କୁକ୍ଷି(ପେଟ)ରେ ରହି ରକ୍ଷା କରନ୍ତୁ ॥ ୨୮ ॥

ମହାଦେବୀ ଦୁଇ ସ୍ତନକୁ ଏବଂ ଶୋକବିନାଶିନୀ ଦେବୀ ମନକୁ ରକ୍ଷା କରନ୍ତୁ । ଲଳିତା ଦେବୀ ହୃଦୟରେ ଏବଂ ଶୂଳଧାରିଣୀ ଉଦରରେ ରହିଁ ରକ୍ଷା କରନ୍ତୁ ॥ ୨୯ ॥ ନାଭିକୁ କାମିନୀ ଏବଂ ଗୁହ୍ୟଭାଗକୁ ଗୁହ୍ୟେଶ୍ୱରୀ ରକ୍ଷା କରନ୍ତୁ । ପୂତନା ଏବଂ କାମିକା ଲିଙ୍ଗକୁ ଏବଂ ମହିଷବାହିନୀ ଗୁଦା(ମଳଦ୍ୱାର)କୁ ରକ୍ଷା କରନ୍ତୁ ॥ ୩୦ ॥

କଟ୍ୟାଂ ଭଗବତୀ ରକ୍ଷେଜ୍ଜାନୁନୀ ବିନ୍ଧ୍ୟବାସିନୀ ।
ଜଙ୍ଘେ ମହାବଲା ରକ୍ଷେତ୍‌ସର୍ବକାମପ୍ରଦାୟିନୀ ॥ ୩୧ ॥
ଗୁଲ୍‌ଫୟୋର୍ନାରସିଂହୀ ଚ ପାଦପୃଷ୍ଠେ ତୁ ତୈଜସୀ ।
ପାଦାଙ୍ଗୁଲୀଷୁ ଶ୍ରୀ ରକ୍ଷେତ୍‌ପାଦାଧସ୍ତଲବାସିନୀ ॥ ୩୨ ॥
ନଖାନ୍ ଦଂଷ୍ଟ୍ରାକରାଳୀ ଚ କେଶାଂଶ୍ଚୈବୋର୍ଦ୍ଧ୍ୱକେଶିନୀ ।
ରୋମକୂପେଷୁ କୌବେରୀ ତ୍ୱଚଂ ବାଗୀଶ୍ୱରୀ ତଥା ॥ ୩୩ ॥
ରକ୍ତମଜ୍ଜାବସାମାଂସାନ୍ୟସ୍ଥିମେଦାଂସି ପାର୍ବତୀ ।
ଅନ୍ତ୍ରାଣି କାଲରାତ୍ରିଶ୍ଚ ପିତ୍ତଂ ଚ ମୁକୁଟେଶ୍ୱରୀ ॥ ୩୪ ॥
ପଦ୍ମାବତୀ ପଦ୍ମକୋଶେ କଫେ ଚୂଡାମଣିସ୍ତଥା ।
ଜ୍ୱାଲାମୁଖୀ ନଖଜ୍ୱାଲାମଭେଦ୍ୟା ସର୍ବସନ୍ଧିଷୁ ॥ ୩୫ ॥
ଶୁକ୍ରଂ ବ୍ରହ୍ମାଣି ମେ ରକ୍ଷେଚ୍ଛାୟାଂ ଛତ୍ରେଶ୍ୱରୀ ତଥା ।
ଅହଂକାରଂ ମନୋ ବୁଦ୍ଧିଂ ରକ୍ଷେନ୍ମେ ଧର୍ମଧାରିଣୀ ॥ ୩୬ ॥

---

ଭଗବତୀ କଟିଭାଗରେ ଏବଂ ବିନ୍ଧ୍ୟବାସିନୀ ଜାନୁଦ୍ୱୟକୁ ରକ୍ଷା କରନ୍ତୁ । ସମସ୍ତ କାମନାପ୍ରଦାୟିନୀ ମହାବଳା ଦେବୀ ଦୁଇ ଜଙ୍ଘକୁ ରକ୍ଷା କରନ୍ତୁ ॥ ୩୧ ॥ ନାରସିଂହୀ ଦୁଇଟି ଗୋଇଠିକୁ ଏବଂ ତୈଜସୀ ଦେବୀ ଦୁଇପାଦର ପୃଷ୍ଠଭାଗକୁ ରକ୍ଷା କରନ୍ତୁ । ଶ୍ରୀଦେବୀ ପାଦର ଆଙ୍ଗୁଠି ଏବଂ ତଳବାସିନୀ ପାଦର ତଳଭାଗରେ ରହି ରକ୍ଷା କରନ୍ତୁ ॥ ୩୨ ॥ ନିଜ ଦାନ୍ତ ଯୋଗୁଁ ଭୟଙ୍କର ଦେଖାଯାଉଥିବା ଦଂଷ୍ଟ୍ରାକରାଳୀ ଦେବୀ ନଖକୁ ଏବଂ ଉର୍ଦ୍ଧ୍ୱକେଶିନୀ ଦେବୀ କେଶକୁ ରକ୍ଷା କରନ୍ତୁ । ରୋମାବଳୀର ଛିଦ୍ରଗୁଡ଼ିକରେ କୌବେରୀ ଏବଂ ତ୍ୱଗ୍‌କୁ ବାଗୀଶ୍ୱରୀ ଦେବୀ ରକ୍ଷା କରନ୍ତୁ ॥ ୩୩ ॥ ପାର୍ବତୀ ଦେବୀ ରକ୍ତ, ମଜ୍ଜା, ଚର୍ବି, ମାଂସ, ଅସ୍ଥି ଏବଂ ମେଦକୁ ରକ୍ଷା କରନ୍ତୁ । ଅନ୍ତ୍ରକୁ କାଳରାତ୍ରି ଏବଂ ପିତ୍ତକୁ ମୁକୁଟେଶ୍ୱରୀ ରକ୍ଷା କରନ୍ତୁ ॥ ୩୪ ॥ ମୂଳାଧାର ଆଦି କମଳକୋଶରେ ପଦ୍ମାବତୀ ଦେବୀ ଏବଂ କଫରେ ଚୂଡ଼ାମଣି ଦେବୀ ଅବସ୍ଥାନ କରି ରକ୍ଷା କରନ୍ତୁ । ନଖର ତେଜକୁ ଜ୍ୱାଳାମୁଖୀ ରକ୍ଷା କରନ୍ତୁ । ଯିଏ କୌଣିସ ଅସ୍ତ୍ରଦ୍ୱାରା ଭେଦନ ହୋଇପାରନ୍ତି ନାହିଁ; ସେହି ଅଭେଦ୍ୟା ଦେବୀ ଶରୀରର ସମସ୍ତ ସନ୍ଧିରେ ରହି ରକ୍ଷା କରନ୍ତୁ ॥ ୩୫ ॥

ହେ ବ୍ରହ୍ମାଣି ! ଆପଣ ମୋ ବୀର୍ଯ୍ୟକୁ ରକ୍ଷା କରନ୍ତୁ । ଛତ୍ରେଶ୍ୱରୀ ଛାୟାକୁ ତଥା ଧର୍ମଗ୍ରିଣୀ ଦେବୀ ମୋ ଅହଙ୍କାର, ମନ ଏବଂ ବୁଦ୍ଧିକୁ ରକ୍ଷା କରନ୍ତୁ ॥ ୩୬ ॥

ପ୍ରାଣାପାନୌ ତଥା ବ୍ୟାନମୁଦାନଂ ଚ ସମାନକମ୍ ।
ବଜ୍ରହସ୍ତା ଚ ମେ ରକ୍ଷେତ୍ପ୍ରାଣାନ୍ କଲ୍ୟାଣଶୋଭନା ॥ ୩୭ ॥
ରସେ ରୂପେ ଚ ଗନ୍ଧେ ଚ ଶବ୍ଦେ ସ୍ପର୍ଶେ ଚ ଯୋଗିନୀ ।
ସତ୍ତ୍ୱଂ ରଜସ୍ତମଶ୍ଚୈବ ରକ୍ଷେନ୍ନାରାୟଣୀ ସଦା ॥ ୩୮ ॥
ଆୟୂ ରକ୍ଷତୁ ବାରାହୀ ଧର୍ମଂ ରକ୍ଷତୁ ବୈଷ୍ଣବୀ ।
ଯଶଃ କୀର୍ତ୍ତିଂ ଚ ଲକ୍ଷ୍ମୀଂ ଚ ଧନଂ ବିଦ୍ୟାଂ ଚ ଚକ୍ରିଣୀ ॥ ୩୯ ॥
ଗୋତ୍ରମିନ୍ଦ୍ରାଣି ମେ ରକ୍ଷେତ୍ପଶୂନ୍ମେ ରକ୍ଷ ଚଣ୍ଡିକେ ।
ପୁତ୍ରାନ୍ ରକ୍ଷେନ୍ମହାଲକ୍ଷ୍ମୀର୍ଭାର୍ଯ୍ୟାଂ ରକ୍ଷତୁ ଭୈରବୀ ॥ ୪୦ ॥
ପନ୍ଥାନଂ ସୁପଥା ରକ୍ଷେନ୍ମାର୍ଗଂ କ୍ଷେମକରୀ ତଥା ।
ରାଜଦ୍ୱାରେ ମହାଲକ୍ଷ୍ମୀର୍ବିଜୟା ସର୍ବତଃ ସ୍ଥିତା ॥ ୪୧ ॥
ରକ୍ଷାହୀନଂ ତୁ ଯତ୍ସ୍ଥାନଂ ବର୍ଜିତଂ କବଚେନ ତୁ ।
ତତ୍ସର୍ବଂ ରକ୍ଷ ମେ ଦେବି ଜୟନ୍ତୀ ପାପନାଶିନୀ ॥ ୪୨ ॥

---

ହସ୍ତରେ ବଜ୍ର ଧାରଣ କରୁଥିବା ବଜ୍ରହସ୍ତା ଦେବୀ ମୋ ପ୍ରାଣ, ଅପାନ, ବ୍ୟାନ, ଉଦାନ ଏବଂ ସମାନ ବାୟୁକୁ ରକ୍ଷା କରନ୍ତୁ । କଲ୍ୟାଣରେ ଶୋଭା ପାଉଥିବା ଭଗବତୀ କଲ୍ୟାଣଶୋଭନା ମୋ ପ୍ରାଣକୁ ରକ୍ଷା କରନ୍ତୁ ॥ ୩୭ ॥ ରସ, ରୂପ, ଗନ୍ଧ, ଶବ୍ଦ ଏବଂ ସ୍ପର୍ଶ—ଏହି ବିଷୟଗୁଡ଼ିକୁ ଅନୁଭବ କରିବା ସମୟରେ ଯୋଗିନୀ ଦେବୀ ରକ୍ଷା କରନ୍ତୁ ତଥା ସତ୍ତ୍ୱଗୁଣ, ରଜୋଗୁଣ ଏବଂ ତମୋଗୁଣକୁ ନାରାୟଣୀ ଦେବୀ ସର୍ବଦା ରକ୍ଷା କରନ୍ତୁ ॥ ୩୮ ॥ ବାରାହୀ ଆୟୁ ଓ ବୈଷ୍ଣବୀ ଧର୍ମକୁ ରକ୍ଷା କରନ୍ତୁ । ଚକ୍ରିଣୀ (ଚକ୍ରଧାରଣ କରିଥିବା)ଦେବୀ ଯଶ, କୀର୍ତ୍ତି, ଲକ୍ଷ୍ମୀ, ଧନ ତଥା ବିଦ୍ୟାକୁ ରକ୍ଷା କରନ୍ତୁ ॥ ୩୯ ॥ ହେ ଇନ୍ଦ୍ରାଣି ! ଆପଣ ମୋ ଗୋତ୍ରକୁ ରକ୍ଷା କରନ୍ତୁ । ହେ ଚଣ୍ଡିକେ ! ତୁମେ ମୋର ପଶୁମାନଙ୍କୁ ରକ୍ଷା କର । ମହାଲକ୍ଷ୍ମୀ ପୁତ୍ରମାନଙ୍କୁ ରକ୍ଷା କରନ୍ତୁ ଏବଂ ଭୈରବୀ ପତ୍ନୀଙ୍କୁ ରକ୍ଷା କରନ୍ତୁ ॥ ୪୦ ॥ ମୋ ପଥକୁ ସୁପଥା ତଥା ମାର୍ଗକୁ କ୍ଷେମକରୀ ରକ୍ଷା କରନ୍ତୁ । ରାଜାଙ୍କ ଦରବାରରେ ମହାଲକ୍ଷ୍ମୀ ରକ୍ଷା କରନ୍ତୁ ତଥା ସର୍ବତ୍ର ବ୍ୟାପ୍ତ ରହିଥିବା ବିଜୟା ଦେବୀ ସମସ୍ତ ଭୟରୁ ମୋତେ ରକ୍ଷା କରନ୍ତୁ ॥ ୪୧ ॥ ହେ ଦେବି ! ଯେଉଁ ସ୍ଥାନ କବଚରେ କୁହାଯାଇ ନାହିଁ; ଅତଏବ ରକ୍ଷାବିହୀନ, ସେସବୁ ତୁମ୍ଭଦ୍ୱାରା ସୁରକ୍ଷିତ ହେଉ; କାରଣ ତୁମ୍ଭେ ବିଜୟଶାଳିନୀ ଓ ପାପନାଶିନୀ ଅଟ ॥ ୪୨ ॥

ପଦମେକଂ ନ ଗଚ୍ଛେତ୍ତୁ ଯଦୀଚ୍ଛେଚ୍ଛୁଭମାତ୍ମନଃ ।
କବଚେନାବୃତୋ ନିତ୍ୟଂ ଯତ୍ର ଯତ୍ରୈବ ଗଚ୍ଛତି ॥ ୪୩ ॥
ତତ୍ର ତତ୍ରାର୍ଥଲାଭଶ୍ଚ ବିଜୟଃ ସାର୍ବକାମିକଃ ।
ଯଂ ଯଂ ଚିନ୍ତୟତେ କାମଂ ତଂ ତଂ ପ୍ରାପ୍ନୋତି ନିଶ୍ଚିତମ୍ ।
ପରମୈଶ୍ୱର୍ଯ୍ୟମତୁଳଂ ପ୍ରାପ୍ସ୍ୟତେ ଭୂତଳେ ପୁମାନ୍ ॥ ୪୪ ॥
ନିର୍ଭୟୋ ଜାୟତେ ମର୍ତ୍ତ୍ୟଃ ସଂଗ୍ରାମେଷ୍ୱପରାଜିତଃ ।
ତ୍ରୈଲୋକ୍ୟେ ତୁ ଭବେତ୍‌ପୂଜ୍ୟଃ କବଚେନାବୃତଃ ପୁମାନ୍ ॥ ୪୫ ॥
ଇଦଂ ତୁ ଦେବ୍ୟାଃ କବଚଂ ଦେବାନାମପି ଦୁର୍ଲଭମ୍ ।
ଯଃ ପଠେତ୍‌ପ୍ରୟତୋ ନିତ୍ୟଂ ତ୍ରିସନ୍ଧ୍ୟଂ ଶ୍ରଦ୍ଧୟାନ୍ୱିତଃ ॥ ୪୬ ॥
ଦୈବୀ କଳା ଭବେତ୍ତସ୍ୟ ତ୍ରୈଲୋକ୍ୟେଷ୍ୱପରାଜିତଃ ।
ଜୀବେଦ୍ ବର୍ଷଶତଂ ସାଗ୍ରମପମୃତ୍ୟୁବିବର୍ଜିତଃ ॥ ୪୭ ॥

---

ନିଜ ଶରୀରର ମଙ୍ଗଳ ଇଚ୍ଛା କଲେ ମନୁଷ୍ୟ ବିନା କବଚରେ କେଉଁଠାକୁ ଗୋଟିଏ ପାଦ ବି ଯିବା ଅନୁଚିତ—କବଚ ପାଠ କରି ହିଁ ଯାତ୍ରା କରିବା ଉଚିତ । କବଚଦ୍ୱାରା ସର୍ବତ୍ର ସୁରକ୍ଷିତ ମନୁଷ୍ୟ ଯେଉଁ ସ୍ଥାନକୁ ଯାଏ; ସେହି ସେହି ସ୍ଥାନରେ ସେ ଧନ ଲାଭ କରେ ତଥା ସମସ୍ତ କାମନାର ସିଦ୍ଧି କରି ବିଜୟ ପ୍ରାପ୍ତ ହୁଏ । ସେ ଯେଉଁ ଯେଉଁ ଅଭୀଷ୍ଟ ବସ୍ତୁ ଚିନ୍ତନ କରେ; ସେ ସବୁକୁ ନିଶ୍ଚୟ ପ୍ରାପ୍ତ କରେ । ସେହି ପୁରୁଷ ଏହି ପୃଥ୍ୱୀ ଉପରେ ତୁଳନାରହିତ ମହାନ୍ ଐଶ୍ୱର୍ଯ୍ୟକୁ ଭୋଗ କରେ ॥ ୪୩-୪୪ ॥ କବଚଦ୍ୱାରା ସୁରକ୍ଷିତ ମନୁଷ୍ୟ ନିର୍ଭୟ ହୋଇଯାଏ । ଯୁଦ୍ଧରେ ତାହାର ପରାଜୟ ହୁଏ ନାହିଁ ତଥା ସେ ତିନିଲୋକରେ ପୂଜନୀୟ ହୁଏ ॥ ୪୫ ॥ ଦେବୀଙ୍କର ଏହି କବଚ ଦେବତାମାନଙ୍କ ପାଇଁ ମଧ୍ୟ ଦୁର୍ଲ୍ଲଭ । ଯିଏ ପ୍ରତିଦିନ ନିୟମପୂର୍ବକ ତିନୋଟି ସନ୍ଧ୍ୟାସମୟରେ ଶ୍ରଦ୍ଧାର ସହିତ ଏହାକୁ ପାଠ କରେ; ତାହାକୁ ଦୈବୀ କଳା ପ୍ରାପ୍ତ ହୁଏ । ସେ ତିନିଲୋକରେ କେଉଁଠାରେ ମଧ୍ୟ ପରାଜିତ ହୁଏ ନାହିଁ । କେବଳ ସେତିକି ନୁହେଁ; ସେ ଅପମୃତ୍ୟୁ[୧]ରହିତ ହୋଇ ଶହେରୁ ଅଧିକ ବର୍ଷ ପର୍ଯ୍ୟନ୍ତ ଜୀବିତ ରହେ ॥ ୪୬-୪୭ ॥

---

୧. ଅକାଳ ମୃତ୍ୟୁ ଅଥବା ଅଗ୍ନି, ଜଳ, ବିଦ୍ୟୁତ୍ ଏବଂ ସର୍ପାଦିଜନିତ ମୃତ୍ୟୁକୁ ଅପମୃତ୍ୟୁ କହନ୍ତି ।

ନଶ୍ୟନ୍ତି ବ୍ୟାଧୟଃ ସର୍ବେ ଲୂତାବିସ୍ଫୋଟକାଦୟଃ ।
ସ୍ଥାବରଂ ଜଙ୍ଗମଂ ଚୈବ କୃତ୍ରିମଂ ଚାପି ଯଦ୍‌ବିଷମ୍ ॥ ୪୮ ॥
ଅଭିଚାରାଣି ସର୍ବାଣି ମନ୍ତ୍ରଯନ୍ତ୍ରାଣି ଭୂତଳେ ।
ଭୂଚରାଃ ଖେଚରାଶ୍ଚୈବ ଜଳଜାଶ୍ଚୋପଦେଶିକାଃ ॥ ୪୯ ॥
ସହଜା କୁଳଜା ମାଳା ଡାକିନୀ ଶାକିନୀ ତଥା ।
ଅନ୍ତରିକ୍ଷଚରା ଘୋରା ଡାକିନ୍ୟଶ୍ଚ ମହାବଳାଃ ॥ ୫୦ ॥
ଗ୍ରହଭୂତପିଶାଚାଶ୍ଚ ଯକ୍ଷଗନ୍ଧର୍ବରାକ୍ଷସାଃ ।
ବ୍ରହ୍ମରାକ୍ଷସବେତାଳାଃ କୂଷ୍ମାଣ୍ଡା ଭୈରବାଦୟଃ ॥ ୫୧ ॥
ନଶ୍ୟନ୍ତି ଦର୍ଶନାତ୍ତସ୍ୟ କବଚେ ହୃଦି ସଂସ୍ଥିତେ ।
ମାନୋନ୍ନତିର୍ଭବେଦ୍ ରାଜ୍ଞସ୍ତେଜୋବୃଦ୍ଧିକରଂ ପରମ୍ ॥ ୫୨ ॥

ମକରୀ, ବସନ୍ତରୋଗ, କୁଷ୍ଠ ଆଦି ତାହାର ସମସ୍ତ ବ୍ୟାଧି ନଷ୍ଟ ହୋଇଯାଏ । କରବୀର, ଭାଙ୍ଗ, ଅଫିମ ଆଦି ସ୍ଥାବର ବିଷ, ସାପ, ବିଛା, ଆଦିଙ୍କ ଜଙ୍ଗମ ବିଷ ତଥା ଅହିଫେନ ଓ ତେଲର ମିଶ୍ରଣରୁ ତିଆରି କୃତ୍ରିମ ବିଷ—ଏହି ସବୁ ପ୍ରକାରର ବିଷ ଦୂର ହୋଇଯାଏ । ସେ ସବୁର କୌଣସି ପ୍ରଭାବ ପଡ଼େ ନାହିଁ ॥ ୪୮ ॥ ଏହି ପୃଥ୍ୱୀ ଉପରେ ମାରଣ-ମୋହନ ଆଦି ଯେତେ ସବୁ ଆଭିଚାରିକ ପ୍ରୟୋଗ ହୁଏ ଏବଂ ଏହିପ୍ରକାର ଯେତେ ମନ୍ତ୍ର ଓ ଯନ୍ତ୍ର ଅଛି, ଏହି କବଚ ଧାରଣକାରୀ ପୁରୁଷକୁ ଦେଖିବା ମାତ୍ରକେ ସେସବୁ ନଷ୍ଟ ହୋଇଯାଏ । କେବଳ ଏତିକି ନୁହେଁ; ପୃଥ୍ୱୀ ଉପରେ ବିଚରଣ କରୁଥିବା ଗ୍ରାମଦେବତା, ଆକାଶଚାରୀ ଦେବବିଶେଷ, ଜଳ ସମ୍ବନ୍ଧରୁ ପ୍ରକଟିତ ହେଉଥିବା ଗଣ, ଉପଦେଶମାତ୍ରରେ ସିଦ୍ଧ ହେଉଥିବା ନିମ୍ନକୋଟିର ଦେବତା, ନିଜ ଜନ୍ମ ସହ ପ୍ରକଟ ହେଉଥିବା ଦେବତା, କୁଳଦେବତା, ମାଳା (କଣ୍ଠମାଳା ଆଦି), ଡାକିନୀ, ଶାକିନୀ, ଅନ୍ତରିକ୍ଷରେ ବିଚରଣ କରୁଥିବା ଅତ୍ୟନ୍ତ ବଳବତୀ ଭୟାନକ ଡାକିନୀ, ଗ୍ରହ, ଭୂତ, ପିଶାଚ, ଯକ୍ଷ, ଗନ୍ଧର୍ବ, ରାକ୍ଷସ, ବ୍ରହ୍ମରାକ୍ଷସ, ବେତାଳ, କୂଷ୍ମାଣ୍ଡ ଏବଂ ଭୈରବ ଆଦି ଅନିଷ୍ଟକାରୀମାନେ ମଧ୍ୟ ହୃଦୟରେ କବଚ ଧାରଣକାରୀ ମନୁଷ୍ୟକୁ ଦେଖିବାମାତ୍ରକେ ପଳାଇ ଯାଆନ୍ତି । କବଚଧାରୀ ପୁରୁଷକୁ ରାଜା

ଯଶସା ବର୍ଧତେ ସୋଽପି କୀର୍ତ୍ତିମଣ୍ଡିତଭୂତଳେ ।
ଜପେତ୍‌ସପ୍ତଶତୀଂ ଚଣ୍ଡୀଂ କୃତ୍ୱା ତୁ କବଚଂ ପୁରା ॥ ୫୩ ॥
ଯାବଦ୍‌ଭୂମଣ୍ଡଳଂ ଧତ୍ତେ ସଶୈଳବନକାନନମ୍ ।
ତାବତ୍ତିଷ୍ଠତି ମେଦିନ୍ୟାଂ ସନ୍ତତିଃ ପୁତ୍ରପୌତ୍ରିକୀ ॥ ୫୪ ॥
ଦେହାନ୍ତେ ପରମଂ ସ୍ଥାନଂ ଯତ୍‌ସୁରୈରପି ଦୁର୍ଲଭମ୍ ।
ପ୍ରାପ୍ନୋତି ପୁରୁଷୋ ନିତ୍ୟଂ ମହାମାୟାପ୍ରସାଦତଃ ॥ ୫୫ ॥
ଲଭତେ ପରମଂ ରୂପଂ ଶିବେନ ସହ ମୋଦତେ ॥ ଓଁ ॥ ୫୬ ॥

॥ ଇତି ଦେବ୍ୟାଃ କବଚଂ ସମ୍ପୂର୍ଣ୍ଣମ୍ ॥



ଅଧିକ ସମ୍ମାନିତ କରନ୍ତି । ଏହି କବଚ ମନୁଷ୍ୟର ତେଜ-ବୃଦ୍ଧିକାରକ ଓ ଉତ୍ତମ ଅଟେ ॥ ୪୯—୫୨ ॥ କବଚକୁ ପାଠ କରୁଥିବା ପୁରୁଷ ନିଜ କୀର୍ତ୍ତିଦ୍ୱାରା ବିଭୂଷିତ ଭୂତଳ ଉପରେ ନିଜ ସୁଯଶ ସହ ବୃଦ୍ଧିକୁ ପ୍ରାପ୍ତ ହୁଏ । ଯିଏ ପ୍ରଥମେ କବଚକୁ ପାଠ କରି ତାହା ପରେ ସପ୍ତଶତୀ ଚଣ୍ଡିକୁ ପାଠ କରେ; ଯେପର୍ଯ୍ୟନ୍ତ ବନ, ପର୍ବତ ଏବଂ କାନନ ସହିତ ଏହି ପୃଥିବୀର ସ୍ଥିତି ଅଛି; ସେପର୍ଯ୍ୟନ୍ତ ଏଠାରେ ତା'ର ପୁତ୍ର-ପୌତ୍ର ଆଦି ସନ୍ତାନପରମ୍ପରା ତିଷ୍ଠି ରହେ ॥ ୫୩-୫୪ ॥ ପୁନଶ୍ଚ ଦେହାନ୍ତ ହେବାପରେ ସେ ପୁରୁଷ ଭଗବତୀ ମହାମାୟାଙ୍କ ପ୍ରସାଦରୁ ସେହି ନିତ୍ୟ ପରମ ପଦକୁ ପ୍ରାପ୍ତ ହୁଏ । ଏହା ଦେବତାମାନଙ୍କ ପାଇଁ ମଧ୍ୟ ଦୁର୍ଲଭ ॥ ୫୫ ॥ ସେ ସୁନ୍ଦର ଦିବ୍ୟ ରୂପ ଧାରଣ କରନ୍ତି ଏବଂ କଲ୍ୟାଣମୟ ଶିବଙ୍କ ସହିତ ଆନନ୍ଦ ଭୋଗ କରନ୍ତି ॥ ୫୬ ॥



# ଅଥାର୍ଗଲାସ୍ତୋତ୍ରମ୍

ଓଁ ଅସ୍ୟ ଶ୍ରୀଅର୍ଗଲାସ୍ତୋତ୍ରମନ୍ତ୍ରସ୍ୟ ବିଷ୍ଣୁର୍ଋଷିଃ, ଅନୁଷ୍ଟୁପ୍ ଛନ୍ଦଃ, ଶ୍ରୀମହାଲକ୍ଷ୍ମୀ-ର୍ଦେବତା, ଶ୍ରୀଜଗଦମ୍ବାପ୍ରୀତୟେ ସପ୍ତଶତୀପାଠାଙ୍ଗତ୍ୱେନ ଜପେ ବିନିଯୋଗଃ ॥

**ଓଁ ନମଶ୍ଚଣ୍ଡିକାୟୈ ॥**

*ମାର୍କଣ୍ଡେୟ ଉବାଚ*

**ଓଁ ଜୟନ୍ତୀ ମଙ୍ଗଳା କାଳୀ ଭଦ୍ରକାଳୀ କପାଳିନୀ ।**
**ଦୁର୍ଗା କ୍ଷମା ଶିବା ଧାତ୍ରୀ ସ୍ୱାହା ସ୍ୱଧା ନମୋଽସ୍ତୁ ତେ ॥ ୧ ॥**

ଓଁ ଚଣ୍ଡିକାଦେବୀଙ୍କୁ ନମସ୍କାର

**ଶ୍ରୀମାର୍କଣ୍ଡେୟ କହିଲେ**—ଜୟନ୍ତୀ[୧], ମଙ୍ଗଳା[୨], କାଳୀ[୩], ଭଦ୍ରକାଳୀ[୪], କପାଳିନୀ[୫], ଦୁର୍ଗା[୬], କ୍ଷମା[୭], ଶିବା[୮], ଧାତ୍ରୀ[୯], ସ୍ୱାହା[୧୦] ଏବଂ ସ୍ୱଧା[୧୧]—

୧. ଜୟତି ସର୍ବୋତ୍କର୍ଷେଣ ବର୍ତ୍ତତେ ଇତି 'ଜୟନ୍ତୀ'—ସବୁଠାରୁ ଉତ୍କୃଷ୍ଟ ଏବଂ ବିଜୟଶାଳିନୀ । ୨. ମଙ୍ଗଂ ଜନନମରଣାଦିରୂପଂ ସର୍ପଣଂ ଭକ୍ତାନାଂ ଲାତି ଗୃହ୍ଣାତି ନାଶୟତି ଯା ସା ମଙ୍ଗଳା ମୋକ୍ଷପ୍ରଦା—ଯିଏ ଭକ୍ତମାନଙ୍କ ଜନ୍ମମରଣାଦି ସଂସାରବନ୍ଧନକୁ ଦୂର କରନ୍ତି; ସେହି ମୋକ୍ଷଦାୟିନୀ ମଙ୍ଗଳମୟୀ ଦେବୀଙ୍କ ନାମ 'ମଙ୍ଗଳା' ଅଟେ । ୩. କଳୟତି ଭକ୍ଷୟତି ପ୍ରଳୟକାଳେ ସର୍ବମ୍ ଇତି କାଳୀ—ଯିଏ ପ୍ରଳୟକାଳରେ ସମସ୍ତ ସୃଷ୍ଟିକୁ ଗ୍ରାସ କରିଦିଅନ୍ତି; ସେ 'କାଳୀ' ଅଟନ୍ତି । ୪. ଭଦ୍ରଂ ମଙ୍ଗଳଂ ସୁଖଂ ବା କଳୟତି ସ୍ୱୀକରୋତି ଭକ୍ତେଭ୍ୟୋ ଦାତୁମ୍ ଇତି ଭଦ୍ରକାଳୀ ସୁଖପ୍ରଦା—ଯିଏ ନିଜର ଭକ୍ତମାନଙ୍କୁ ପ୍ରଦାନ କରିବା ନିମନ୍ତେ ଭଦ୍ର, ସୁଖ ବା ମଙ୍ଗଳ ସ୍ୱୀକାର କରନ୍ତି; ସେ 'ଭଦ୍ରକାଳୀ' ଅଟନ୍ତି । ୫. ହସ୍ତରେ କପାଳ ତଥା ବେକରେ ମୁଣ୍ଡମାଳା ଧାରଣ କରନ୍ତି । ୬. ଦୁଃଖେନ ଅଷ୍ଟାଙ୍ଗଯୋଗକର୍ମୋପାସନାରୂପେଣ କ୍ଲେଶେନ ଗମ୍ୟତେ ପ୍ରାପ୍ୟତେ ଯା ସା ଦୁର୍ଗା—ଯିଏ ଅଷ୍ଟାଙ୍ଗଯୋଗ, କର୍ମ ଏବଂ ଉପାସନାରୂପ ଦୁଃସାଧ୍ୟ ସାଧନାଦ୍ୱାରା ପ୍ରାପ୍ତ ହୁଅନ୍ତି; ତାହାଙ୍କୁ ଜଗଦମ୍ବିକା 'ଦୁର୍ଗା' କୁହାଯାଏ । ୭. କ୍ଷମତେ ସହତେ ଭକ୍ତାନାମ୍ ଅନ୍ୟେଷାଂ ବା ସର୍ବାନପରାଧାନ୍ ଜନନୀତ୍ୱେନାତିଶୟକରୁଣାମୟ-ସ୍ୱଭାବାଦିତି କ୍ଷମା—ସମ୍ପୂର୍ଣ୍ଣ ଜଗତ୍‌ର ଜନନୀ ଓ ଅତ୍ୟନ୍ତ କରୁଣାମୟ ସ୍ୱଭାବ ହୋଇଥିବାରୁ ଯିଏ ଭକ୍ତମାନଙ୍କର ଅଥବା ଅନ୍ୟମାନଙ୍କର ସମସ୍ତ ଅପରାଧ କ୍ଷମା କରନ୍ତି; ତାହାଙ୍କ ନାମ 'କ୍ଷମା' ଅଟେ । ୮. ସମସ୍ତଙ୍କୁ ଶିବ ଅର୍ଥାତ୍ କଲ୍ୟାଣ କରୁଥିବା ଜଗଦମ୍ବାଙ୍କୁ 'ଶିବା' କହନ୍ତି । ୯. ସମସ୍ତ ପ୍ରପଞ୍ଚକୁ ଧାରଣ କରିଥିବା ଯୋଗୁଁ ଭଗବତୀଙ୍କ ନାମ 'ଧାତ୍ରୀ' ଅଟେ । ୧୦. ସ୍ୱାହା ରୂପରେ ଯଜ୍ଞଭାଗ ଗ୍ରହଣ କରି ଦେବତାମାନଙ୍କୁ ପୋଷଣ କରନ୍ତି । ୧୧. ସ୍ୱଧାରୂପରେ ଶ୍ରାଦ୍ଧ ଏବଂ ତର୍ପଣକୁ ସ୍ୱୀକାର କରି ପିତୃଗଣକୁ ପୋଷଣ କରନ୍ତି ।

ଜୟ ତ୍ୱଂ ଦେବି ଚାମୁଣ୍ଡେ ଜୟ ଭୂତାର୍ତ୍ତିହାରିଣି ।
ଜୟ ସର୍ବଗତେ ଦେବି କାଳରାତ୍ରି ନମୋଽସ୍ତୁ ତେ ॥ ୨ ॥
ମଧୁକୈଟଭବିଦ୍ରାବିବିଧାତୃବରଦେ ନମଃ ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥ ୩ ॥
ମହିଷାସୁରନିର୍ଣ୍ଣାଶି ଭକ୍ତାନାଂ ସୁଖଦେ ନମଃ ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥ ୪ ॥
ରକ୍ତବୀଜବଧେ ଦେବି ଚଣ୍ଡମୁଣ୍ଡବିନାଶିନି ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥ ୫ ॥
ଶୁମ୍ଭସ୍ୟୈବ ନିଶୁମ୍ଭସ୍ୟ ଧୂମ୍ରାକ୍ଷସ୍ୟ ଚ ମର୍ଦ୍ଦିନି ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥ ୬ ॥

---

ଏହି ସବୁ ନାମରେ ପ୍ରସିଦ୍ଧ ହେ ଜଗଦମ୍ବିକେ ! ତୁମ୍ଭକୁ ମୋର ନମସ୍କାର । ହେ ଦେବୀ ଚାମୁଣ୍ଡେ ! ତୁମ୍ଭର ଜୟ ହେଉ । ସବୁପ୍ରାଣୀଙ୍କ ପୀଡ଼ା ହରଣ କରୁଥିବା ହେ ଦେବି ! ତୁମର ଜୟ ହେଉ । ସମସ୍ତଙ୍କଠାରେ ବ୍ୟାପ୍ତ ରହୁଥିବା ହେ ଦେବି ! ତୁମ୍ଭର ଜୟ ହେଉ । ହେ କାଳରାତ୍ରି ! ତୁମ୍ଭଙ୍କୁ ନମସ୍କାର ॥ ୧-୨ ॥ ମଧୁ ଏବଂ କୈଟଭଙ୍କୁ ହତ୍ୟା କରିଥିବା ତଥା ବ୍ରହ୍ମାଙ୍କୁ ବର ଦେଇଥିବା ହେ ଦେବି ! ତୁମ୍ଭଙ୍କୁ ନମସ୍କାର । ତୁମେ ମୋତେ ରୂପ (ଆତ୍ମସ୍ୱରୂପର ଜ୍ଞାନ) ପ୍ରଦାନ କର । ଜୟ (ମୋହଉପରେ ବିଜୟ) ପ୍ରଦାନ କର । ଯଶ (ମୋହ-ବିଜୟ ତଥା ଜ୍ଞାନ-ପ୍ରାପ୍ତିରୂପକ ଯଶ) ଦିଅ ଏବଂ କାମ-କ୍ରୋଧ ଆଦି ଶତ୍ରୁମାନଙ୍କୁ ବିନାଶ କର ॥ ୩ ॥ ମହିଷାସୁରକୁ ବିନାଶ କରିଥିବା ଏବଂ ଭକ୍ତମାନଙ୍କୁ ସୁଖ ପ୍ରଦାନ କରୁଥିବା ହେ ଦେବି ! ତୁମ୍ଭଙ୍କୁ ନମସ୍କାର । ତୁମେ ରୂପ, ଜୟ ତଥା ଯଶ ପ୍ରଦାନ କର ଏବଂ କାମ-କ୍ରୋଧାଦି ଶତ୍ରୁମାନଙ୍କୁ ବିନାଶ କର ॥ ୪ ॥ ରକ୍ତବୀଜକୁ ବଧ ଓ ଚଣ୍ଡ-ମୁଣ୍ଡଙ୍କୁ ବିନାଶ କରିଥିବା ହେ ଦେବି ! ତୁମେ ରୂପ, ଜୟ ତଥା ଯଶ ପ୍ରଦାନ କର ଏବଂ କାମ-କ୍ରୋଧାଦି ଶତ୍ରୁମାନଙ୍କୁ ବିନାଶ କର ॥ ୫ ॥ ଶୁମ୍ଭ ଓ ନିଶୁମ୍ଭ ତଥା ଧୂମ୍ରଲୋଚନକୁ ମର୍ଦ୍ଦନ କରିଥିବା ହେ ଦେବି ! ତୁମେ

ବନ୍ଦିତାଙ୍ଘ୍ରିଯୁଗେ ଦେବି ସର୍ବସୌଭାଗ୍ୟଦାୟିନି ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥ ୭ ॥
ଅଚିନ୍ତ୍ୟରୂପଚରିତେ ସର୍ବଶତ୍ରୁବିନାଶିନି ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥ ୮ ॥
ନତେଭ୍ୟଃ ସର୍ବଦା ଭକ୍ତ୍ୟା ଚଣ୍ଡିକେ ଦୁରିତାପହେ ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥ ୯ ॥
ସ୍ତୁବଦ୍‌ଭ୍ୟୋ ଭକ୍ତିପୂର୍ବଂ ତ୍ୱାଂ ଚଣ୍ଡିକେ ବ୍ୟାଧିନାଶିନି ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥ ୧୦ ॥
ଚଣ୍ଡିକେ ସତତଂ ଯେ ତ୍ୱାମର୍ଚ୍ଚୟନ୍ତୀହ ଭକ୍ତିତଃ ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥ ୧୧ ॥

---

ରୂପ, ଜୟ ତଥା ଯଶ ପ୍ରଦାନ କର ଏବଂ କାମ-କ୍ରୋଧାଦି ଶତ୍ରୁମାନଙ୍କୁ ବିନାଶ କର ॥ ୬ ॥ ସମସ୍ତଙ୍କ ଦ୍ୱାରା ବନ୍ଦିତ ଯୁଗଳ ଚରଣଯୁକ୍ତା ତଥା ସମସ୍ତ ସୌଭାଗ୍ୟ ପ୍ରଦାନ କରୁଥିବା ହେ ଦେବି ! ତୁମେ ରୂପ, ଜୟ ତଥା ଯଶ ପ୍ରଦାନ କର ଏବଂ କାମ-କ୍ରୋଧାଦି ଶତ୍ରୁମାନଙ୍କୁ ବିନାଶ କର ॥ ୭ ॥ ହେ ଦେବି ! ତୁମର ରୂପ ଓ ଚରିତ୍ର ଅଚିନ୍ତ୍ୟ ଅଟେ । ତୁମେ ସମସ୍ତ ଶତ୍ରୁମାନଙ୍କୁ ବିନାଶ କରିପାର । ତୁମେ ରୂପ, ଜୟ ତଥା ଯଶ ପ୍ରଦାନ କର ଏବଂ କାମ-କ୍ରୋଧାଦି ଶତ୍ରୁମାନଙ୍କୁ ବିନାଶ କର ॥ ୮ ॥ ପାପଗୁଡ଼ିକୁ ଦୂର କରୁଥିବା ହେ ଚଣ୍ଡିକେ ! ଯେଉଁ ବ୍ୟକ୍ତି ଭକ୍ତିପୂର୍ବକ ତୁମ ଚରଣରେ ସର୍ବଦା ମସ୍ତକ ଅବନତ କରନ୍ତି; ସେମାନଙ୍କୁ ତୁମେ ରୂପ, ଜୟ ତଥା ଯଶ ପ୍ରଦାନ କର ଏବଂ କାମ-କ୍ରୋଧାଦି ଶତ୍ରୁମାନଙ୍କୁ ବିନାଶ କର ॥ ୯ ॥ ରୋଗଗୁଡ଼ିକୁ ବିନାଶ କରୁଥିବା ହେ ଚଣ୍ଡିକେ ! ଯେଉଁ ବ୍ୟକ୍ତି ଭକ୍ତିପୂର୍ବକ ତୁମ୍ଭଙ୍କୁ ସ୍ତୁତି କରନ୍ତି; ସେମାନଙ୍କୁ ରୂପ, ଜୟ ତଥା ଯଶ ପ୍ରଦାନ କର ଏବଂ କାମ-କ୍ରୋଧାଦି ଶତ୍ରୁମାନଙ୍କୁ ବିନାଶ କର ॥ ୧୦ ॥ ହେ ଚଣ୍ଡିକେ ! ଏହି ସଂସାରରେ ଯେଉଁମାନେ ଭକ୍ତିପୂର୍ବକ ତୁମକୁ ପୂଜା କରନ୍ତି; ସେମାନଙ୍କୁ ରୂପ, ଜୟ ତଥା ଯଶ ପ୍ରଦାନ କର ଏବଂ କାମ-କ୍ରୋଧାଦି ଶତ୍ରୁମାନଙ୍କୁ

ଦେହି ସୌଭାଗ୍ୟମାରୋଗ୍ୟଂ ଦେହି ମେ ପରମଂ ସୁଖମ୍ ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥ ୧୨ ॥
ବିଧେହି ଦ୍ୱିଷତାଂ ନାଶଂ ବିଧେହି ବଲମୁଚ୍ଚକୈଃ ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥ ୧୩ ॥
ବିଧେହି ଦେବି କଲ୍ୟାଣଂ ବିଧେହି ପରମାଂ ଶ୍ରିୟମ୍ ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥ ୧୪ ॥
ସୁରାସୁରଶିରୋରତ୍ନନିଘୃଷ୍ଟଚରଣେଽମ୍ବିକେ ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥ ୧୫ ॥
ବିଦ୍ୟାବନ୍ତଂ ଯଶସ୍ୱନ୍ତଂ ଲକ୍ଷ୍ମୀବନ୍ତଂ ଜନଂ କୁରୁ ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥ ୧୬ ॥
ପ୍ରଚଣ୍ଡଦୈତ୍ୟଦର୍ପଘ୍ନେ ଚଣ୍ଡିକେ ପ୍ରଣତାୟ ମେ ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥ ୧୭ ॥

ବିନାଶ କର ॥ ୧୧ ॥ ମୋତେ ସୌଭାଗ୍ୟ ଓ ଆରୋଗ୍ୟ ପ୍ରଦାନ କର । ପରମ ସୁଖ ପ୍ରଦାନ କର । ରୂପ, ଜୟ ତଥା ଯଶ ପ୍ରଦାନ କର ଏବଂ କାମ-କ୍ରୋଧାଦି ଶତ୍ରୁମାନଙ୍କୁ ବିନାଶ କର ॥ ୧୨ ॥

ଯେଉଁମାନେ ମୋ ଉପରେ ଦ୍ୱେଷ କରନ୍ତି, ସେମାନଙ୍କୁ ନାଶ କର ଓ ମୋର ବଳ ବୃଦ୍ଧି କର । ରୂପ, ଜୟ ତଥା ଯଶ ପ୍ରଦାନ କର ଏବଂ କାମ-କ୍ରୋଧାଦି ଶତ୍ରୁମାନଙ୍କୁ ବିନାଶ କର ॥ ୧୩ ॥ ହେ ଦେବି ! ମୋର କଲ୍ୟାଣ କର । ମୋତେ ଉତ୍ତମ ସମ୍ପତ୍ତି ପ୍ରଦାନ କର । ରୂପ, ଜୟ ତଥା ଯଶ ପ୍ରଦାନ କର ଏବଂ କାମ-କ୍ରୋଧାଦି ଶତ୍ରୁମାନଙ୍କୁ ବିନାଶ କର ॥ ୧୪ ॥ ହେ ଅମ୍ବିକେ ! ଦେବତା ଓ ଅସୁରମାନେ—ଉଭୟେ ନିଜ ମସ୍ତକରେ ଥିବା ମୁକୁଟସ୍ଥ ମଣିକୁ ତୁମ ଚରଣରେ ଲୋଟାଇ ଥାଆନ୍ତି । ତୁମେ ରୂପ, ଜୟ ତଥା ଯଶ ପ୍ରଦାନ କର ଏବଂ କାମ-କ୍ରୋଧାଦି ଶତ୍ରୁମାନଙ୍କୁ ବିନାଶ କର ॥ ୧୫ ॥ ତୁମେ ନିଜ ଭକ୍ତମାନଙ୍କୁ ବିଦ୍ୱାନ୍, ଯଶସ୍ୱୀ ଏବଂ ଲକ୍ଷ୍ମୀବାନ୍ କରି ଦିଅ ଏବଂ ରୂପ, ଜୟ ତଥା ଯଶ ପ୍ରଦାନ କର ଏବଂ କାମ-କ୍ରୋଧାଦି ଶତ୍ରୁମାନଙ୍କୁ ବିନାଶ କର ॥ ୧୬ ॥ ପ୍ରଚଣ୍ଡ ଦୈତ୍ୟମାନଙ୍କ ଦର୍ପଦଳନ କରୁଥିବା

ଚତୁର୍ଭୁଜେ ଚତୁର୍ବକ୍ତ୍ରସଂସ୍ତୁତେ ପରମେଶ୍ୱରି ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥ ୧୮ ॥
କୃଷ୍ଣେନ ସଂସ୍ତୁତେ ଦେବି ଶଶ୍ୱଦ୍ଭକ୍ତ୍ୟା ସଦାମ୍ବିକେ ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥ ୧୯ ॥
ହିମାଚଳସୁତାନାଥସଂସ୍ତୁତେ ପରମେଶ୍ୱରି ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥ ୨୦ ॥
ଇନ୍ଦ୍ରାଣୀପତିସଦ୍ଭାବପୂଜିତେ ପରମେଶ୍ୱରି ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥ ୨୧ ॥
ଦେବି ପ୍ରଚଣ୍ଡଦୋର୍ଦଣ୍ଡଦୈତ୍ୟଦର୍ପବିନାଶିନି ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥ ୨୨ ॥

---

ହେ ଚଣ୍ଡିକେ ! ମୋ ପରି ଶରଣାଗତକୁ ରୂପ, ଜୟ ତଥା ଯଶ ପ୍ରଦାନ କର ଏବଂ ମୋ କାମ-କ୍ରୋଧାଦି ଶତ୍ରୁମାନଙ୍କୁ ବିନାଶ କର ॥ ୧୭ ॥ ଚତୁର୍ମୁଖ ବ୍ରହ୍ମାଙ୍କ ଦ୍ୱାରା ପ୍ରଶଂସିତ ଚତୁର୍ଭୁଜଧାରିଣୀ ହେ ପରମେଶ୍ୱରି ! ତୁମେ ରୂପ, ଜୟ ତଥା ଯଶ ପ୍ରଦାନ କର ଏବଂ କାମ-କ୍ରୋଧାଦି ଶତ୍ରୁମାନଙ୍କୁ ବିନାଶ କର ॥ ୧୮ ॥

ହେ ଦେବୀ ଅମ୍ବିକେ ! ଭଗବାନ୍ ବିଷ୍ଣୁ ନିତ୍ୟ ନିରନ୍ତର ଭକ୍ତିପୂର୍ବକ ତୁମକୁ ସ୍ତୁତି କରନ୍ତି । ତୁମେ ରୂପ, ଜୟ ତଥା ଯଶ ପ୍ରଦାନ କର ଏବଂ କାମ-କ୍ରୋଧାଦି ଶତ୍ରୁମାନଙ୍କୁ ବିନାଶ କର ॥ ୧୯ ॥ ହିମାଳୟ କନ୍ୟା ପାର୍ବତୀଙ୍କ ପତି ମହାଦେବଙ୍କ ଦ୍ୱାରା ପ୍ରଶଂସିତ ହେଉଥିବା ହେ ପରମେଶ୍ୱରି ! ତୁମେ ରୂପ, ଜୟ ତଥା ଯଶ ପ୍ରଦାନ କର ଏବଂ କାମ-କ୍ରୋଧାଦି ଶତ୍ରୁମାନଙ୍କୁ ବିନାଶ କର ॥ ୨୦ ॥ ଶଚୀପତି ଇନ୍ଦ୍ରଙ୍କଦ୍ୱାରା ସଦ୍‌ଭାବରେ ପୂଜିତ ହେଉଥିବା ହେ ପରମେଶ୍ୱରି ! ତୁମେ ରୂପ, ଜୟ ତଥା ଯଶ ପ୍ରଦାନ କର ଏବଂ କାମ-କ୍ରୋଧାଦି ଶତ୍ରୁମାନଙ୍କୁ ବିନାଶ କର ॥ ୨୧ ॥ ପ୍ରଚଣ୍ଡ ଭୁଜଦଣ୍ଡ ଧାରଣ କରିଥିବା ଦୈତ୍ୟମାନଙ୍କ ଗର୍ବବିନାଶିନୀ ହେ ଦେବି ! ତୁମେ ରୂପ, ଜୟ ତଥା ଯଶ ପ୍ରଦାନ କର ଏବଂ କାମ-କ୍ରୋଧାଦି ଶତ୍ରୁମାନଙ୍କୁ ବିନାଶ କର ॥ ୨୨ ॥

ଦେବି ଭକ୍ତଜନୋଦ୍ଦାମଦତ୍ତାନନ୍ଦୋଦୟେଽମ୍ବିକେ ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥ ୨୩ ॥
ପତ୍ନୀଂ ମନୋରମାଂ ଦେହି ମନୋବୃତ୍ତାନୁସାରିଣୀମ୍ ।
ତାରିଣୀଂ ଦୁର୍ଗସଂସାରସାଗରସ୍ୟ କୁଳୋଦ୍ଭବାମ୍ ॥ ୨୪ ॥
ଇଦଂ ସ୍ତୋତ୍ରଂ ପଠିତ୍ୱା ତୁ ମହାସ୍ତୋତ୍ରଂ ପଠେନ୍ନରଃ ।
ସ ତୁ ସପ୍ତଶତୀସଂଖ୍ୟାବରମାପ୍ନୋତି ସମ୍ପଦାମ୍ ॥ ଓଁ ॥ ୨୫ ॥

॥ ଇତି ଦେବ୍ୟା ଅର୍ଗଳାସ୍ତୋତ୍ରଂ ସମ୍ପୂର୍ଣ୍ଣମ୍ ॥



---

ହେ ଦେବି ଅମ୍ବିକେ ! ତୁମେ ନିଜେ ଭକ୍ତମାନଙ୍କୁ ସର୍ବଦା ଅସୀମ ଆନନ୍ଦ ପ୍ରଦାନ କରୁଛ । ମୋତେ ରୂପ, ଜୟ ତଥା ଯଶ ପ୍ରଦାନ କର ଏବଂ କାମ-କ୍ରୋଧାଦି ଶତ୍ରୁମାନଙ୍କୁ ବିନାଶ କର ॥ ୨୩ ॥ ମୋର ମନଇଚ୍ଛା ଅନୁସାରେ ଚଳୁଥିବା ମନୋହର ପତ୍ନୀ ମୋତେ ପ୍ରଦାନ କର; ଯିଏ ଦୁର୍ଗମ ସଂସାରସାଗରରୁ ପାରି କରିପାରୁଥିବ ତଥା ଉତ୍ତମ କୁଳରେ ଉତ୍ପନ୍ନ ହୋଇଥିବ ॥ ୨୪ ॥ ଯେଉଁ ମନୁଷ୍ୟ ଏହି ସ୍ତୋତ୍ରକୁ ପାଠ କରି ସପ୍ତଶତୀରୂପୀ ମହାସ୍ତୋତ୍ରକୁ ପାଠ କରେ; ସେ ସପ୍ତଶତୀର ଜପସଂଖ୍ୟାରୁ ମିଳୁଥିବା ଶ୍ରେଷ୍ଠ ଫଳକୁ ପ୍ରାପ୍ତ ହୁଏ । ଏହା ସଙ୍ଗରେ ସେ ପ୍ରଚୁର ସମ୍ପତ୍ତି ମଧ୍ୟ ପ୍ରାପ୍ତ କରେ ॥ ୨୫ ॥



# ଅଥ କୀଲକମ୍

ଓଁ ଅସ୍ୟ ଶ୍ରୀକୀଲକମନ୍ତ୍ରସ୍ୟ ଶିବ ଋଷିଃ, ଅନୁଷ୍ଟୁପ୍ ଛନ୍ଦଃ, ଶ୍ରୀମହାସରସ୍ୱତୀ ଦେବତା, ଶ୍ରୀଜଗଦମ୍ବାପ୍ରୀତ୍ୟର୍ଥଂ ସପ୍ତଶତୀପାଠାଙ୍ଗତ୍ୱେନ ଜପେ ବିନିଯୋଗଃ ।

**ଓଁ ନମଶ୍ଚଣ୍ଡିକାୟୈ ॥**

*ମାର୍କଣ୍ଡେୟ ଉବାଚ*

**ଓଁ ବିଶୁଦ୍ଧଜ୍ଞାନଦେହାୟ ତ୍ରିବେଦୀଦିବ୍ୟଚକ୍ଷୁଷେ ।**
**ଶ୍ରେୟଃପ୍ରାପ୍ତିନିମିତ୍ତାୟ ନମଃ ସୋମାର୍ଧଧାରିଣେ ॥ ୧ ॥**
**ସର୍ବମେତଦ୍ବିଜାନୀୟାନ୍ମନ୍ତ୍ରାଣାମଭିକୀଲକମ୍ ।**
**ସୋଽପି କ୍ଷେମମବାପ୍ନୋତି ସତତଂ ଜାପ୍ୟତତ୍ପରଃ ॥ ୨ ॥**
**ସିଦ୍ଧ୍ୟନ୍ତ୍ୟୁଚ୍ଚାଟନାଦୀନି ବସ୍ତୂନି ସକଲାନ୍ୟପି ।**
**ଏତେନ ସ୍ତୁବତାଂ ଦେବୀ ସ୍ତୋତ୍ରମାତ୍ରେଣ ସିଦ୍ଧ୍ୟତି ॥ ୩ ॥**

---

ଓଁ ଚଣ୍ଡିକାଦେବୀଙ୍କୁ ନମସ୍କାର ।

**ଶ୍ରୀମାର୍କଣ୍ଡେୟ କହନ୍ତି**—ବିଶୁଦ୍ଧ ଜ୍ଞାନ ହିଁ ଯାହାଙ୍କ ଶରୀର, ତିନୋଟି ବେଦ ଯାହାଙ୍କ ତିନୋଟି ଦିବ୍ୟ ନେତ୍ର, ଯିଏ କଲ୍ୟାଣପ୍ରାପ୍ତିର କାରଣ ଏବଂ ନିଜ ମସ୍ତକ ଉପରେ ଅର୍ଦ୍ଧଚନ୍ଦ୍ରର ମୁକୁଟ ଧାରଣ କରିଛନ୍ତି; ସେହି ଭଗବାନ୍ ଶିବଙ୍କୁ ମୁଁ ନମସ୍କାର କରୁଛି ॥ ୧ ॥ ମନ୍ତ୍ରଗୁଡ଼ିକର ଯିଏ ଅଭିକୀଳକ ଅର୍ଥାତ୍ ମନ୍ତ୍ର ସିଦ୍ଧିରେ ବିଘ୍ନ ଉତ୍ପନ୍ନ କରୁଥିବା ଶାପରୂପୀ କୀଳକକୁ ଯିଏ ନିବାରଣ କରେ; ସେହି ସପ୍ତଶତୀସ୍ତୋତ୍ରକୁ ସମ୍ପୂର୍ଣ୍ଣ ରୂପରେ ଜାଣିବା ଉଚିତ ଏବଂ ଜାଣିବାପରେ ତାହାକୁ ଉପାସନା କରିବା ଉଚିତ । ସପ୍ତଶତୀ ମନ୍ତ୍ର ଜପରେ ଯିଏ ସର୍ବଦା ମନୋନିବେଶ କରେ; ସେ ନିଶ୍ଚିତଭାବରେ କଲ୍ୟାଣର ଭାଗୀ ହୁଏ ॥ ୨ ॥ ତାହାର ଉଚ୍ଚାଟନ ଆଦି କର୍ମ ସିଦ୍ଧ ହୁଏ ତଥା ତାହାକୁ ମଧ୍ୟ ସମସ୍ତ ଦୁର୍ଲଭ ବସ୍ତୁ ପ୍ରାପ୍ତି ହୁଏ । ତଥାପି ଯେଉଁ ବ୍ୟକ୍ତି କେବଳ ଏହି ସପ୍ତଶତୀ ନାମକ ସ୍ତୋତ୍ରଦ୍ୱାରା ଦେବୀଙ୍କୁ ସ୍ତୁତି କରନ୍ତି; ତାଙ୍କ ସ୍ତୁତିମାତ୍ରେ ହିଁ ସଚ୍ଚିଦାନନ୍ଦ-ସ୍ୱରୂପିଣୀ ଦେବୀଙ୍କ ସିଦ୍ଧି ପ୍ରାପ୍ତ ହୁଏ ॥ ୩ ॥

ନ ମନ୍ତ୍ରୋନୌଷଧଂ ତତ୍ର ନ କିଞ୍ଚିଦପି ବିଦ୍ୟତେ ।
ବିନା ଜାପ୍ୟେନ ସିଦ୍ଧ୍ୟେତ ସର୍ବମୁଚ୍ଚାଟନାଦିକମ୍ ॥ ୪ ॥
ସମଗ୍ରାଣ୍ୟପି ସିଦ୍ଧ୍ୟନ୍ତି ଲୋକଶଙ୍କାମିମାଂ ହରଃ ।
କୃତ୍ୱା ନିମନ୍ତ୍ରୟାମାସ ସର୍ବମେବମିଦଂ ଶୁଭମ୍ ॥ ୫ ॥
ସ୍ତୋତ୍ରଂ ବୈ ଚଣ୍ଡିକାୟାସ୍ତୁ ତଚ୍ଚ ଗୁପ୍ତଂ ଚକାର ସଃ ।
ସମାପ୍ତିର୍ନ ଚ ପୁଣ୍ୟସ୍ୟ ତାଂ ଯଥାବନ୍ନିୟନ୍ତ୍ରଣାମ୍ ॥ ୬ ॥
ସୋଽପି କ୍ଷେମମବାପ୍ନୋତି ସର୍ବମେବଂ ନ ସଂଶୟଃ ।
କୃଷ୍ଣାୟାଂ ବା ଚତୁର୍ଦଶ୍ୟାମଷ୍ଟମ୍ୟାଂ ବା ସମାହିତଃ ॥ ୭ ॥
ଦଦାତି ପ୍ରତିଗୃହ୍ଣାତି ନାନ୍ୟଥୈଷା ପ୍ରସୀଦତି ।

---

ସେମାନଙ୍କର ନିଜ କାର୍ଯ୍ୟସିଦ୍ଧି ନିମନ୍ତେ ମନ୍ତ୍ର, ଔଷଧ ତଥା ଅନ୍ୟ କୌଣସି ସାଧନ ଉପଯୋଗ କରିବାର ଆବଶ୍ୟକତା ରହେ ନାହିଁ। ଜପ ବିନା ସେଗୁଡ଼ିକର ଉଚ୍ଚାଟନ ଆଦି ସମସ୍ତ ଆଭିଚାରିକ କର୍ମ ସିଦ୍ଧ ହୋଇପାରେ ॥ ୪ ॥ ସେମାନଙ୍କର ସମସ୍ତ ଅଭୀଷ୍ଟ ବସ୍ତୁ ମଧ୍ୟ ସିଦ୍ଧ ହୁଏ। (ଲୋକମାନଙ୍କ ମନରେ ଏହି ଆଶଙ୍କା ଥିଲା ଯେ ଯଦି କେବଳ ସପ୍ତଶତୀର ଉପାସନାଦ୍ୱାରା ଅଥବା ସପ୍ତଶତୀ ବ୍ୟତୀତ ଅନ୍ୟ ମନ୍ତ୍ରର ଉପାସନାଦ୍ୱାରା ମଧ୍ୟ ସମାନରୂପରେ ସମସ୍ତ କାର୍ଯ୍ୟ ସିଦ୍ଧ ହୁଏ; ତେବେ ଏମାନଙ୍କ ମଧ୍ୟରେ କେଉଁଟି ଶ୍ରେଷ୍ଠ ସାଧନ?) ଲୋକମାନଙ୍କ ଏହି ଶଙ୍କାକୁ ଦୃଷ୍ଟିରେ ରଖି ଭଗବାନ୍ ଶଙ୍କର ନିଜ ପାଖକୁ ଆସିଥିବା ଜିଜ୍ଞାସୁମାନଙ୍କୁ ବୁଝାଇଲେ ଯେ ଏହି ସପ୍ତଶତୀ ନାମକ ସମଗ୍ର ସ୍ତୋତ୍ର ସର୍ବଶ୍ରେଷ୍ଠ ଏବଂ କଲ୍ୟାଣମୟ ଅଟେ ॥ ୫ ॥

ଏହାପରେ ଭଗବତୀ ଚଣ୍ଡିକାଙ୍କ ସପ୍ତଶତୀ ନାମକ ସ୍ତୋତ୍ରକୁ ମହାଦେବ ଗୁପ୍ତ ଭାବେ ରଖିଥିଲେ। ସପ୍ତଶତୀ ପାଠଦ୍ୱାରା ଯେତେ ପୁଣ୍ୟ ହୁଏ, ତାହାର କେବେହେଲେ ସମାପ୍ତି ହୁଏ ନାହିଁ। ତେଣୁ ସପ୍ତଶତୀର ଶ୍ରେଷ୍ଠତା ଯଥାର୍ଥଭାବେ ଜାଣିବା ଉଚିତ ॥ ୬ ॥ ଅନ୍ୟ ମନ୍ତ୍ରଗୁଡ଼ିକୁ ଜପ କରୁଥିବା ପୁରୁଷ ଯଦି ସପ୍ତଶତୀ ସ୍ତୋତ୍ର ଏବଂ ଜପ ଅନୁଷ୍ଠାନ କରେ; ତେବେ ସେ ମଧ୍ୟ ପୂର୍ଣ୍ଣରୂପରେ କଲ୍ୟାଣ ଉପଭୋଗ କରେ। ଏଥିରେ ତିଳେମାତ୍ର ସନ୍ଦେହ ନାହିଁ। ଯେଉଁ ସାଧକ କୃଷ୍ଣପକ୍ଷର ଚତୁର୍ଦଶୀ ଏବଂ ଅଷ୍ଟମୀରେ ଏକାଗ୍ରଚିତ୍ତ ହୋଇ ଭଗବତୀଙ୍କ ସେବାରେ ନିଜର ସର୍ବସ୍ୱ ସମର୍ପିତ କରିଦିଏ ଏବଂ ତାହାକୁ କେବଳ ପ୍ରସାଦ ରୂପରେ ଗ୍ରହଣ

ଇତ୍ଥଂରୂପେଣ କୀଳେନ ମହାଦେବେନ କୀଳିତମ୍ ॥ ୮ ॥
ଯୋ ନିଷ୍କୀଳାଂ ବିଧାୟୈନାଂ ନିତ୍ୟଂ ଜପତି ସଂସ୍ଫୁଟମ୍ ।
ସ ସିଦ୍ଧଃ ସ ଗଣଃ ସୋଽପି ଗନ୍ଧର୍ବୋ ଜାୟତେ ନରଃ ॥ ୯ ॥
ନ ଚୈବାପ୍ୟଟତସ୍ତସ୍ୟ ଭୟଂ କ୍ୱାପୀହ ଜାୟତେ ।
ନାପମୃତ୍ୟୁବଶଂ ଯାତି ମୃତୋ ମୋକ୍ଷମବାପ୍ନୁୟାତ୍ ॥ ୧୦ ॥
ଜ୍ଞାତ୍ୱା ପ୍ରାରଭ୍ୟ କୁର୍ବୀତ ନ କୁର୍ବାଣୋ ବିନଶ୍ୟତି ।
ତତୋ ଜ୍ଞାତ୍ୱୈବ ସମ୍ପନ୍ନମିଦଂ ପ୍ରାରଭ୍ୟତେ ବୁଧୈଃ ॥ ୧୧ ॥

---

କରେ; ତାହା ଉପରେ ଭଗବତୀ ପ୍ରସନ୍ନ ହୁଅନ୍ତି । ଅନ୍ୟଥା ସେ ପ୍ରସନ୍ନ ହୁଅନ୍ତି ନାହିଁ ।* ଏହି ପ୍ରକାର ସିଦ୍ଧିର ପ୍ରତିବନ୍ଧକରୂପ କୀଳକଦ୍ୱାରା ମହାଦେବ ଏହି ସ୍ତୋତ୍ରକୁ କୀଳିତ କରି ରଖିଛନ୍ତି ॥ ୭-୮ ॥ ଯିଏ ପୂର୍ବୋକ୍ତ ରୀତିରେ ନିଷ୍କୀଳନ କରି ଏହି ସପ୍ତଶତୀ-ସ୍ତୋତ୍ରକୁ ପ୍ରତିଦିନ ସ୍ପଷ୍ଟ ଉଚ୍ଚାରଣପୂର୍ବକ ପାଠ କରେ; ସେହି ମନୁଷ୍ୟ ସିଦ୍ଧ ହୁଏ । ସେ ଦେବୀଙ୍କ ପାର୍ଷଦ ହୁଏ ଏବଂ ସେ ଗନ୍ଧର୍ବ ମଧ୍ୟ ହୋଇଯାଏ ॥ ୯ ॥ ସର୍ବତ୍ର ବିଚରଣ କଲେ ମଧ୍ୟ ଏହି ସଂସାରରେ ତାହାକୁ କେଉଁଠି ଆଦୌ ଭୟ ଲାଗେ ନାହିଁ । ତାହାର ଅପମୃତ୍ୟୁ ହୁଏ ନାହିଁ ତଥା ଦେହତ୍ୟାଗ ପରେ ସେ ମୋକ୍ଷ ପ୍ରାପ୍ତି କରେ ॥ ୧୦ ॥ ଏଣୁ କୀଳନକୁ ଜାଣି ତାହାକୁ ପରିହାର କରି ହିଁ ସପ୍ତଶତୀର ପାଠ ଆରମ୍ଭ କରିବା ଉଚିତ । ଯିଏ

---

* ଏହା ହେଉଛି ନିଷ୍କୀଳନ ଅଥବା ଶାପୋଦ୍ଧାରର ଏକ ବିଶେଷ ପ୍ରଣାଳୀ । ଭଗବତୀଙ୍କ ଉପାସକ ଉପର୍ଯ୍ୟୁକ୍ତ ତିଥିରେ ଦେବୀଙ୍କ ସେବାରେ ଉପସ୍ଥିତ ହୋଇ ନିଜର ନ୍ୟାୟୋପାର୍ଜିତ ଧନକୁ ତାଙ୍କୁ ଅର୍ପଣ କରି ଏକାଗ୍ରଚିତ୍ତରେ ପ୍ରାର୍ଥନା କରିବା ଉଚିତ—ହେ ମାତଃ ! ଆଜିଠାରୁ ମୁଁ ଏହି ସମସ୍ତ ଧନ ତଥା ନିଜେ ନିଜକୁ ତୁମ୍ଭ ସେବାରେ ଅର୍ପଣ କଲି । ଏହା ଉପରେ ମୋର କୌଣସି ଅଧିକାର ନାହିଁ । ପୁନଶ୍ଚ ଭଗବତୀଙ୍କୁ ଧ୍ୟାନ କରି ଏହି ଭାବନା କରିବା ଉଚିତ ସତେ ଯେପରି ଜଗଦମ୍ବା କହୁଛନ୍ତି—ହେ ପୁତ୍ର ! ସଂସାରଯାତ୍ରା ନିର୍ବାହ ନିମନ୍ତେ ତୁମେ ମୋର ଏହି ପ୍ରସାଦରୂପ ଧନ ଗ୍ରହଣ କର । ଏହି ପ୍ରକାରେ ଦେବୀଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ସେହି ଧନକୁ ପ୍ରସାଦବୁଦ୍ଧିରେ ଗ୍ରହଣ କରିବା ଉଚିତ ଏବଂ ଧର୍ମଶାସ୍ତ୍ରୋକ୍ତ ମାର୍ଗରେ ତାହାର ସଦ୍‌ବ୍ୟୟ କରି ସର୍ବଦା ଦେବୀଙ୍କ ଅଧୀନ ହୋଇ ରହିବା ଉଚିତ । ଏହାକୁ 'ଦାନପ୍ରତିଗ୍ରହକରଣ' ବୋଲି କୁହାଯାଏ । ଏହାଦ୍ୱାରା ସପ୍ତଶତୀର ଶାପୋଦ୍ଧାର ହୁଏ ଏବଂ ଦେବୀଙ୍କ କୃପା ପ୍ରାପ୍ତ ହୁଏ ।

ସୌଭାଗ୍ୟାଦି ଚ ଯତ୍କିଞ୍ଚିଦ୍ ଦୃଶ୍ୟତେ ଲଲନାଜନେ ।
ତତ୍ସର୍ବଂ ତତ୍ପ୍ରସାଦେନ ତେନ ଜାପ୍ୟମିଦଂ ଶୁଭମ୍ ॥ ୧୨ ॥
ଶନୈସ୍ତୁ ଜପ୍ୟମାନେଽସ୍ମିନ୍ ସ୍ତୋତ୍ରେ ସମ୍ପତ୍ତିରୁଚ୍ଚକୈଃ ।
ଭବତ୍ୟେବ ସମଗ୍ରାପି ତତଃ ପ୍ରାରଭ୍ୟମେବ ତତ୍ ॥ ୧୩ ॥
ଐଶ୍ୱର୍ଯ୍ୟଂ ଯତ୍ପ୍ରସାଦେନ ସୌଭାଗ୍ୟାରୋଗ୍ୟସମ୍ପଦଃ ।
ଶତ୍ରୁହାନିଃ ପରୋ ମୋକ୍ଷଃ ସ୍ତୂୟତେ ସା ନ କିଂ ଜନୈଃ ॥ ଓଁ॥ ୧୪ ॥

॥ ଇତି ଦେବ୍ୟାଃ କୀଲକସ୍ତୋତ୍ରଂ ସମ୍ପୂର୍ଣ୍ଣମ୍ ॥



ଏହିପରି କରେ ନାହିଁ; ତାହାର ବିନାଶ ହୁଏ ।* ତେଣୁ କୀଳକ ଓ ନିଷ୍କୀଳନର ଜ୍ଞାନ ପ୍ରାପ୍ତ କରିବା ପରେ ବିଦ୍ୱାନ୍ ପୁରୁଷ ଏହି ନିର୍ଦ୍ଦୋଷ ସ୍ତୋତ୍ରର ପାଠ ଆରମ୍ଭ କରନ୍ତି ॥ ୧୧ ॥ ସ୍ତ୍ରୀମାନଙ୍କ ମଧ୍ୟରେ ଯାହା କିଛି ସୌଭାଗ୍ୟ ଆଦି ଦୃଷ୍ଟିଗୋଚର ହୁଏ; ସେସବୁ ଦେବୀଙ୍କ ପ୍ରସାଦର ଫଳ ଅଟେ । ଏଣୁ ଏହି କଲ୍ୟାଣମୟ ସ୍ତୋତ୍ରକୁ ସର୍ବଦା ଜପ କରିବା ବିଧେୟ ॥ ୧୨ ॥ ଏହି ସ୍ତୋତ୍ରକୁ ମନ୍ଦସ୍ୱରରେ ପାଠ କଲେ ସ୍ୱଳ୍ପ ଫଳ ପ୍ରାପ୍ତି ହୁଏ ଏବଂ ଉଚ୍ଚସ୍ୱରରେ ପାଠ କଲେ ପୂର୍ଣ୍ଣଫଳ ସିଦ୍ଧ ହୁଏ । ଅତଃ ଉଚ୍ଚସ୍ୱରରେ ହିଁ ଏହାର ପାଠ ଆରମ୍ଭ କରିବା ଉଚିତ ॥ ୧୩ ॥ ଯାହାଙ୍କ ପ୍ରସାଦରୁ ଐଶ୍ୱର୍ଯ୍ୟ, ସୌଭାଗ୍ୟ, ଆରୋଗ୍ୟ, ସମ୍ପତ୍ତି, ଶତ୍ରୁନାଶ ଏବଂ ପରମ ମୋକ୍ଷପ୍ରାପ୍ତି ହୁଏ, ସେହି କଲ୍ୟାଣମୟୀ ଜଗଦମ୍ବାଙ୍କ ସ୍ତୁତି ମନୁଷ୍ୟ କାହିଁକି ନ କରିବ ? ॥ ୧୪ ॥



* ଏଠାରେ କୀଳକ ଏବଂ ନିଷ୍କୀଳନ ଜ୍ଞାନର ଅନିବାର୍ଯ୍ୟତା ଜଣାଇବା ପାଇଁ ବିନାଶ ହେବା କଥା କୁହାଯାଉଛି । ବାସ୍ତବରେ କୌଣସି ପ୍ରକାରେ ଦେବୀଙ୍କ ପାଠ କଲେ ଲାଭ ହିଁ ହୁଏ । ଏହି କଥା ବଚନାନ୍ତରରେ ସିଦ୍ଧ ହୋଇଛି ।

ଏହାପରେ ରାତ୍ରିସୂକ୍ତ ପାଠ କରିବା ଉଚିତ। ପାଠର ଆରମ୍ଭରେ ରାତ୍ରିସୂକ୍ତ ଏବଂ ଶେଷରେ ଦେବୀସୂକ୍ତ ପାଠର ବିଧାନ ରହିଛି। ମାରୀଚକଳ୍ପର ବଚନାନୁସାରେ—

**ରାତ୍ରିସୂକ୍ତଂ ପଠେଦାଦୌ ମଧ୍ୟେ ସପ୍ତଶତୀସ୍ତବମ୍।**
**ପ୍ରାନ୍ତେ ତୁ ପଠନୀୟଂ ବୈ ଦେବୀସୂକ୍ତମିତି କ୍ରମଃ॥**

ରାତ୍ରିସୂକ୍ତ ପରେ ବିନିଯୋଗ, ନ୍ୟାସ ଏବଂ ଧ୍ୟାନପୂର୍ବକ ନବାର୍ଣ୍ଣମନ୍ତ୍ରକୁ ଜପ କରି ସପ୍ତଶତୀ ପାଠ ଆରମ୍ଭ କରିବା ବିଧେୟ। ପାଠର ଶେଷରେ ପୁନଃ ବିଧିପୂର୍ବକ ନବାର୍ଣ୍ଣ ମନ୍ତ୍ର ଜପ କରି ଦେବୀସୂକ୍ତ ତଥା ତିନୋଟି ରହସ୍ୟକୁ ପାଠ କରିବା ଉଚିତ। କେତେକ ଲୋକ ନବାର୍ଣ୍ଣ ଜପ କରିବା ପରେ ରାତ୍ରିସୂକ୍ତକୁ ପାଠ କରିବାକୁ କହନ୍ତି ତଥା ଶେଷରେ ମଧ୍ୟ ଦେବୀସୂକ୍ତ ପରେ ନବାର୍ଣ୍ଣଜପର ଔଚିତ୍ୟ ପ୍ରତିପାଦନ କରନ୍ତି। କିନ୍ତୁ ଏହା ଠିକ୍ ନୁହେଁ। ଚିଦମ୍ବରସଂହିତାରେ କୁହାଯାଇଛି—'ମଧ୍ୟେ ନବାର୍ଣ୍ଣପୁଟିତଂ କୃତ୍ୱା ସ୍ତୋତ୍ରଂ ସଦାଭ୍ୟସେତ୍।' ଅର୍ଥାତ୍ ସପ୍ତଶତୀ ପାଠକୁ ମଧ୍ୟରେ ରଖି ଆରମ୍ଭରେ ଓ ଶେଷରେ ନବାର୍ଣ୍ଣ ଜପଦ୍ୱାରା ତାହାକୁ ସଂପୁଟିତ କରିଦେବା ଉଚିତ। ଡାମରତନ୍ତ୍ରରେ ଏହି କଥା ଅଧିକ ସ୍ପଷ୍ଟ କରାଯାଇଛି—

**ଶତମାଦୌ ଶତଂ ଚାନ୍ତେ ଜପେନ୍ମନ୍ତ୍ରଂ ନବାର୍ଣ୍ଣକମ୍।**
**ଚଣ୍ଡୀଂ ସପ୍ତଶତୀଂ ମଧ୍ୟେ ସଂପୁଟୋଽୟମୁଦାହୃତଃ॥**

ଅର୍ଥାତ୍ ଆରମ୍ଭରେ ଓ ଶେଷରେ ଶହେ ଶହେ ଥର ନବାର୍ଣ୍ଣ ମନ୍ତ୍ରକୁ ଜପ କରିବା ଉଚିତ ଏବଂ ମଧ୍ୟଭାଗରେ ସପ୍ତଶତୀ ଦୁର୍ଗାଙ୍କୁ ପାଠ କରିବା ବିଧେୟ। ଏହାକୁ ସଂପୁଟ କୁହାଯାଏ। ଯଦି ପ୍ରଥମେ ଓ ଶେଷରେ ରାତ୍ରିସୂକ୍ତ ବା ଦେବୀସୂକ୍ତ ପାଠ କରାଯାଏ ଏବଂ ତା ପୂର୍ବରୁ ତଥା ଶେଷରେ ନବାର୍ଣ୍ଣ ଜପ ହୁଏ; ତେବେ ସେହି ପାଠକୁ ନବାର୍ଣ୍ଣ ସଂପୁଟିତ କୁହାଯାଏ ନାହିଁ; କାରଣ ଯାହାଦ୍ୱାରା ସଂପୁଟ ହୁଏ; ତାହା ମଧ୍ୟରେ ଅନ୍ୟ କୌଣସି ମନ୍ତ୍ର ଜପ କରିବା ଅନୁଚିତ। ଯଦି ମଧ୍ୟଭାଗରେ ରାତ୍ରିସୂକ୍ତ ଏବଂ ଦେବୀସୂକ୍ତ ରଖାଯାଏ; ତେବେ ସେହି ପାଠ ଉକ୍ତ ସୂକ୍ତଦ୍ୱାରା ହିଁ ସଂପୁଟିତ ହୋଇଯିବ। ଏହି ଅବସ୍ଥାରେ ଡାମରତନ୍ତ୍ର ଆଦି ବଚନର ସ୍ପଷ୍ଟଭାବରେ ବିରୋଧ ହେବ। ତେଣୁ ପ୍ରଥମେ ରାତ୍ରିସୂକ୍ତ, ତାପରେ ନବାର୍ଣ୍ଣ ଜପ, ତାପରେ ନ୍ୟାସପୂର୍ବକ ସପ୍ତଶତୀ ପାଠ, ତାପରେ ବିଧିବତ୍ ନବାର୍ଣ୍ଣ ଜପ, ପୁନଃ କ୍ରମଶଃ ଦେବୀସୂକ୍ତ ଓ ରହସ୍ୟତ୍ରୟର ପାଠ—ଏହି କ୍ରମ ସମୀଚୀନ। ରାତ୍ରିସୂକ୍ତ ମଧ୍ୟ ଦୁଇପ୍ରକାର ଅଟେ—ବୈଦିକ ଓ ତାନ୍ତ୍ରିକ। ବୈଦିକ ରାତ୍ରିସୂକ୍ତ ଋଗ୍‌ବେଦର ଆଠୋଟି ଋଗ୍ ଏବଂ ତାନ୍ତ୍ରିକ ରାତ୍ରିସୂକ୍ତ ତ ଦୁର୍ଗାସପ୍ତଶତୀର ପ୍ରଥମ ଅଧ୍ୟାୟରେ ହିଁ ଅଛି। ଏଠାରେ ଦୁଇଟି ଯାକ ଦିଆଯାଇଛି। ରାତ୍ରିଦେବତାର ପ୍ରତିପାଦକ ସୂକ୍ତକୁ 'ରାତ୍ରିସୂକ୍ତ' କହନ୍ତି। ଏହି ରାତ୍ରିଦେବୀ ଦୁଇ ପ୍ରକାରର—

ଗୋଟିଏ ଜୀବରାତ୍ରି ଏବଂ ଦ୍ୱିତୀୟଟି ଈଶ୍ୱରରାତ୍ରି । ଯେଉଁଥିରେ ପ୍ରତିଦିନ ଜଗତ୍‌ର ସାଧାରଣ ଜୀବମାନଙ୍କର ବ୍ୟବହାର ଲୁପ୍ତ ହୁଏ, ତାହାହିଁ ଜୀବରାତ୍ରି ଅଟେ । ଯେଉଁଥିରେ ଈଶ୍ୱରଙ୍କ ଜଗଦ୍‌ରୂପ ବ୍ୟବହାର ଲୋପ ହୁଏ; ତାହା ଈଶ୍ୱରରାତ୍ରି ଅଟେ । ତାହାକୁ କାଳରାତ୍ରି ବା ମହାପ୍ରଳୟରାତ୍ରି କହନ୍ତି । ସେହି ସମୟରେ କେବଳ ବ୍ରହ୍ମ ଏବଂ ତାଙ୍କ ମାୟାଶକ୍ତି, ଯାହାକୁ ଅବ୍ୟକ୍ତ ପ୍ରକୃତି କହନ୍ତି; ଅବଶେଷ ରହେ । ଏହାର ଅଧିଷ୍ଠାତ୍ରୀ ଦେବୀ 'ଭୁବନେଶ୍ୱରୀ' ଅଟନ୍ତି ।* ରାତ୍ରିସୂକ୍ତଦ୍ୱାରା ତାଙ୍କର ସ୍ତବନ ହୁଏ ।



# ଅଥ ବେଦୋକ୍ତଂ ରାତ୍ରିସୂକ୍ତମ୍ᵠ

**ଓଁ ରାତ୍ରୀତ୍ୟାଦ୍ୟଷ୍ଟର୍ଚସ୍ୟ ସୂକ୍ତସ୍ୟ କୁଶିକଃ ସୌଭରୋ ରାତ୍ରିର୍ବା ଭାରଦ୍ୱାଜୋ ଋଷିଃ, ରାତ୍ରିର୍ଦ୍ଦେବତା, ଗାୟତ୍ରୀ ଛନ୍ଦଃ, ଦେବୀମାହାତ୍ମ୍ୟପାଠେ ବିନିଯୋଗଃ ।**

**ଓଁ ରାତ୍ରୀ ବ୍ୟଖ୍ୟଦାୟତୀ ପୁରୁତ୍ରା ଦେବ୍ୟକ୍ଷଭିଃ । ବିଶ୍ୱା ଅଧି ଶ୍ରିୟୋଽଧିତ ॥ ୧ ॥**

**ଓର୍ବପ୍ରା ଅମର୍ତ୍ତ୍ୟାନିବତୋ ଦେବ୍ୟୁଦ୍ୱତଃ । ଜ୍ୟୋତିଷା ବାଧତେ ତମଃ ॥ ୨ ॥**

**ନିରୁ ସ୍ୱସାରମସ୍କୃତୋଷସଂ ଦେବ୍ୟାୟତୀ । ଅପେଦୁ ହାସତେ ତମଃ ॥ ୩ ॥**

---

ମହତତ୍ତ୍ୱାଦିରୂପ ବ୍ୟାପକ ଇନ୍ଦ୍ରିୟଗୁଡ଼ିକ ଦ୍ୱାରା ସବୁଦେଶରେ ସମସ୍ତ ବସ୍ତୁକୁ ପ୍ରକାଶିତ କରୁଥିବା ଏହି ରାତ୍ରିରୂପା ଦେବୀ ନିଜେ ଉତ୍ପନ୍ନ କରିଥିବା ଜଗତ୍‌ର ଜୀବମାନଙ୍କର ଶୁଭାଶୁଭ କର୍ମକୁ ବିଶେଷରୂପରେ ଦେଖନ୍ତି ଏବଂ ସେମାନଙ୍କ ଅନୁରୂପ ଫଳର ବ୍ୟବସ୍ଥା କରିବା ପାଇଁ ସମସ୍ତ ବିଭୂତିକୁ ଧାରଣ କରନ୍ତି ॥ ୧ ॥

ଏହି ଦେବୀ ଅମର ଅଟନ୍ତି ଏବଂ ସମସ୍ତ ବିଶ୍ୱକୁ, ତଳେ ମାଡୁଥିବା ଲତା ଆଦିକୁ ତଥା ଉପରକୁ ବୃଦ୍ଧି ପାଉଥିବା ବୃକ୍ଷଗୁଡ଼ିକୁ ମଧ୍ୟ ବ୍ୟାପ୍ତ କରି ଅବସ୍ଥିତ । ଏତିକି ମାତ୍ର ନୁହେଁ; ଏହି ଦେବୀ ଜ୍ଞାନମୟୀ ଜ୍ୟୋତିଦ୍ୱାରା ଜୀବମାନଙ୍କର ଅଜ୍ଞାନାନ୍ଧକାରକୁ ନାଶ କରିଦିଅନ୍ତି ॥ ୨ ॥

ପରା ଚିତ୍‌ଶକ୍ତିରୂପା ରାତ୍ରିଦେବୀ ଆସି ନିଜ ଭଗିନୀ ବ୍ରହ୍ମବିଦ୍ୟାମୟୀ ଉଷାଦେବୀଙ୍କୁ ପ୍ରକଟ କରନ୍ତି; ଯାହାଦ୍ୱାରା କି ଅବିଦ୍ୟାମୟ ଅନ୍ଧକାର ସ୍ୱତଃ ବିନଷ୍ଟ ହୋଇଯାଏ ॥ ୩ ॥

---

* ବ୍ରହ୍ମମାୟାତ୍ମିକା ରାତ୍ରିଃ ପରମେଶଲୟାତ୍ମିକା । ତଦଧିଷ୍ଠାତୃଦେବୀ ତୁ ଭୁବନେଶୀ ପ୍ରକୀର୍ତ୍ତିତା ॥ (ଦେବୀପୁରାଣ)

ᵠ ଋଗ୍‌ବେଦ—ମଂ. ୧୦ ଅ. ୧୦ ସୂ. ୧୨୭ ମନ୍ତ୍ର ୧ ଠାରୁ ୮ ପର୍ଯ୍ୟନ୍ତ ।

**ସା ନୋ ଅଦ୍ୟ ଯସ୍ୟା ବୟଂ ନି ତେ ଯାମନ୍ନବିକ୍ଷ୍ମହି । ବୃକ୍ଷେ ନ ବସତିଂ ବୟଃ ॥ ୪ ॥**

**ନି ଗ୍ରାମାସୋ ଅବିକ୍ଷତ ନି ପଦ୍ୱନ୍ତୋ ନି ପକ୍ଷିଣଃ । ନି ଶ୍ୟେନାସଶ୍ଚିଦର୍ଥିନଃ ॥ ୫ ॥**

**ଯାବୟା ବୃକ୍ୟଂ ବୃକଂ ଯବୟ ସ୍ତେନମୂର୍ମ୍ୟେ । ଅଥା ନଃ ସୁତରା ଭବ ॥ ୬ ॥**

**ଉପ ମା ପେପିଶତ୍ତମଃ କୃଷ୍ଣଂ ବ୍ୟକ୍ତମସ୍ଥିତ । ଉଷ ଋଣେବ ଯାତୟ ॥ ୭ ॥**

**ଉପ ତେ ଗା ଇବାକରଂ ବୃଣୀଷ୍ୱ ଦୁହିତର୍ଦିବଃ । ରାତ୍ରି ସ୍ତୋମଂ ନ ଜିଗ୍ୟୁଷେ ॥ ୮ ॥**

---

ଯେପରି ରାତ୍ରିସମୟରେ ପକ୍ଷୀ ବୃକ୍ଷ ଉପରେ ବାନ୍ଧିଥିବା ନିଜ ବସାରେ ସୁଖପୂର୍ବକ ଶୟନ କରନ୍ତି, ସେହିପରି ଯାହାଙ୍କ ଆଗମନରେ ଆମ୍ଭେମାନେ ନିଜ ଗୃହରେ ସୁଖରେ ଶୟନ କରୁ, ସେହି ରାତ୍ରିଦେବୀ ଏହି ସମୟରେ ମୋ ଉପରେ ପ୍ରସନ୍ନ ହୁଅନ୍ତୁ ॥ ୪ ॥

ସେହି କରୁଣାମୟୀ ରାତ୍ରୀ ଦେବୀଙ୍କ କୋଳରେ ସମସ୍ତ ଗ୍ରାମବାସୀ ମନୁଷ୍ୟ, ପାଦରେ ଗମନ କରୁଥିବା ଗାଈ, ଅଶ୍ୱ ଆଦି ପଶୁ, ପକ୍ଷ ସାହାଯ୍ୟରେ ଉଡୁଥିବା ପକ୍ଷୀ ଏବଂ ପତଙ୍ଗ ଆଦି, କୌଣସି ପ୍ରୟୋଜନରେ ଯାତ୍ରା କରୁଥିବା ପଥିକ ଏବଂ ବାଜ ଆଦି ମଧ୍ୟ ସୁଖପୂର୍ବକ ଶୟନ କରନ୍ତି ॥ ୫ ॥

ହେ ରାତ୍ରିମୟୀ ଚିତ୍‌ଶକ୍ତି ! ତୁମେ କୃପା କରି ବାସନାମୟୀ ବୃକୀ ଏବଂ ପାପମୟ ବୃକକୁ ଆମ୍ଭଠାରୁ ପୃଥକ୍ କର । କାମ ଆଦି ତସ୍କରବର୍ଗଙ୍କୁ ଦୂର କର । ତା'ପରେ ଆମ୍ଭମାନଙ୍କ ପାଇଁ ସୁଖପୂର୍ବକ ସନ୍ତରଣଯୋଗ୍ୟ ହୋଇଯାଅ ଅର୍ଥାତ୍ ମୋକ୍ଷଦାୟିନୀ ଏବଂ କଲ୍ୟାଣମୟୀ ପାଲଟିଯାଅ ॥ ୬ ॥

ହେ ଉଷା ! ହେ ରାତ୍ରିର ଅଧିଷ୍ଠାତ୍ରୀ ଦେବି ! ସର୍ବତ୍ର ବିସ୍ତୃତ ଏହି ଅଜ୍ଞାନମୟ କୃଷ୍ଣ ଅନ୍ଧକାର ମୋ ନିକଟରେ ଆସି ପହଞ୍ଚିଛି । ଯେପରି ଧନ ଦେଇ ନିଜ ଭକ୍ତମାନଙ୍କୁ ଋଣମୁକ୍ତ କର; ସେହିପରି ଜ୍ଞାନ ଦେଇ ଏହି ଅଜ୍ଞାନକୁ ମଧ୍ୟ ଦୂର କର ॥ ୭ ॥

ହେ ରାତ୍ରିଦେବି ! ତୁମେ ଦୁଗ୍ଧ ପ୍ରଦାନ କରୁଥିବା ଗାଈସମାନ ଅଟ । ମୁଁ ତୁମ୍ଭ ପାଖକୁ ଆସି ସ୍ତୁତି ଆଦିଦ୍ୱାରା ତୁମ୍ଭଙ୍କୁ ନିଜ ଅନୁକୂଳ କରୁଛି । ପରମ ବ୍ୟୋମ-ସ୍ୱରୂପ ପରମାତ୍ମାଙ୍କ ପୁତ୍ରୀ ! ତୁମ୍ଭ କୃପାରୁ ମୁଁ କାମ ଆଦି ଶତ୍ରୁମାନଙ୍କୁ ଜୟ କରିଛି । ତୁମ୍ଭେ ସ୍ତୋମସଦୃଶ ମୋର ଏହି ହବିଷ୍ୟକୁ ମଧ୍ୟ ଗ୍ରହଣ କର ॥ ୮ ॥

# ଅଥ ତନ୍ତ୍ରୋକ୍ତଂ ରାତ୍ରିସୂକ୍ତମ୍*

ଓଁ ବିଶ୍ୱେଶ୍ୱରୀଂ ଜଗଦ୍ଧାତ୍ରୀଂ ସ୍ଥିତିସଂହାରକାରିଣୀମ୍ ।
ନିଦ୍ରାଂ ଭଗବତୀଂ ବିଷ୍ଣୋରତୁଳାଂ ତେଜସଃ ପ୍ରଭୁଃ ॥ ୧ ॥

*ବ୍ରହ୍ମୋବାଚ*

ତ୍ୱଂ ସ୍ୱାହା ତ୍ୱଂ ସ୍ୱଧା ତ୍ୱଂ ହି ବଷଟ୍‌କାରଃ ସ୍ୱରାତ୍ମିକା ।
ସୁଧା ତ୍ୱମକ୍ଷରେ ନିତ୍ୟେ ତ୍ରିଧା ମାତ୍ରାତ୍ମିକା ସ୍ଥିତା ॥ ୨ ॥
ଅର୍ଦ୍ଧମାତ୍ରାସ୍ଥିତା ନିତ୍ୟା ଯାନୁଚ୍ଚାର୍ଯ୍ୟା ବିଶେଷତଃ ।
ତ୍ୱମେବ ସନ୍ଧ୍ୟା ସାବିତ୍ରୀ ତ୍ୱଂ ଦେବି ଜନନୀ ପରା ॥ ୩ ॥
ତ୍ୱୟୈତଦ୍ଧାର୍ଯ୍ୟତେ ବିଶ୍ୱଂ ତ୍ୱୟୈତତ୍‌ସୃଜ୍ୟତେ ଜଗତ୍ ।
ତ୍ୱୟୈତତ୍‌ପାଲ୍ୟତେ ଦେବି ତ୍ୱମତ୍ସ୍ୟନ୍ତେ ଚ ସର୍ବଦା ॥ ୪ ॥
ବିସୃଷ୍ଟୌ ସୃଷ୍ଟିରୂପା ତ୍ୱଂ ସ୍ଥିତିରୂପା ଚ ପାଳନେ ।
ତଥା ସଂହୃତିରୂପାନ୍ତେ ଜଗତୋଽସ୍ୟ ଜଗନ୍ମୟେ ॥ ୫ ॥
ମହାବିଦ୍ୟା ମହାମାୟା ମହାମେଧା ମହାସ୍ମୃତିଃ ।
ମହାମୋହା ଚ ଭବତୀ ମହାଦେବୀ ମହାସୁରୀ ॥ ୬ ॥
ପ୍ରକୃତିସ୍ତ୍ୱଂ ଚ ସର୍ବସ୍ୟ ଗୁଣତ୍ରୟବିଭାବିନୀ ।
କାଳରାତ୍ରିର୍ମହାରାତ୍ରିର୍ମୋହରାତ୍ରିଶ୍ଚ ଦାରୁଣା ॥ ୭ ॥
ତ୍ୱଂ ଶ୍ରୀସ୍ତ୍ୱମୀଶ୍ୱରୀ ତ୍ୱଂ ହ୍ରୀସ୍ତ୍ୱଂ ବୁଦ୍ଧିର୍ବୋଧଲକ୍ଷଣା ।
ଲଜ୍ଜା ପୁଷ୍ଟିସ୍ତଥା ତୁଷ୍ଟିସ୍ତ୍ୱଂ ଶାନ୍ତିଃ କ୍ଷାନ୍ତିରେବ ଚ ॥ ୮ ॥
ଖଡ୍‌ଗିନୀ ଶୂଳିନୀ ଘୋରା ଗଦିନୀ ଚକ୍ରିଣୀ ତଥା ।
ଶଙ୍ଖିନୀ ଚାପିନୀ ବାଣଭୁଶୁଣ୍ଡୀପରିଘାୟୁଧା ॥ ୯ ॥
ସୌମ୍ୟା ସୌମ୍ୟତରାଶେଷସୌମ୍ୟେଭ୍ୟସ୍ତ୍ୱତିସୁନ୍ଦରୀ ।
ପରାପରାଣାଂ ପରମା ତ୍ୱମେବ ପରମେଶ୍ୱରୀ ॥ ୧୦ ॥

* ଏହାର ଅର୍ଥ ସପ୍ତଶତୀର ପ୍ରଥମ ଅଧ୍ୟାୟ (ପୃଷ୍ଠା ୬୯ ରୁ ୭୨ ପର୍ଯ୍ୟନ୍ତ)ରେ ଦେଖନ୍ତୁ ।

ଯଚ୍ଚ କିଞ୍ଚିତ୍ କ୍ୱଚିଦ୍‌ବସ୍ତୁ ସଦସଦ୍‌ବାଖିଳାତ୍ମିକେ ।
ତସ୍ୟ ସର୍ବସ୍ୟ ଯା ଶକ୍ତିଃ ସା ତ୍ୱଂ କିଂ ସ୍ତୂୟସେ ତଦା ॥ ୧୧ ॥
ଯୟା ତ୍ୱୟା ଜଗତ୍‌ସ୍ରଷ୍ଟା ଜଗତ୍‌ପାତ୍ୟତ୍ତି ଯୋ ଜଗତ୍ ।
ସୋଽପି ନିଦ୍ରାବଶଂ ନୀତଃ କସ୍ତ୍ୱାଂ ସ୍ତୋତୁମିହେଶ୍ୱରଃ ॥ ୧୨ ॥
ବିଷ୍ଣୁଃ ଶରୀରଗ୍ରହଣମହମୀଶାନ ଏବ ଚ ।
କାରିତାସ୍ତେ ଯତୋଽତସ୍ତ୍ୱାଂ କଃ ସ୍ତୋତୁଂ ଶକ୍ତିମାନ୍ ଭବେତ୍ ॥ ୧୩ ॥
ସା ତ୍ୱମିତ୍ଥଂ ପ୍ରଭାବୈଃ ସ୍ୱୈରୁଦାରୈର୍ଦେବି ସଂସ୍ତୁତା ।
ମୋହୟୈତୌ ଦୁରାଧର୍ଷାବସୁରୌ ମଧୁକୈଟଭୌ ॥ ୧୪ ॥
ପ୍ରବୋଧଂ ଚ ଜଗତ୍‌ସ୍ୱାମୀ ନୀୟତାମଚ୍ୟୁତୋ ଲଘୁ ।
ବୋଧଶ୍ଚ କ୍ରିୟତାମସ୍ୟ ହନ୍ତୁମେତୌ ମହାସୁରୌ ॥ ୧୫ ॥

ଇତି ରାତ୍ରିସୂକ୍ତମ୍

❁❁❁

## ଶ୍ରୀଦେବ୍ୟଥର୍ବଶୀର୍ଷମ୍*

ଓଁ ସର୍ବେ ବୈ ଦେବା ଦେବୀମୁପତସ୍ଥୁଃ କାସି ତ୍ୱଂ ମହାଦେବୀତି ॥ ୧ ॥

ସାବ୍ରବୀତ୍—ଅହଂ ବ୍ରହ୍ମସ୍ୱରୂପିଣୀ । ମତ୍ତଃ ପ୍ରକୃତି-ପୁରୁଷାତ୍ମକଂ ଜଗତ୍ । ଶୂନ୍ୟଂ ଚାଶୂନ୍ୟଂ ଚ ॥ ୨ ॥

---

ସମସ୍ତ ଦେବତା ଦେବୀଙ୍କ ସମୀପକୁ ଗଲେ ଏବଂ ନମ୍ରତାପୂର୍ବକ ପଚ୍ଚରିଲେ—ହେ ମହାଦେବି ! ତୁମେ କିଏ ? ॥ ୧ ॥

ସେ କହିଲେ—ମୁଁ ବ୍ରହ୍ମସ୍ୱରୂପ ଅଟେ । ମୋଠାରୁ ପ୍ରକୃତି-ପୁରୁଷାତ୍ମକ ସଦ୍ରୂପ ଏବଂ ଅସଦ୍‌ରୂପ ଜଗତ୍ ଉତ୍ପନ୍ନ ହୋଇଛି ॥ ୨ ॥

---

* ବର୍ତ୍ତମାନ ଏଠାରେ ଅର୍ଥ ସହିତ ଦିବ୍ୟଥର୍ବଶୀର୍ଷ ଦିଆଯାଇଛି । ଅଥର୍ବ ବେଦରେ ଏହାର ମହିମା ଅପାର ବୋଲି କୁହାଯାଇଛି । ଏହା ପାଠ କଲେ ଦେବୀଙ୍କ କୃପା ଶୀଘ୍ର ପ୍ରାପ୍ତ ହୁଏ । ଯଦ୍ୟପି ସପ୍ତଶତୀ ପାଠର ଅଙ୍ଗ ଭାବେ ଏହାକୁ ଅନ୍ୟ

ଅହମାନନ୍ଦାନାନନ୍ଦୌ । ଅହଂ ବିଜ୍ଞାନାବିଜ୍ଞାନେ । ଅହଂ ବ୍ରହ୍ମାବ୍ରହ୍ମଣୀ ବେଦିତବ୍ୟେ । ଅହଂ ପଞ୍ଚଭୂତାନ୍ୟପଞ୍ଚଭୂତାନି । ଅହମଖିଳଂ ଜଗତ୍ ॥ ୩ ॥

ବେଦୋଽହମବେଦୋଽହମ୍ । ବିଦ୍ୟାହମବିଦ୍ୟାହମ୍ । ଅଜାହମନଜାହମ୍ । ଅଧଶ୍ଚୋର୍ଦ୍ଧ୍ୱଂ ଚ ତିର୍ଯ୍ୟକ୍ ଚାହମ୍ ॥ ୪ ॥

ଅହଂ ରୁଦ୍ରେଭିର୍ବସୁଭିଶ୍ଚରାମି । ଅହମାଦିତ୍ୟୈରୁତ ବିଶ୍ୱଦେବୈଃ । ଅହଂ ମିତ୍ରାବରୁଣାବୁଭୌ ବିଭର୍ମି । ଅହମିନ୍ଦ୍ରାଗ୍ନୀ ଅହମଶ୍ୱିନାବୁଭୌ ॥ ୫ ॥

ଅହଂ ସୋମଂ ତ୍ୱଷ୍ଟାରଂ ପୂଷଣଂ ଭଗଂ ଦଧାମି । ଅହଂ ବିଷ୍ଣୁମୁରୁକ୍ରମଂ ବ୍ରହ୍ମାଣମୁତ ପ୍ରଜାପତିଂ ଦଧାମି ॥ ୬ ॥

---

ମୁଁ ଆନନ୍ଦ ଏବଂ ଅନାନନ୍ଦରୂପା ଅଟେ । ମୁଁ ବିଜ୍ଞାନ ଏବଂ ଅବିଜ୍ଞାନରୂପା ଅଟେ । ନିଶ୍ଚିତଭାବରେ ଜ୍ଞାତବ୍ୟ ବ୍ରହ୍ମ ଏବଂ ଅବ୍ରହ୍ମ ମଧ୍ୟ ମୁଁ ଅଟେ । ପଞ୍ଚୀକୃତ ଓ ଅପଞ୍ଚୀକୃତ ମହାଭୂତ ମୁଁ ଅଟେ । ଏହି ସାରା ଦୃଶ୍ୟ ଜଗତ୍ ମୁଁ ଅଟେ ॥ ୩ ॥

ବେଦ ଓ ଅବେଦ ମୁଁ ଅଟେ । ବିଦ୍ୟା ଓ ଅବିଦ୍ୟା ମଧ୍ୟ ମୁଁ, ଅଜା ଓ ଅନଜା (ପ୍ରକୃତି ଏବଂ ତାହାଠାରୁ ଭିନ୍ନ) ବି ମୁଁ, ନିମ୍ନ ଓ ଉର୍ଦ୍ଧ୍ୱ, ଏପାଖ ଓ ସେପାଖ ସବୁ ହେଉଛି ମୁଁ ॥ ୪ ॥

ମୁଁ ରୁଦ୍ର ଓ ବସୁମାନଙ୍କ ରୂପରେ ସଞ୍ଚାର କରେ । ମୁଁ ଆଦିତ୍ୟ ଏବଂ ବିଶ୍ୱେଦେବଙ୍କ ରୂପରେ ବିଚରଣ କରେ । ମୁଁ ମିତ୍ର ଏବଂ ବରୁଣଙ୍କର, ଇନ୍ଦ୍ର ଏବଂ ଅଗ୍ନିଙ୍କର ଓ ଦୁଇ ଅଶ୍ୱିନୀକୁମାରଙ୍କର ଭରଣପୋଷଣ କରେ ॥ ୫ ॥

ମୁଁ ସୋମ, ତ୍ୱଷ୍ଟା, ପୂଷା ଏବଂ ଭଗକୁ ଧାରଣ କରେ । ତ୍ରୈଲୋକ୍ୟକୁ ଆକ୍ରାନ୍ତ କରିବା ପାଇଁ ବିସ୍ତୀର୍ଣ୍ଣ ପାଦକ୍ଷେପ କରୁଥିବା ବିଷ୍ଣୁଙ୍କୁ, ବ୍ରହ୍ମା ଏବଂ ପ୍ରଜାପତିଙ୍କୁ ମୁଁ ହିଁ ଧାରଣ କରେ ॥ ୬ ॥

---

କେଉଁଠି ଉଲ୍ଲେଖ କରାଯାଇ ନାହିଁ; ତଥାପି ଯଦି ସପ୍ତଶତୀ ସ୍ତୋତ୍ର ଆରମ୍ଭ କରିବା ପୂର୍ବରୁ ଏହାକୁ ପାଠ କରାଯାଏ; ତେବେ ବହୁତ ଲାଭ ହୋଇଥାଏ । ଏହି ଉଦ୍ଦେଶ୍ୟରେ ଆମ୍ଭେ ରାତ୍ରିସୂକ୍ତ ପରେ ଏହାକୁ ସମାବେଶ କରିଛୁ । ଜଗଦମ୍ବାଙ୍କ ଉପାସକ ଏହାଦ୍ୱାରା ସନ୍ତୁଷ୍ଟ ହେବେ ବୋଲି ମନେ କରାଯାଏ ।

ଅହଂ ଦଧାମି ଦ୍ରବିଣଂ ହବିଷ୍ମତେ ସୁପ୍ରାବ୍ୟେ ଯଜମାନାୟ ସୁନ୍ୱତେ । ଅହଂ ରାଷ୍ଟ୍ରୀ ସଙ୍ଗମନୀ ବସୂନାଂ ଚିକିତୁଷୀ ପ୍ରଥମା ଯଜ୍ଞିୟାନାମ୍ । ଅହଂ ସୁବେ ପିତରମସ୍ୟ ମୂର୍ଧନ୍ମମ ଯୋନିରପ୍ସ୍ୱନ୍ତଃ ସମୁଦ୍ରେ । ଯ ଏବଂ ବେଦ । ସ ଦୈବୀଂ ସମ୍ପଦମାପ୍ନୋତି ॥ ୭ ॥

ତେ ଦେବା ଅବ୍ରୁବନ୍—

ନମୋ ଦେବ୍ୟୈ ମହାଦେବ୍ୟୈ ଶିବାୟୈ ସତତଂ ନମଃ ।
ନମଃ ପ୍ରକୃତ୍ୟୈ ଭଦ୍ରାୟୈ ନିୟତାଃ ପ୍ରଣତାଃ ସ୍ମ ତାମ୍ ॥ ୮ ॥
ତାମଗ୍ନିବର୍ଣ୍ଣାଂ ତପସା ଜ୍ୱଲନ୍ତୀଂ ବୈରୋଚନୀଂ କର୍ମଫଲେଷୁ ଜୁଷ୍ଟାମ୍ ।
ଦୁର୍ଗାଂ ଦେବୀଂ ଶରଣଂ ପ୍ରପଦ୍ୟାମହେଽସୁରାନ୍ନାଶୟିତ୍ର୍ୟୈ ତେ ନମଃ ॥ ୯ ॥
ଦେବୀଂ ବାଚମଜନୟନ୍ତ ଦେବାସ୍ତାଂ ବିଶ୍ୱରୂପାଃ ପଶବୋ ବଦନ୍ତି ।
ସା ନୋ ମନ୍ଦ୍ରେଷମୂର୍ଜଂ ଦୁହାନା ଧେନୁର୍ବାଗସ୍ମାନୁପ ସୁଷ୍ଟୁତୈତୁ ॥ ୧୦ ॥

---

ଦେବତାମାନଙ୍କୁ ଉତ୍ତମ ହବି ପ୍ରଦାନ କରୁଥିବା ଏବଂ ସୋମରସ ନିଷ୍କାସନ କରୁଥିବା ଯଜମାନ ନିମନ୍ତେ ହବିର୍ଦ୍ରବ୍ୟଯୁକ୍ତ ଧନ ଧାରଣ କରେ । ମୁଁ ସମସ୍ତ ଜଗତ୍‌ର ଈଶ୍ୱରୀ, ଉପାସକମାନଙ୍କ ଧନଦାତ୍ରୀ, ବ୍ରହ୍ମରୂପ ଓ ଯଜନ କରିବାଯୋଗ୍ୟ ଦେବତାମାନଙ୍କ ମଧ୍ୟରେ ମୁଖ୍ୟ ଅଟେ । ମୁଁ ଆତ୍ମସ୍ୱରୂପ ଉପରେ ଆକାଶାଦି ନିର୍ମାଣ କରେ । ମୋ ସ୍ଥାନ ଆତ୍ମସ୍ୱରୂପକୁ ଧାରଣ କରୁଥିବା ବୁଦ୍ଧିବୃତ୍ତିରେ ରହିଛି । ଯିଏ ଏହିପ୍ରକାର ଜାଣେ; ସେ ଦୈବୀସମ୍ପତ୍ତି ଲାଭ କରେ ॥ ୭ ॥

ସେତେବେଳେ ସେହି ଦେବତାମାନେ କହିଲେ—"ଦେବୀଙ୍କୁ ନମସ୍କାର । ଗୁରୁଜନମାନଙ୍କୁ ନିଜ ନିଜ କର୍ତ୍ତବ୍ୟରେ ପ୍ରବୃତ୍ତ କରୁଥିବା କଲ୍ୟାଣକର୍ତ୍ତ୍ରୀଙ୍କୁ ସର୍ବଦା ନମସ୍କାର । ଗୁଣସାମ୍ୟାବସ୍ଥାରୂପିଣୀ ମଙ୍ଗଳମୟୀ ଦେବୀଙ୍କୁ ନମସ୍କାର । ନିୟମଯୁକ୍ତ ହୋଇ ଆମ୍ଭେ ତାଙ୍କୁ ପ୍ରଣାମ କରୁଛୁଁ ॥ ୮ ॥

ସେହି ଅଗ୍ନି ସମାନ ବର୍ଣ୍ଣଯୁକ୍ତା, ଜ୍ଞାନ ଦ୍ୱାରା ଉଜ୍ଜ୍ୱଳମୟୀ, ଦୀପ୍ତିମତୀ, କର୍ମଫଳପ୍ରାପ୍ତି ହେତୁ ସେବନୀୟା ଦୁର୍ଗାଦେବୀଙ୍କ ଠାରେ ଆମ୍ଭେ ଶରଣାଗତ ହେଉଛୁ । ଅସୁରମାନଙ୍କ ବିନାଶ କରୁଥିବା ହେ ଦେବି ! ତୁମ୍ଭଙ୍କୁ ନମସ୍କାର ॥ ୯ ॥

ପ୍ରାଣରୂପ ଦେବତାମାନେ ଯେଉଁ ପ୍ରକାଶମାନ ବୈଖରୀ ବାଣୀକୁ ଉତ୍ପନ୍ନ କଲେ, ତାହାଙ୍କୁ ଅନେକ ପ୍ରକାରର ପ୍ରାଣୀ କହନ୍ତି । ସେହି କାମଧେନୁତୁଲ୍ୟ ଆନନ୍ଦଦାୟକ ଏବଂ ଅନ୍ନ ତଥା ବଳପ୍ରଦାୟିନୀ ବାଗ୍‌ରୂପିଣୀ ଭଗବତୀ ଉତ୍ତମ ସ୍ତୁତିରେ ସନ୍ତୁଷ୍ଟ ହୋଇ ଆମ ସମୀପକୁ ଆସନ୍ତୁ ॥ ୧୦ ॥

କାଳରାତ୍ରୀଂ ବ୍ରହ୍ମସ୍ତୁତାଂ ବୈଷ୍ଣବୀଂ ସ୍କନ୍ଦମାତରମ୍ ।
ସରସ୍ୱତୀମଦିତିଂ ଦକ୍ଷଦୁହିତରଂ ନମାମଃ ପାବନାଂ ଶିବାମ୍ ॥ ୧୧ ॥
ମହାଲକ୍ଷ୍ମ୍ୟୈ ଚ ବିଦ୍ମହେ ସର୍ବଶକ୍ତ୍ୟୈ ଚ ଧୀମହି ।
ତନ୍ନୋ ଦେବୀ ପ୍ରଚୋଦୟାତ୍ ॥ ୧୨ ॥
ଅଦିତିର୍ହ୍ୟଜନିଷ୍ଟ ଦକ୍ଷ ଯା ଦୁହିତା ତବ ।
ତାଂ ଦେବା ଅନ୍ୱଜାୟନ୍ତ ଭଦ୍ରା ଅମୃତବନ୍ଧବଃ ॥ ୧୩ ॥
କାମୋ ଯୋନିଃ କମଳା ବଜ୍ରପାଣିର୍ଗୁହା ହସା ମାତରିଶ୍ୱାଭ୍ରମିନ୍ଦ୍ରଃ ।
ପୁନର୍ଗୁହା ସକଳା ମାୟୟା ଚ ପୁରୂଚ୍ୟୈଷା ବିଶ୍ୱମାତାଦିବିଦ୍ୟୋମ୍ ॥ ୧୪ ॥

---

କାଳର ବିନାଶିନୀ, ବେଦମାନଙ୍କଦ୍ୱାରା ସ୍ତୁତ ହୋଇଥିବା ବିଷ୍ଣୁଶକ୍ତି, ସ୍କନ୍ଦମାତା (ଶିବଶକ୍ତି), ସରସ୍ୱତୀ (ବ୍ରହ୍ମଶକ୍ତି), ଦେବମାତା ଅଦିତି ଏବଂ ଦକ୍ଷକନ୍ୟା (ସତୀ), ପାପନାଶିନୀ କଲ୍ୟାଣକାରିଣୀ ଭଗବତୀଙ୍କୁ ଆମ୍ଭେ ପ୍ରଣାମ କରୁଛୁ ॥ ୧୧ ॥ ଆମ୍ଭେ ମହାଲକ୍ଷ୍ମୀଙ୍କୁ ଜାଣୁ ଏବଂ ସେହି ସର୍ବଶକ୍ତିରୂପିଣୀଙ୍କୁ ଧ୍ୟାନ କରୁଛୁ । ସେହି ଦେବୀ ଆମ୍ଭମାନଙ୍କୁ ସେହି ବିଷୟରେ (ଜ୍ଞାନ-ଧ୍ୟାନରେ) ପ୍ରବୃତ୍ତ କରନ୍ତୁ ॥ ୧୨ ॥ ହେ ଦକ୍ଷ ! ଆପଣଙ୍କ ଯେଉଁ କନ୍ୟା ଅଦିତି ଅଟନ୍ତି; ସେ ପ୍ରସୂତା ହୋଇଛନ୍ତି ଏବଂ ତାଙ୍କର ମୃତ୍ୟୁରହିତ କଲ୍ୟାଣମୟ ଦେବ ଉତ୍ପନ୍ନ ହୋଇଛନ୍ତି ॥ ୧୩ ॥ କାମ (କ), ଯୋନି(ଏ), କମଳା(ଈ), ବଜ୍ରପାଣି-ଇନ୍ଦ୍ର(ଲ), ଗୁହା(ହ୍ରୀଂ), ହ,ସ—ବର୍ଣ୍ଣ, ମାତରିଶ୍ୱା—ବାୟୁ(କ), ଅଭ୍ର(ହ), ଇନ୍ଦ୍ର(ଲ), ପୁନଃ ଗୁହା(ହ୍ରୀଂ), ସ,କ,ଳ—ବର୍ଣ୍ଣ ଏବଂ ମାୟା(ହ୍ରୀଂ)—ଏହି ସର୍ବାତ୍ମିକା ଜଗନ୍ମାତାଙ୍କ ମୂଳ ବିଦ୍ୟା ଅଟେ ଏବଂ ତାହା ବ୍ରହ୍ମରୂପିଣୀ ଅଟେ ॥ ୧୪ ॥

(ଶିବଶକ୍ତ୍ୟଭେଦରୂପା, ବ୍ରହ୍ମା-ବିଷ୍ଣୁ-ଶିବାତ୍ମିକା, ସରସ୍ୱତୀ-ଲକ୍ଷ୍ମୀ-ଗୌରୀରୂପା, ଅଶୁଦ୍ଧ-ମିଶ୍ର-ଶୁଦ୍ଧୋପାସନାତ୍ମିକା, ସମରସୀଭୂତ-ଶିବଶକ୍ତ୍ୟାତ୍ମକ ବ୍ରହ୍ମସ୍ୱରୂପର ନିର୍ବିକଳ୍ପ ଜ୍ଞାନପ୍ରଦାୟିନୀ, ସର୍ବତତ୍ତ୍ୱାତ୍ମିକା ମହାତ୍ରିପୁରସୁନ୍ଦରୀ—ଏହା ଏହି ମନ୍ତ୍ରର ଭାବାର୍ଥ ଅଟେ । ଏହି ମନ୍ତ୍ର ସମସ୍ତ ମନ୍ତ୍ରର ମୁକୁଟମଣି ଏବଂ ମନ୍ତ୍ରଶାସ୍ତ୍ରରେ ପଞ୍ଚଦଶୀ ଆଦି ଶ୍ରୀବିଦ୍ୟା ନାମରେ ପ୍ରସିଦ୍ଧ । ଏହାର ଛଅ ପ୍ରକାରର ଅର୍ଥ ଅର୍ଥାତ୍ ଭାବାର୍ଥ, ବାଚ୍ୟାର୍ଥ, ସମ୍ପ୍ରଦାୟାର୍ଥ, ଲୌକିକାର୍ଥ, ରହସ୍ୟାର୍ଥ ଏବଂ ତତ୍ତ୍ୱାର୍ଥ 'ନିତ୍ୟଷୋଡଶୀ-କାର୍ଣ୍ଣବ' ଗ୍ରନ୍ଥରେ କୁହାଯାଇଛି । ଏହିପ୍ରକାର 'ବରିବସ୍ୟାରହସ୍ୟ' ଆଦି ଗ୍ରନ୍ଥରେ ଏହାର ଆହୁରି ଅନେକ ଅର୍ଥ ଦିଆଯାଇଛି । ଶ୍ରୁତିରେ ମଧ୍ୟ ଏହି ମନ୍ତ୍ର ଏହିପ୍ରକାରରେ ଅର୍ଥାତ୍ କ୍ୱଚିତ୍ ସ୍ୱରୂପୋଚ୍ଚାର, କ୍ୱଚିତ୍ ଲକ୍ଷଣା ଏବଂ ଲକ୍ଷିତ ଲକ୍ଷଣାଦ୍ୱାରା ଏବଂ କେଉଁଠି ବର୍ଣ୍ଣର ପୃଥକ୍ ପୃଥକ୍ ଅବୟବ ଦର୍ଶାଇ ଜାଣି ଶୁଣି ବିଶୃଙ୍ଖଳା

ଏଷାଽଽତ୍ମଶକ୍ତିଃ । ଏଷା ବିଶ୍ୱମୋହିନୀ । ପାଶାଙ୍କୁଶଧନୁର୍ବାଣ-ଧରା । ଏଷା ଶ୍ରୀମହାବିଦ୍ୟା । ଯ ଏବଂ ବେଦ ସ ଶୋକଂ ତରତି ॥ ୧୫ ॥

ନମସ୍ତେ ଅସ୍ତୁ ଭଗବତି ମାତରସ୍ମାନ୍ ପାହି ସର୍ବତଃ ॥ ୧୬ ॥

ସୈଷାଷ୍ଟୌ ବସବଃ । ସୈଷୈକାଦଶ ରୁଦ୍ରାଃ । ସୈଷା ଦ୍ୱାଦଶାଦିତ୍ୟାଃ । ସୈଷା ବିଶ୍ୱେଦେବାଃ ସୋମପା ଅସୋମପାଶ୍ଚ । ସୈଷା ଯାତୁଧାନା ଅସୁରା ରକ୍ଷାଂସି ପିଶାଚ୍ଚ ଯକ୍ଷାଃ ସିଦ୍ଧାଃ । ସୈଷା ସତ୍ତ୍ୱରଜସ୍ତମାଂସି । ସୈଷା ବ୍ରହ୍ମବିଷ୍ଣୁରୁଦ୍ରରୂପିଣୀ । ସୈଷା ପ୍ରଜାପତୀନ୍ଦ୍ରମନବଃ । ସୈଷା ଗ୍ରହନକ୍ଷତ୍ରଜ୍ୟୋତୀଂଷି । କଳାକାଷ୍ଠାଦିକାଳରୂପିଣୀ । ତାମହଂ ପ୍ରଣୌମି ନିତ୍ୟମ୍ ॥

ପାପାପହାରିଣୀଂ ଦେବୀଂ ଭୁକ୍ତିମୁକ୍ତିପ୍ରଦାୟିନୀମ୍ ।
ଅନନ୍ତାଂ ବିଜୟାଂ ଶୁଦ୍ଧାଂ ଶରଣ୍ୟାଂ ଶିବଦାଂ ଶିବାମ୍ ॥ ୧୭ ॥

---

ରୂପରେ କୁହାଯାଇଛି । ଏହାଦ୍ୱାରା ଜଣାଯାଏ ଯେ ଏହି ମନ୍ତ୍ର କେତେ ଗୋପନୀୟ ଏବଂ ମହତ୍ତ୍ୱପୂର୍ଣ୍ଣ ଅଟେ ।)

ସେ ପରମାତ୍ମାଙ୍କର ଶକ୍ତି । ସେ ବିଶ୍ୱମୋହିନୀ ଅଟନ୍ତି । ସେ ପାଶ, ଅଙ୍କୁଶ, ଧନୁ ଏବଂ ଶର ଧାରଣ କରିଛନ୍ତି । ସେ 'ଶ୍ରୀମହାବିଦ୍ୟା' ଅଟନ୍ତି । ଯିଏ ଏପରି ଜାଣେ; ସେ ଶୋକକୁ ପାରି ହୋଇଯାଏ ॥ ୧୫ ॥ ହେ ଭଗବତୀ ! ତୁମ୍ଭଙ୍କୁ ନମସ୍କାର ଅଟେ । ହେ ମାତା ! ସବୁପ୍ରକାରରେ ଆମ୍ଭଙ୍କୁ ରକ୍ଷା କରନ୍ତୁ ॥ ୧୬ ॥

(ମନ୍ତ୍ରଦ୍ରଷ୍ଟା ଋଷି କହନ୍ତି,) ସେ ଏହି ଅଷ୍ଟ ବସୁ ଅଟନ୍ତି । ସେ ଏହି ଏକାଦଶ ରୁଦ୍ର ଅଟନ୍ତି । ସେ ଏହି ଦ୍ୱାଦଶ ଆଦିତ୍ୟ ଅଟନ୍ତି । ସେ ଏହି ସୋମପାନ କରୁଥିବା ଏବଂ ସୋମପାନ ନ କରୁଥିବା ବିଶ୍ୱେଦେବ । ସେ ଏହି ଯାତୁଧାନ (ଏକପ୍ରକାର ରାକ୍ଷସ), ଅସୁର, ରାକ୍ଷସ, ପିଶାଚ, ଯକ୍ଷ ଏବଂ ସିଦ୍ଧ ଅଟନ୍ତି । ସେ ଏହି ସତ୍ତ୍ୱ-ରଜ-ତମ । ସେ ଏହି ବ୍ରହ୍ମା-ବିଷ୍ଣୁ-ରୁଦ୍ରରୂପିଣୀ ଅଟନ୍ତି । ସେ ଏହି ପ୍ରଜାପତି-ଇନ୍ଦ୍ର-ମନୁ ଅଟନ୍ତି । ସେ ଏହି ଗ୍ରହ, ନକ୍ଷତ୍ର ଏବଂ ତାରାଗଣ ଅଟନ୍ତି । ସେ କଳାକାଷ୍ଠାଦି କାଳରୂପିଣୀ ଅଟନ୍ତି । ସେହି ପାପ-ନାଶକାରିଣୀ, ଭୋଗ-ମୋକ୍ଷପ୍ରଦାୟିନୀ, ଅନ୍ତରହିତ, ବିଜୟାଧିଷ୍ଠାତ୍ରୀ, ନିର୍ଦୋଷ, ଶରଣ ନେବାଯୋଗ୍ୟ, କଲ୍ୟାଣଦାତ୍ରୀ ଏବଂ ମଙ୍ଗଳରୂପିଣୀ ଦେବୀଙ୍କୁ ଆମେ ସର୍ବଦା ପ୍ରଣାମ କରୁଛୁ ॥ ୧୭ ॥

**ବିୟଦୀକାରସଂଯୁକ୍ତଂ ବୀତିହୋତ୍ରସମନ୍ୱିତମ୍ ।**
**ଅର୍ଧେନ୍ଦୁଲସିତଂ ଦେବ୍ୟା ବୀଜଂ ସର୍ବାର୍ଥସାଧକମ୍ ॥ ୧୮ ॥**
**ଏବମେକାକ୍ଷରଂ ବ୍ରହ୍ମ ଯତୟଃ ଶୁଦ୍ଧଚେତସଃ ।**
**ଧ୍ୟାୟନ୍ତି ପରମାନନ୍ଦମୟା ଜ୍ଞାନାମ୍ବୁରାଶୟଃ ॥ ୧୯ ॥**
**ବାଙ୍‌ମାୟା ବ୍ରହ୍ମସୂସ୍ତସ୍ମାତ୍ ଷଷ୍ଠଂ ବକ୍ତ୍ରସମନ୍ୱିତମ୍ ।**
**ସୂର୍ଯୋଽବାମଶ୍ରୋତ୍ରବିନ୍ଦୁସଂଯୁକ୍ତଷ୍ଟାତ୍ତୃତୀୟକଃ ।**
**ନାରାୟଣେନ ସମ୍ମିଶ୍ରୋ ବାୟୁଶ୍ଚାଧରଯୁକ୍ ତତଃ ।**
**ବିଚ୍ଚେ ନବାର୍ଣ୍ଣକୋଽର୍ଣ୍ଣଃ ସ୍ୟାନ୍ମହଦାନନ୍ଦଦାୟକଃ ॥ ୨୦ ॥**

---

ବିୟତ୍ ବା ଆକାଶ (ହ) ଯାହାକି 'ଈ'କାର ଯୁକ୍ତ ତଥା ବୀତିହୋତ୍ର ବା ଅଗ୍ନି (ର) ସମନ୍ୱିତ ଓ ଅର୍ଧଚନ୍ଦ୍ର (ँ) ଦ୍ୱାରା ଅଳଂକୃତ ଯେଉଁ ଦେବୀଙ୍କ ବୀଜ ଅଛି; ତାହା ସମସ୍ତ ମନୋରଥ ପୂର୍ଣ୍ଣ କରେ । ଏହିପରି ଭାବରେ ଏହି ଏକାକ୍ଷର ବ୍ରହ୍ମ (**ହ୍ରୀଂ**)କୁ ସେହି ଯତିମାନେ ଧ୍ୟାନ କରନ୍ତି, ଯାହାଙ୍କ ଚିତ୍ତ ଶୁଦ୍ଧ ଅଟେ; ଯିଏ ନିରତିଶୟାନନ୍ଦପୂର୍ଣ୍ଣ ଏବଂ ଜ୍ଞାନସାଗର ଅଟନ୍ତି । (ଏହି ମନ୍ତ୍ର ଦେବୀପ୍ରଣବ ରୂପେ ସ୍ୱୀକାର କରାଯାଇଛି । ଓଁକାର ସମାନ ଏହି ପ୍ରଣବ ହିଁ ବ୍ୟାପକ ଅର୍ଥରେ ପରିପୂର୍ଣ୍ଣ । ସଂକ୍ଷେପରେ ଏହାର ଅର୍ଥ ଇଚ୍ଛା-ଜ୍ଞାନ-କ୍ରିୟାର ଆଧାର, ଅଦ୍ୱୈତ, ଅଖଣ୍ଡ, ସଚ୍ଚିଦାନନ୍ଦ, ସମରସୀଭୂତ, ଶିବଶକ୍ତିସ୍ଫୁରଣ ଅଟେ) ॥ ୧୮-୧୯ ॥

ବାଣୀ (**ଐଁ**), ମାୟା (**ହ୍ରୀଂ**), ବ୍ରହ୍ମସୂ—କାମ (**କ୍ଲୀଂ**), ଏହାପରେ ଷଷ୍ଠ ବ୍ୟଞ୍ଜନ 'ଚ' ଯାହାକି ବକ୍ତ୍ର ବା ଆକାରଯୁକ୍ତ (ଅର୍ଥାତ୍ **ଚା**), ସୂର୍ଯ୍ୟ 'ମ' ଯାହାକି ଅବାମଶ୍ରୋତ୍ର (ଦକ୍ଷିଣ କର୍ଣ୍ଣ) 'ଉ' ଓ ବିନ୍ଦୁ (ଅନୁସ୍ୱାର) ସହ ସମନ୍ୱିତ (ଅର୍ଥାତ୍ **ମୁଂ**), ଟକାରର ତୃତୀୟ ଅକ୍ଷର 'ଡ' ଯାହାକି ନାରାୟଣ ବା 'ଆ'କାର ସମନ୍ୱିତ (ଅର୍ଥାତ୍ **ଡା**), ବାୟୁ (ୟ) ଯାହାକି ଅଧର ବା 'ଐ'କାର ଯୁକ୍ତ (ଅର୍ଥାତ୍ **ୟୈ**) ଏବଂ **ବିଚ୍ଚେ**—ଏହି ନବାର୍ଣ୍ଣ ମନ୍ତ୍ର ଉପାସକମାନଙ୍କୁ ଆନନ୍ଦ ଓ ବ୍ରହ୍ମସାଯୁଜ୍ୟ ପ୍ରଦାନ କରିଥାଏ ॥ ୨୦ ॥

(ଏହି ମନ୍ତ୍ରର ଅର୍ଥ—ହେ ଚିତ୍‌ସ୍ୱରୂପିଣୀ ମହାସରସ୍ୱତୀ ! ହେ ସଦ୍‌ରୂପିଣୀ ମହାଲକ୍ଷ୍ମୀ ! ହେ ଆନନ୍ଦରୂପିଣୀ ମହାକାଳୀ ! ବ୍ରହ୍ମବିଦ୍ୟାପ୍ରାପ୍ତି ନିମନ୍ତେ ଆମ୍ଭେ ସଦାସର୍ବଦା ତୁମ୍ଭଙ୍କୁ ଧ୍ୟାନ କରୁଛୁ । ହେ ମହାକାଳୀ-ମହାଲକ୍ଷ୍ମୀ-ମହାସରସ୍ୱତୀସ୍ୱରୂପିଣୀ ଚଣ୍ଡିକେ ! ତୁମ୍ଭଙ୍କୁ ନମସ୍କାର । ଅବିଦ୍ୟାରୂପ ରଜ୍ଜୁର ଦୃଢ଼ ଗ୍ରନ୍ଥିକୁ ଉନ୍ମୋଚନ କରି ମୋତେ ମୁକ୍ତ କର ।)

ହୃତ୍ପୁଣ୍ଡରୀକମଧ୍ୟସ୍ଥାଂ ପ୍ରାତଃସୂର୍ଯ୍ୟସମପ୍ରଭାମ୍ ।
ପାଶାଙ୍କୁଶଧରାଂ ସୌମ୍ୟାଂ ବରଦାଭୟହସ୍ତକାମ୍ ।
ତ୍ରିନେତ୍ରାଂ ରକ୍ତବସନାଂ ଭକ୍ତକାମଦୁଘାଂ ଭଜେ ॥ ୨୧ ॥
ନମାମି ତ୍ୱାଂ ମହାଦେବୀଂ ମହାଭୟବିନାଶିନୀମ୍ ।
ମହାଦୁର୍ଗପ୍ରଶମନୀଂ ମହାକାରୁଣ୍ୟରୂପିଣୀମ୍ ॥ ୨୨ ॥

ଯସ୍ୟାଃ ସ୍ୱରୂପଂ ବ୍ରହ୍ମାଦୟୋ ନ ଜାନନ୍ତି ତସ୍ମାଦୁଚ୍ୟତେ ଅଜ୍ଞେୟା । ଯସ୍ୟା ଅନ୍ତୋ ନ ଲଭ୍ୟତେ ତସ୍ମାଦୁଚ୍ୟତେ ଅନନ୍ତା । ଯସ୍ୟା ଲକ୍ଷ୍ୟଂ ନୋପଲକ୍ଷ୍ୟତେ ତସ୍ମାଦୁଚ୍ୟତେ ଅଲକ୍ଷ୍ୟା । ଯସ୍ୟା ଜନନଂ ନୋପଲଭ୍ୟତେ ତସ୍ମାଦୁଚ୍ୟତେ ଅଜା । ଏକୈବ ସର୍ବତ୍ର ବର୍ତ୍ତତେ ତସ୍ମାଦୁଚ୍ୟତେ ଏକା । ଏକୈବ ବିଶ୍ୱରୂପିଣୀ ତସ୍ମାଦୁଚ୍ୟତେ ନୈକା । ଅତ ଏବୋଚ୍ୟତେ ଅଜ୍ଞେୟାନନ୍ତାଲକ୍ଷ୍ୟାଜୈକା ନୈକେତି ॥ ୨୩ ॥

---

ହୃତ୍କମଳମଧ୍ୟରେ ଅବସ୍ଥାନ କରୁଥିବା, ପ୍ରାତଃକାଳୀନ ସୂର୍ଯ୍ୟସମାନ ପ୍ରଭାଯୁକ୍ତା, ପାଶ ଏବଂ ଅଙ୍କୁଶ ଧାରଣ କରିଥିବା, ମନୋହରରୂପଯୁକ୍ତା, ବରଦ ଏବଂ ଅଭୟମୁଦ୍ରା ଧାରଣ କରିଥିବା, ତ୍ରିନେତ୍ରଯୁକ୍ତା, ରକ୍ତବସ୍ତ୍ର ପରିଧାନ କରିଥିବା ଏବଂ କାମଧେନୁ ସଦୃଶ ଭକ୍ତମାନଙ୍କ ମନୋରଥ ପୂର୍ଣ୍ଣ କରୁଥିବା ଦେବୀଙ୍କୁ ମୁଁ ଭଜନ କରୁଛି ॥ ୨୧ ॥ ମହାଭୟକୁ ନାଶ କରୁଥିବା, ମହାସଙ୍କଟକୁ ଶାନ୍ତ କରୁଥିବା ଏବଂ ମହାନ୍ କରୁଣାର ସାକ୍ଷାତ୍ ମୂର୍ତ୍ତି ମହାଦେବୀ ତୁମ୍ଭଙ୍କୁ ମୁଁ ନମସ୍କାର କରୁଛି ॥ ୨୨ ॥

ଯାହାଙ୍କ ସ୍ୱରୂପକୁ ବ୍ରହ୍ମା ପ୍ରଭୃତି ଜାଣି ପାରନ୍ତି ନାହିଁ, ତାହାଙ୍କୁ ଅଜ୍ଞେୟା କହନ୍ତି । ଯାହାଙ୍କ ଅନ୍ତ ମିଳେ ନାହିଁ, ତାହାଙ୍କୁ ଅନନ୍ତା କୁହାଯାଏ । ଯାହାଙ୍କ ଲକ୍ଷ୍ୟ ଦେଖାଯାଏ ନାହିଁ, ତାହାଙ୍କୁ ଅଲକ୍ଷ୍ୟା କହନ୍ତି । ଯାହାଙ୍କ ଜନ୍ମ ଅବିଦିତ, ତାହାଙ୍କୁ ଅଜା କହନ୍ତି । ଯିଏ ଏକାକୀ ସର୍ବତ୍ର ବିଦ୍ୟମାନ, ତାହାଙ୍କୁ ଏକା କୁହାଯାଏ । ଯିଏ ଏକାକୀ ହିଁ ବିଶ୍ୱରୂପରେ ସଜ୍ଜିତା, ତାହାଙ୍କୁ ନୈକା କହନ୍ତି । ତେଣୁ ସେହି ମହାଦେବୀଙ୍କୁ ଅଜ୍ଞେୟା, ଅନନ୍ତା, ଅଲକ୍ଷ୍ୟା, ଅଜା, ଏକା ଏବଂ ନୈକା କୁହାଯାଏ ॥ ୨୩ ॥

ମନ୍ତ୍ରାଣାଂ ମାତୃକା ଦେବୀ ଶବ୍ଦାନାଂ ଜ୍ଞାନରୂପିଣୀ ।
ଜ୍ଞାନାନାଂ ଚିନ୍ମୟାତୀତା* ଶୂନ୍ୟାନାଂ ଶୂନ୍ୟସାକ୍ଷିଣୀ ।
ଯସ୍ୟାଃ ପରତରଂ ନାସ୍ତି ସୈଷା ଦୁର୍ଗା ପ୍ରକୀର୍ତ୍ତିତା ॥ ୨୪ ॥
ତାଂ ଦୁର୍ଗାଂ ଦୁର୍ଗମାଂ ଦେବୀଂ ଦୁରାଚାରବିଘାତିନୀମ୍ ।
ନମାମି ଭବଭୀତୋଽହଂ ସଂସାରାର୍ଣ୍ଣବତାରିଣୀମ୍ ॥ ୨୫ ॥

ଇଦମଥର୍ବଶୀର୍ଷଂ ଯୋଽଧୀତେ ସ ପଞ୍ଚାଥର୍ବଶୀର୍ଷଜପଫଲମାପ୍ନୋତି । ଇଦମଥର୍ବଶୀର୍ଷମଜ୍ଞାତ୍ୱା ଯୋଽର୍ଚ୍ଚାଂ ସ୍ଥାପୟତି—ଶତଲକ୍ଷଂ ପ୍ରଜପ୍ତ୍ୱାପି ସୋଽର୍ଚ୍ଚାସିଦ୍ଧିଂ ନ ବିନ୍ଦତି । ଶତମଷ୍ଟୋତ୍ତରଂ ଚାସ୍ୟ ପୁରଶ୍ଚର୍ଯ୍ୟାବିଧିଃ ସ୍ମୃତଃ । ଦଶବାରଂ ପଠେଦ୍ ଯସ୍ତୁ ସଦ୍ୟଃ ପାପୈଃ ପ୍ରମୁଚ୍ୟତେ । ମହାଦୁର୍ଗାଣି ତରତି ମହାଦେବ୍ୟାଃ ପ୍ରସାଦତଃ ॥ ୨୬ ॥

ସାୟମଧୀୟାନୋ ଦିବସକୃତଂ ପାପଂ ନାଶୟତି । ପ୍ରାତରଧୀୟାନୋ

---

ସବୁ ମନ୍ତ୍ରରେ 'ମାତୃକା' ବା ମୂଳାକ୍ଷର ରୂପରେ ରହୁଥିବା, ଶବ୍ଦରେ ଜ୍ଞାନ (ଅର୍ଥ) ରୂପରେ ରହୁଥିବା, ଜ୍ଞାନରେ 'ଚିନ୍ମୟାତୀତା', ଶୂନ୍ୟରେ 'ଶୂନ୍ୟସାକ୍ଷିଣୀ' ତଥା ଯାହାଙ୍କଠାରୁ ଆଉ କେହି ଶ୍ରେଷ୍ଠ ନାହିଁ; ସେ ଦୁର୍ଗା ନାମରେ ପ୍ରସିଦ୍ଧ ଅଟନ୍ତି ॥ ୨୪ ॥

ସେହି ଦୁର୍ବିଜ୍ଞେୟ, ଦୁରାଚାରନାଶକ ଏବଂ ସଂସାରସାଗରରୁ ପାରି କରୁଥିବା ଦୁର୍ଗାଦେବୀଙ୍କୁ ସଂସାରକୁ ଭୟ କରି ମୁଁ ନମସ୍କାର କରୁଛି ॥ ୨୫ ॥

ଏହି ଅଥର୍ବଶୀର୍ଷକୁ ଯିଏ ଅଧ୍ୟୟନ କରେ; ସେ ପାଞ୍ଚୋଟି ଅଥର୍ବଶୀର୍ଷ ଜପର ଫଳ ପ୍ରାପ୍ତ ହୁଏ । ଏହି ଅଥର୍ବଶୀର୍ଷକୁ ନ ଜାଣି ଯିଏ ପ୍ରତିମା ସ୍ଥାପନ କରେ; ସେ ଶତକୋଟି ଲକ୍ଷ ଥର ଜପ କରି ମଧ୍ୟ ଅର୍ଚ୍ଚାସିଦ୍ଧି ପ୍ରାପ୍ତ କରେ ନାହିଁ । ଅଷ୍ଟୋତ୍ତରଶତ (୧୦୮ ଥର) ଜପ (ଇତ୍ୟାଦି) ଏହାର ପୁରଶ୍ଚରଣବିଧି ଅଟେ । ଯିଏ ଏହାକୁ ଦଶ ଥର ପାଠ କରେ; ସେ ତତ୍‌କ୍ଷଣାତ୍ ପାପରୁ ମୁକ୍ତ ହୋଇଯାଏ ଏବଂ ମହାଦେବୀଙ୍କ ପ୍ରସାଦରୁ ଅତି ଦୁସ୍ତର ବିପଦରୁ ପାର ହୋଇଯାଏ ॥ ୨୬ ॥

ଏହାକୁ ସାୟଂକାଳରେ ଅଧ୍ୟୟନ କଲେ ଦିନରେ କରିଥିବା ସମସ୍ତ ପାପ ନାଶ ହୁଏ । ପ୍ରାତଃକାଳରେ ଅଧ୍ୟୟନ କଲେ ରାତ୍ରିରେ କରିଥିବା

---

* 'ଚିନ୍ମୟାନନ୍ଦା' ମଧ୍ୟ ଏକ ପାଠ ଅଟେ ଏବଂ ତାହା ଠିକ୍ ବୋଲି ଜଣାଯାଏ ।

**ରାତ୍ରିକୃତଂ ପାପଂ ନାଶୟତି । ସାୟଂ ପ୍ରାତଃ ପ୍ରଯୁଞ୍ଜାନୋ ଅପାପୋ ଭବତି । ନିଶୀଥେ ତୁରୀୟସଂଧ୍ୟାୟାଂ ଜପ୍ତ୍ୱା ବାକ୍‌ସିଦ୍ଧିର୍ଭବତି । ନୂତନାୟାଂ ପ୍ରତିମାୟାଂ ଜପ୍‌ତ୍ୱା ଦେବତାସାନ୍ନିଧ୍ୟଂ ଭବତି । ପ୍ରାଣ-ପ୍ରତିଷ୍ଠାୟାଂ ଜପ୍‌ତ୍ୱା ପ୍ରାଣାନାଂ ପ୍ରତିଷ୍ଠା ଭବତି । ଭୌମାଶ୍ୱିନ୍ୟାଂ ମହା-ଦେବୀସନ୍ନିଧୌ ଜପ୍‌ତ୍ୱା ମହାମୃତ୍ୟୁଂ ତରତି । ସ ମହାମୃତ୍ୟୁଂ ତରତି ଯ ଏବଂ ବେଦ । ଇତ୍ୟୁପନିଷତ୍ ॥**

ଓଓଓ

## ଅଥ ନବାର୍ଣ୍ଣବିଧିଃ

ଏହିପରି ରାତ୍ରିସୂକ୍ତ ଏବଂ ଦେବ୍ୟଥର୍ବଶୀର୍ଷକୁ ପାଠ କରିବାପରେ ନିମ୍ନଲିଖିତ ରୂପରେ ନବାର୍ଣ୍ଣମନ୍ତ୍ରର ବିନିଯୋଗ, ନ୍ୟାସ ଏବଂ ଧ୍ୟାନ ଆଦି କରିବା ଉଚିତ ।

**ଶ୍ରୀଗଣପତିର୍ଜୟତି । 'ଓଁ ଅସ୍ୟ ଶ୍ରୀନବାର୍ଣ୍ଣମନ୍ତ୍ରସ୍ୟ ବ୍ରହ୍ମବିଷ୍ଣୁରୁଦ୍ରା ଋଷୟଃ, ଗାୟତ୍ର୍ୟୁଷ୍ଣିଗନୁଷ୍ଟୁଭଶ୍ଛନ୍ଦାଂସି, ଶ୍ରୀମହାକାଳୀମହାଲକ୍ଷ୍ମୀମହାସରସ୍ୱତ୍ୟୋ ଦେବତାଃ, ଐଂ ବୀଜମ୍, ହ୍ରୀଂ ଶକ୍ତିଃ, କ୍ଲୀଂ କୀଲକମ୍, ଶ୍ରୀମହାକାଳୀମହାଲକ୍ଷ୍ମୀମହାସରସ୍ୱତୀ-ପ୍ରୀତ୍ୟର୍ଥେ ଜପେ ବିନିଯୋଗଃ ।'**

ଏହାକୁ ପାଠ କରି କିଛି ଜଳ ତଳେ ପକାଅ ।

ନିମ୍ନଲିଖିତ ନ୍ୟାସବାକ୍ୟଗୁଡ଼ିକମଧ୍ୟରୁ ଗୋଟିଏ ଗୋଟିଏ ଉଚ୍ଚାରଣ କରି ଦକ୍ଷିଣ ହସ୍ତର ଅଙ୍ଗୁଳିରେ କ୍ରମଶଃ ମସ୍ତକ, ମୁଖ, ହୃଦୟ, ଗୁଦା, ଦୁଇଟି ପାଦ ଏବଂ ନାଭି—ଏହି ଅଙ୍ଗଗୁଡ଼ିକୁ ସ୍ପର୍ଶ କରିବା ଉଚିତ ।

---

ପାପରାଶି ନାଶ ହୁଏ । ଉଭୟ ସମୟରେ ଅଧ୍ୟୟନ କଲେ ନିଷ୍ପାପ ହୁଏ । ମଧ୍ୟରାତ୍ରିରେ ତୁରୀୟ ସନ୍ଧ୍ୟା* ସମୟରେ ଜପ କରିବାଦ୍ୱାରା ବାକ୍‌ସିଦ୍ଧି ପ୍ରାପ୍ତ ହୁଏ । ନୂତନ ପ୍ରତିମା ସମ୍ମୁଖରେ ଜପ କରିବାଦ୍ୱାରା ଦୈବସାନ୍ନିଧ୍ୟ ପ୍ରାପ୍ତ ହୁଏ । ପ୍ରାଣପ୍ରତିଷ୍ଠା ସମୟରେ ଜପ କଲେ ପ୍ରାଣମାନଙ୍କର ପ୍ରତିଷ୍ଠା ହୁଏ । ଭୌମାଶ୍ୱିନୀ (ଅମୃତସିଦ୍ଧି) ଯୋଗରେ ମହାଦେବୀଙ୍କ ସନ୍ନିଧିରେ ଜପ କରିବାଦ୍ୱାରା ମହାମୃତ୍ୟୁରୁ ମୁକ୍ତି ମିଳିଯାଏ । ଯିଏ ଏହିଭାବରେ ଜାଣେ; ସେ ମହାମୃତ୍ୟୁରୁ ପାର ପାଇଯାଏ । ଏହିପ୍ରକାରେ ଏହା ଅବିଦ୍ୟାନାଶିନୀ ବ୍ରହ୍ମବିଦ୍ୟା ଅଟେ ।

---

* ଶ୍ରୀବିଦ୍ୟାର ଉପାସକମାନଙ୍କ ପାଇଁ ଚାରୋଟି ସଂଧ୍ୟା ଆବଶ୍ୟକ ହୁଏ । ସେଥିମଧ୍ୟରୁ ତୁରୀୟ ସନ୍ଧ୍ୟା ମଧ୍ୟରାତ୍ରିରେ ହୁଏ ।

## ଋଷ୍ୟାଦିନ୍ୟାସଃ

**ବ୍ରହ୍ମବିଷ୍ଣୁରୁଦ୍ରଋଷିଭ୍ୟୋ ନମଃ, ଶିରସି । ଗାୟତ୍ର୍ୟୁଷ୍ଣିଗନୁଷ୍ଟୁପ୍‌ଛନ୍ଦୋଭ୍ୟୋ ନମଃ, ମୁଖେ । ମହାକାଳୀମହାଲକ୍ଷ୍ମୀମହାସରସ୍ୱତୀଦେବତାଭ୍ୟୋ ନମଃ, ହୃଦି । ଐଂ ବୀଜାୟ ନମଃ, ଗୁହ୍ୟେ । ହ୍ରୀଂ ଶକ୍ତୟେ ନମଃ, ପାଦୟୋଃ । କ୍ଲୀଂ କୀଳକାୟ ନମଃ, ନାଭୌ ।**

**'ଓଁ ଐଂ ହ୍ରୀଂ କ୍ଲୀଂ ଚାମୁଣ୍ଡାୟୈ ବିଚ୍ଚେ'**—ଏହି ମୂଳ ମନ୍ତ୍ରଦ୍ୱାରା ହସ୍ତ ଶୁଦ୍ଧ କରି କରନ୍ୟାସ କରିବା ଉଚିତ ।

## କରନ୍ୟାସଃ

କରନ୍ୟାସଦ୍ୱାରା ହସ୍ତର ବିଭିନ୍ନ ଆଙ୍ଗୁଳି, ପାପୁଲି ଏବଂ ହସ୍ତର ପୃଷ୍ଠଭାଗରେ ମନ୍ତ୍ରକୁ ନ୍ୟାସ (ସ୍ଥାପନ) କରାଯାଏ । ଏହିପ୍ରକାର ଅଙ୍ଗନ୍ୟାସରେ ହୃଦୟାଦି ଅଙ୍ଗରେ ମନ୍ତ୍ରଗୁଡ଼ିକୁ ସ୍ଥାପନ କରାଯାଏ । ମନ୍ତ୍ରଗୁଡ଼ିକୁ ଚେତନ ଏବଂ ମୂର୍ତ୍ତିମାନ୍ ସ୍ୱୀକାର କରି ସେହି ସେହି ଅଙ୍ଗଗୁଡ଼ିକର ନାମ ନେଇ ସେହି ମନ୍ତ୍ରମୟ ଦେବତାମାନଙ୍କୁ ହିଁ ସ୍ପର୍ଶ ଏବଂ ବନ୍ଦନା କରାଯାଏ । ଏହା କରିବାଦ୍ୱାରା ପାଠ ବା ଜପ କରୁଥିବା ବ୍ୟକ୍ତି ସ୍ୱୟଂ ମନ୍ତ୍ରମୟ ହୋଇ ମନ୍ତ୍ର-ଦେବତାମାନଙ୍କଦ୍ୱାରା ସର୍ବଥା ସୁରକ୍ଷିତ ହୁଅନ୍ତି । ତାଙ୍କର ବାହାର ଓ ଭିତରର ଶୁଦ୍ଧି ହୁଏ, ଦିବ୍ୟ ବଳ ପ୍ରାପ୍ତ ହୁଏ ଏବଂ ସାଧନା ନିର୍ବିଘ୍ନତାପୂର୍ବକ ପୂର୍ଣ୍ଣ ହେବା ସହିତ ପରମ ଲାଭଦାୟକ ହୁଏ ।

**ଓଁ ଐଂ ଅଙ୍ଗୁଷ୍ଠାଭ୍ୟାଂ ନମଃ** (ଦୁଇହସ୍ତର ତର୍ଜନୀ ଆଙ୍ଗୁଠିଦ୍ୱାରା ଦୁଇ ବୃଦ୍ଧାଙ୍ଗୁଳିକୁ ସ୍ପର୍ଶ କର) ।

**ଓଁ ହ୍ରୀଂ ତର୍ଜନୀଭ୍ୟାଂ ନମଃ** (ଦୁଇହସ୍ତର ବୃଦ୍ଧାଙ୍ଗୁଳିଦ୍ୱାରା ଦୁଇଟି ତର୍ଜନୀ ଆଙ୍ଗୁଠିକୁ ସ୍ପର୍ଶ କର) ।

**ଓଁ କ୍ଲୀଂ ମଧ୍ୟମାଭ୍ୟାଂ ନମଃ** (ବୃଦ୍ଧାଙ୍ଗୁଳିଦ୍ୱାରା ମଧ୍ୟମାଙ୍ଗୁଳିକୁ ସ୍ପର୍ଶ କର) ।

**ଓଁ ଚାମୁଣ୍ଡାୟୈ ଅନାମିକାଭ୍ୟାଂ ନମଃ** (ଅନାମିକା ଆଙ୍ଗୁଠିକୁ ସ୍ପର୍ଶ କର) ।

**ଓଁ ବିଚ୍ଚେ କନିଷ୍ଠିକାଭ୍ୟାଂ ନମଃ** (କନିଷ୍ଠ ଅଙ୍ଗୁଳିକୁ ସ୍ପର୍ଶ କର) ।

**ଓଁ ଐଂ ହ୍ରୀଂ କ୍ଲୀଂ ଚାମୁଣ୍ଡାୟୈ ବିଚ୍ଚେ କରତଳକରପୃଷ୍ଠାଭ୍ୟାଂ ନମଃ** (ପାପୁଲି ଏବଂ ସେମାନଙ୍କର ପୃଷ୍ଠଭାଗକୁ ପରସ୍ପର ସ୍ପର୍ଶ କର) ।

## ହୃଦୟାଦିନ୍ୟାସଃ

ଏଥିରେ ଦକ୍ଷିଣ ହସ୍ତର ପାଞ୍ଚୋଟି ଆଙ୍ଗୁଠି ଦ୍ୱାରା 'ହୃଦୟ' ଆଦି ଅଙ୍ଗକୁ ସ୍ପର୍ଶ କରାଯାଏ ।

**ଓଁ ଐଂ ହୃଦୟାୟ ନମଃ** (ଦକ୍ଷିଣ ହସ୍ତର ପାଞ୍ଚୋଟି ଆଙ୍ଗୁଳିଦ୍ୱାରା ହୃଦୟକୁ ସ୍ପର୍ଶ କର) ।

**ଓଁ ହ୍ରୀଂ ଶିରସେ ସ୍ୱାହା** (ମସ୍ତକକୁ ସ୍ପର୍ଶ କର) ।

**ଓଁ କ୍ଲୀଂ ଶିଖାୟୈ ବଷଟ୍** (ଶିଖାକୁ ସ୍ପର୍ଶ କର) ।

**ଓଁ ଚାମୁଣ୍ଡାୟୈ କବଚାୟ ହୁମ୍** (ଦକ୍ଷିଣ ହସ୍ତର ଆଙ୍ଗୁଳିରେ ବାମ କାନ୍ଧ ଓ ବାମ ହସ୍ତର ଆଙ୍ଗୁଳିରେ ଦକ୍ଷିଣ କାନ୍ଧକୁ ଏକ ସଙ୍ଗରେ ସ୍ପର୍ଶ କର) ।

**ଓଁ ବିଚ୍ଚେ ନେତ୍ରତ୍ରୟାୟ ବୌଷଟ୍** (ଦକ୍ଷିଣ ହସ୍ତର ଆଙ୍ଗୁଳିର ଅଗ୍ରଭାଗରେ ଉଭୟ ନେତ୍ର ଓ ଲଲାଟର ମଧ୍ୟଭାଗକୁ ସ୍ପର୍ଶ କର) ।

**ଓଁ ଐଂ ହ୍ରୀଂ କ୍ଲୀଂ ଚାମୁଣ୍ଡାୟୈ ବିଚ୍ଚେ ଅସ୍ତ୍ରାୟ ଫଟ୍ ।** (ଏହି ବାକ୍ୟ ପାଠ କରି ଦକ୍ଷିଣ ହସ୍ତକୁ ମସ୍ତକ ଉପର ଦେଇ ବାମ ଆଡୁ ପଛପଟକୁ ନେଇ ଦକ୍ଷିଣରୁ ଆଗଆଡ଼କୁ ଆଣ ଏବଂ ତର୍ଜନୀ ତଥା ମଧ୍ୟମା ଅଙ୍ଗୁଳିରେ ବାମହସ୍ତର ପାପୁଲି ଉପରେ ତାଳି ବଜାଅ ।)

## ଅକ୍ଷରନ୍ୟାସଃ

ନିମ୍ନାଙ୍କିତ ବାକ୍ୟକୁ ପଢ଼ି କ୍ରମଶଃ ଶିଖା ଆଦିକୁ ଦକ୍ଷିଣ ହସ୍ତର ଅଙ୍ଗୁଳିଗୁଡ଼ିକଦ୍ୱାରା ସ୍ପର୍ଶ କର ।

ଓଁ ଐଂ ନମଃ, **ଶିଖାୟାମ୍** । ଓଁ ହ୍ରୀଂ ନମଃ, **ଦକ୍ଷିଣନେତ୍ରେ** । ଓଁ କ୍ଲୀଂ ନମଃ, **ବାମନେତ୍ରେ** । ଓଁ ଚାଂ ନମଃ, **ଦକ୍ଷିଣକର୍ଣ୍ଣେ** । ଓଁ ମୁଂ ନମଃ, **ବାମକର୍ଣ୍ଣେ** । ଓଁ ଡାଂ ନମଃ, **ଦକ୍ଷିଣନାସାପୁଟେ** । ଓଁ ୟୈଂ ନମଃ, **ବାମନାସାପୁଟେ** । ଓଁ ବିଂ ନମଃ, **ମୁଖେ** । ଓଁ ଚ୍ଚେଂ ନମଃ, **ଗୁହ୍ୟେ** ।

ଏହିପରି ନ୍ୟାସ କରି ମୂଳ ମନ୍ତ୍ରଦ୍ୱାରା ଆଠଥର ବ୍ୟାପକ (ଦୁଇଟି ହସ୍ତଦ୍ୱାରା ମସ୍ତକରୁ ପାଦପର୍ଯ୍ୟନ୍ତ ସବୁ ଅଙ୍ଗକୁ) ସ୍ପର୍ଶ କରିବା ଉଚିତ । ପୁନଶ୍ଚ ପ୍ରତ୍ୟେକ ଦିଗରେ ଚୁଟୁକି ମାରି ନ୍ୟାସ କରିବା ଉଚିତ ।

## ଦିଙ୍ନ୍ୟାସଃ

ଓଁ ଐଂ ପ୍ରାଚ୍ୟୈ ନମଃ । ଓଁ ଐଂ ଆଗ୍ନେୟ୍ୟୈ ନମଃ । ଓଁ ହ୍ରୀଂ ଦକ୍ଷିଣାୟୈ ନମଃ । ଓଁ ହ୍ରୀଂ ନୈର୍ଋତ୍ୟୈ ନମଃ । ଓଁ କ୍ଲୀଂ ପ୍ରତୀଚ୍ୟୈ ନମଃ । ଓଁ କ୍ଲୀଂ ବାୟବ୍ୟୈ ନମଃ । ଓଁ ଚାମୁଣ୍ଡାୟୈ ଉଦୀଚ୍ୟୈ ନମଃ । ଓଁ ଚାମୁଣ୍ଡାୟୈ ଐଶାନ୍ୟୈ ନମଃ । ଓଁ ଐଂ ହ୍ରୀଂ କ୍ଲୀଂ ଚାମୁଣ୍ଡାୟୈ ବିଚ୍ଚେ ଊର୍ଦ୍ଧ୍ୱାୟୈ ନମଃ । ଓଁ ଐଂ ହ୍ରୀଂ କ୍ଲୀଂ ଚାମୁଣ୍ଡାୟୈ ବିଚ୍ଚେ ଭୂମ୍ୟୈ ନମଃ ।*

---

* ଏଠାରେ ପ୍ରଚଳିତ ପରମ୍ପରା ଅନୁସାରେ ନ୍ୟାସବିଧି ସଂକ୍ଷେପରେ ଦିଆଯାଇଛି । ଯେଉଁମାନେ ବିସ୍ତୃତଭାବରେ କରିବାକୁ ଚାହିଁବେ; ସେମାନେ ସାରସ୍ୱତନ୍ୟାସ,

## ଧ୍ୟାନମ୍

ଖଡ୍‌ଗଂ ଚକ୍ରଗଦେଷୁଚାପପରିଘାଞ୍ଛୂଲଂ ଭୁଶୁଣ୍ଡୀଂ ଶିରଃ
ଶଙ୍ଖଂ ସଂଦଧତୀଂ କରୈସ୍ତ୍ରିନୟନାଂ ସର୍ବାଙ୍ଗଭୂଷାବୃତାମ୍ ।
ନୀଳାଶ୍ମଦ୍ୟୁତିମାସ୍ୟପାଦଦଶକାଂ ସେବେ ମହାକାଳିକାଂ
ଯାମସ୍ତୌତ୍ସ୍ୱପିତେ ହରୌ କମଳଜୋ ହନ୍ତୁଂ ମଧୁଂ କୈଟଭମ୍ ॥ ୧ ॥*
ଅକ୍ଷସ୍ରକ୍‌ପରଶୁଂ ଗଦେଷୁକୁଳିଶଂ ପଦ୍ମଂ ଧନୁଷ୍କୁଣ୍ଡିକାଂ
ଦଣ୍ଡଂ ଶକ୍ତିମସିଂ ଚ ଚର୍ମ ଜଳଜଂ ଘଣ୍ଟାଂ ସୁରାଭାଜନମ୍ ।
ଶୂଳଂ ପାଶସୁଦର୍ଶନେ ଚ ଦଧତୀଂ ହସ୍ତୈଃ ପ୍ରସନ୍ନାନନାଂ
ସେବେ ସୈରିଭମର୍ଦ୍ଦିନୀମିହ ମହାଲକ୍ଷ୍ମୀଂ ସରୋଜସ୍ଥିତାମ୍ ॥ ୨ ॥ψ
ଘଣ୍ଟାଶୂଳହଳାନି ଶଙ୍ଖମୁସଳେ ଚକ୍ରଂ ଧନୁଃ ସାୟକଂ
ହସ୍ତାବ୍‌ଜୈର୍ଦ୍ଦଧତୀଂ ଘନାନ୍ତବିଳସଚ୍ଛୀତାଂଶୁତୁଲ୍ୟପ୍ରଭାମ୍ ।
ଗୌରୀଦେହସମୁଦ୍ଭବାଂ ତ୍ରିଜଗତାମାଧାରଭୂତାଂ ମହା-
ପୂର୍ବାମତ୍ର ସରସ୍ୱତୀମନୁଭଜେ ଶୁମ୍ଭାଦିଦୈତ୍ୟାର୍ଦ୍ଦିନୀମ୍ ॥ ୩ ॥✦

ପୁନଶ୍ଚ **'ଐଂ ହ୍ରୀଂ ଅକ୍ଷମାଳିକାୟୈ ନମଃ'** ଏହି ମନ୍ତ୍ରରେ ମାଳାର ପୂଜା କରି ପ୍ରାର୍ଥନା କରିବା ଉଚିତ ।

**ଓଁ ମାଂ ମାଳେ ମହାମାୟେ ସର୍ବଶକ୍ତିସ୍ୱରୂପିଣି ।**
**ଚତୁର୍ବର୍ଗସ୍ତ୍ୱୟି ନ୍ୟସ୍ତସ୍ତସ୍ମାନ୍ମେ ସିଦ୍ଧିଦା ଭବ ॥**
**ଓଁ ଅବିଘ୍ନଂ କୁରୁ ମାଳେ ତ୍ୱଂ ଗୃହ୍‌ଣାମି ଦକ୍ଷିଣେ କରେ ।**
**ଜପକାଳେ ଚ ସିଦ୍ଧ୍ୟର୍ଥଂ ପ୍ରସୀଦ ମମ ସିଦ୍ଧୟେ ॥**

**ଓଁ ଅକ୍ଷମାଳାଧିପତୟେ ସୁସିଦ୍ଧିଂ ଦେହି ଦେହି ସର୍ବମନ୍ତ୍ରାର୍ଥସାଧିନି ସାଧୟ ସାଧୟ ସର୍ବସିଦ୍ଧିଂ ପରିକଳ୍ପୟ ପରିକଳ୍ପୟ ମେ ସ୍ୱାହା ।**

ତା'ପରେ **'ଓଁ ଐଂ ହ୍ରୀଂ କ୍ଲୀଂ ଚାମୁଣ୍ଡାୟୈ ବିଚ୍ଚେ'** ଏହି ମନ୍ତ୍ରକୁ ୧୦୮ ଥର ଜପ କର ଏବଂ ଶେଷରେ ଗୁହ୍ୟସ୍ଥାନେ ଜଳ ଧରି—

---

ମାତୃକାଗଣନ୍ୟାସ, ଷଡ୍‌ଦେବୀନ୍ୟାସ, ବ୍ରହ୍ମାଦିନ୍ୟାସ, ମହାଲକ୍ଷ୍ମ୍ୟାଦିନ୍ୟାସ, ବୀଜମନ୍ତ୍ରନ୍ୟାସ, ବିଲୋମବୀଜନ୍ୟାସ, ମନ୍ତ୍ରବ୍ୟାପ୍ତିନ୍ୟାସ ଆଦି ବିଭିନ୍ନ ପ୍ରକାରର ନ୍ୟାସ ମଧ୍ୟ କରିପାରନ୍ତି ।

* ଏହାର ଅର୍ଥ ସପ୍ତଶତୀର ପ୍ରଥମ ଅଧ୍ୟାୟର ଆରମ୍ଭ (ପୃଷ୍ଠା ୫୯)ରେ ରହିଛି ।

ψ ଏହାର ଅର୍ଥ ସପ୍ତଶତୀର ଦ୍ୱିତୀୟ ଅଧ୍ୟାୟର ଆରମ୍ଭ (ପୃ. ୭୫)ରେ ରହିଛି ।

✦ ଏହାର ଅର୍ଥ ସପ୍ତଶତୀର ପଞ୍ଚମ ଅଧ୍ୟାୟର ଆରମ୍ଭ (ପୃ. ୧୦୯)ରେ ରହିଛି ।

ଗୁହ୍ୟାତିଗୁହ୍ୟଗୋପ୍ତ୍ରୀ ତ୍ୱଂ ଗୃହାଣାସ୍ମତ୍କୃତଂ ଜପମ୍ ।
ସିଦ୍ଧିର୍ଭବତୁ ମେ ଦେବି ତ୍ୱତ୍ପ୍ରସାଦାନ୍ମହେଶ୍ୱରି ॥

ଏହି ଶ୍ଳୋକକୁ ପଢ଼ି ଦେବୀଙ୍କ ବାମ ହସ୍ତରେ ଜପ ନିବେଦନ କରିବା ଉଦ୍ଦେଶ୍ୟରେ ଜଳ ତଳେ ପକାଅ ।



## ସପ୍ତଶତୀନ୍ୟାସଃ

ଏହାପରେ ସପ୍ତଶତୀର ବିନିଯୋଗ, ନ୍ୟାସ ଏବଂ ଧ୍ୟାନ କରିବା ଉଚିତ । ନ୍ୟାସର ପ୍ରଣାଳୀ ପୂର୍ବବତ୍ ଅଟେ ।

ପ୍ରଥମମଧ୍ୟମୋତ୍ତରଚରିତ୍ରାଣାଂ ବ୍ରହ୍ମବିଷ୍ଣୁରୁଦ୍ରା ଋଷୟଃ, ଶ୍ରୀମହାକାଳୀ-ମହାଲକ୍ଷ୍ମୀମହାସରସ୍ୱତ୍ୟୋ ଦେବତାଃ, ଗାୟତ୍ର୍ୟୁଷ୍ଣିଗନୁଷ୍ଟୁଭଶ୍ଛନ୍ଦାଂସି, ନନ୍ଦା-ଶାକମ୍ଭରୀଭୀମାଃ ଶକ୍ତୟଃ, ରକ୍ତଦନ୍ତିକାଦୁର୍ଗାଭ୍ରାମର୍ଯ୍ୟୋ ବୀଜାନି, ଅଗ୍ନିବାୟୁ-ସୂର୍ଯ୍ୟାସ୍ତତ୍ତ୍ୱାନି, ଋଗ୍ୟଜୁଃସାମବେଦା ଧ୍ୟାନାନି, ସକଳକାମନାସିଦ୍ଧୟେ ଶ୍ରୀମହାକାଳୀ-ମହାଲକ୍ଷ୍ମୀମହାସରସ୍ୱତୀଦେବତାପ୍ରୀତ୍ୟର୍ଥେ ଜପେ ବିନିଯୋଗଃ ।

ଓଁ ଖଡ୍ଗିନୀ ଶୂଳିନୀ ଘୋରା ଗଦିନୀ ଚକ୍ରିଣୀ ତଥା ।
ଶଙ୍ଖିନୀ ଚାପିନୀ ବାଣଭୁଶୁଣ୍ଡୀପରିଘାୟୁଧା[୧] ॥ ଅଙ୍ଗୁଷ୍ଠାଭ୍ୟାଂ ନମଃ ।
ଓଁ ଶୂଳେନ ପାହି ନୋ ଦେବି ପାହି ଖଡ୍ଗେନ ଚାମ୍ବିକେ ।
ଘଣ୍ଟାସ୍ୱନେନ ନଃ ପାହି ଚାପଜ୍ୟାନିଃସ୍ୱନେନ ଚ ॥ ତର୍ଜନୀଭ୍ୟାଂ ନମଃ ।
ଓଁ ପ୍ରାଚ୍ୟାଂ ରକ୍ଷ ପ୍ରତୀଚ୍ୟାଂ ଚ ଚଣ୍ଡିକେ ରକ୍ଷ ଦକ୍ଷିଣେ ।
ଭ୍ରାମଣେନାତ୍ମଶୂଳସ୍ୟ ଉତ୍ତରସ୍ୟାଂ ତଥେଶ୍ୱରି ॥ ମଧ୍ୟମାଭ୍ୟାଂ ନମଃ ।
ଓଁ ସୌମ୍ୟାନି ଯାନି ରୂପାଣି ତ୍ରୈଲୋକ୍ୟେ ବିଚରନ୍ତି ତେ ।
ଯାନି ଚାତ୍ୟର୍ଥଘୋରାଣି ତୈ ରକ୍ଷାସ୍ମାଂସ୍ତଥା ଭୁବମ୍ ॥ ଅନାମିକାଭ୍ୟାଂ ନମଃ ।
ଓଁ ଖଡ୍ଗଶୂଳଗଦାଦୀନି ଯାନି ଚାସ୍ତ୍ରାଣି ତେଽମ୍ବିକେ ।
କରପଲ୍ଲବସଙ୍ଗୀନି ତୈରସ୍ମାନ୍ ରକ୍ଷ ସର୍ବତଃ ॥[୨] କନିଷ୍ଠିକାଭ୍ୟାଂ ନମଃ ।
ଓଁ ସର୍ବସ୍ୱରୂପେ ସର୍ବେଶେ ସର୍ବଶକ୍ତିସମନ୍ୱିତେ ।
ଭୟେଭ୍ୟସ୍ତ୍ରାହି ନୋ ଦେବି ଦୁର୍ଗେ ଦେବି ନମୋଽସ୍ତୁ ତେ[୩] ॥ କରତଳକରପୃଷ୍ଠାଭ୍ୟାଂ ନମଃ ।

ଓଁ ଖଡ୍ଗିନୀ ଶୂଳିନୀ ଘୋରା....—ହୃଦୟାୟ ନମଃ ।
ଓଁ ଶୂଳେନ ପାହି ନୋ ଦେବି....—ଶିରସେ ସ୍ୱାହା ।
ଓଁ ପ୍ରାଚ୍ୟାଂ ରକ୍ଷ ପ୍ରତୀଚ୍ୟାଂ ଚ....—ଶିଖାୟୈ ବଷଟ୍ ।
ଓଁ ସୌମ୍ୟାନି ଯାନି ରୂପାଣି....—କବଚାୟ ହୁମ୍ ।

---

୧. ଏହାର ଅର୍ଥ ପୃଷ୍ଠା ୭୧ରେ ରହିଛି । ୨. ଏହି ଚାରୋଟି ଶ୍ଳୋକର ଅର୍ଥ ୧୦୫-୧୦୬ରେ ରହିଛି । ୩. ଏହାର ଅର୍ଥ ପୃଷ୍ଠା ୧୬୪ରେ ରହିଛି ।

ଓଁ ଖଡ୍‌ଗଶୂଳଗଦାଦୀନି.....—ନେତ୍ରତ୍ରୟାୟ ବୌଷଟ୍ ।
ଓଁ ସର୍ବସ୍ୱରୂପେ ସର୍ବେଶେ.....—ଅସ୍ତ୍ରାୟ ଫଟ୍ ।

## ଧ୍ୟାନମ୍

**ବିଦ୍ୟୁଦ୍ଦାମସମପ୍ରଭାଂ ମୃଗପତିସ୍କନ୍ଧସ୍ଥିତାଂ ଭୀଷଣାଂ**
**କନ୍ୟାଭିଃ କରବାଳଖେଟବିଲସଦ୍ଧସ୍ତାଭିରାସେବିତାମ୍ ।**
**ହସ୍ତୈଶ୍ଚକ୍ରଗଦାସିଖେଟବିଶିଖାଂଶ୍ଚାପଂ ଗୁଣଂ ତର୍ଜନୀଂ**
**ବିଭ୍ରାଣାମନଳାତ୍ମିକାଂ ଶଶିଧରାଂ ଦୁର୍ଗାଂ ତ୍ରିନେତ୍ରାଂ ଭଜେଂ ॥**

ଏହାପରେ ପ୍ରଥମ ଚରିତ୍ରର ବିନିଯୋଗ ଏବଂ ଧ୍ୟାନ କରି 'ମାର୍କଣ୍ଡେୟ ଉବାଚ'ରୁ ସପ୍ତଶତୀ ପାଠ ଆରମ୍ଭ କରିବା ଉଚିତ । ପ୍ରତ୍ୟେକ ଚରିତ୍ରର ବିନିଯୋଗ ମୂଳ ସପ୍ତଶତୀ ସହିତ ହିଁ ଦିଆଯାଇଛି ତଥା ପ୍ରତ୍ୟେକ ଅଧ୍ୟାୟର ଆରମ୍ଭରେ ଅର୍ଥ ସହିତ ଧ୍ୟାନ ମଧ୍ୟ ଦିଆଯାଇଛି । ଏହି ପାଠ ଶ୍ରଦ୍ଧାପୂର୍ବକ ଭଗବତୀଙ୍କୁ ଧ୍ୟାନ କରି କରିବା ଉଚିତ । ମଧୁର ସ୍ୱର, ଅକ୍ଷରଗୁଡ଼ିକର ସ୍ପଷ୍ଟ ଉଚ୍ଚାରଣ, ପଦଗୁଡ଼ିକର ବିଭାଗ, ଉତ୍ତମ ସ୍ୱର, ଧୀରତା ଓ ଏକ ଲୟରେ ଗାନ କରିବା—ଏହି ସବୁ ପାଠକମାନଙ୍କର ଗୁଣ ଅଟେ ।[୨] ଯେଉଁ ବ୍ୟକ୍ତି ପାଠ କରିବା ସମୟରେ ରାଗପୂର୍ବକ ଗାନ କରେ; ତରବରରେ ଅସ୍ପଷ୍ଟ ଉଚ୍ଚାରଣ କରେ; ମସ୍ତକ ହଲାଏ; ସ୍ୱହସ୍ତଲିଖିତ ପୁସ୍ତକକୁ ପାଠ କରେ; ଅର୍ଥକୁ ଜାଣି ନ ଥାଏ ଏବଂ ଅଧାମନ୍ତ୍ର କଣ୍ଠସ୍ଥ କରେ; ସେ ପଠନକାରୀ ମଧ୍ୟରେ ଅଧମ ବୋଲି ସ୍ୱୀକାର କରାଯାଇଛି ।[୩] ଯେପର୍ଯ୍ୟନ୍ତ ଅଧ୍ୟାୟର ପୂର୍ତ୍ତି ନ ହୋଇଛି; ସେପର୍ଯ୍ୟନ୍ତ ମଧ୍ୟଭାଗରେ ପାଠ ବନ୍ଦ କରିବ ନାହିଁ । ଯଦି ପ୍ରମାଦବଶତଃ ଅଧ୍ୟାୟର ମଧ୍ୟଭାଗରେ ପାଠ ବିରାମ ହୋଇଯାଏ; ତେବେ ପୁନଃ ସେହି ଅଧ୍ୟାୟକୁ ସମ୍ପୂର୍ଣ୍ଣତଃ ପାଠ କରିବା ଉଚିତ ।[୪]

---

୧. ଏହାର ଅର୍ଥ ଦ୍ୱାଦଶ ଅଧ୍ୟାୟର ଆରମ୍ଭ(ପୃଷ୍ଠା ୧୭୧)ରେ ରହିଛି ।

୨. ମାଧୁର୍ଯ୍ୟମକ୍ଷରବ୍ୟକ୍ତିଃ ପଦଚ୍ଛେଦସ୍ତୁ ସୁସ୍ୱରଃ ।
ଧୈର୍ଯ୍ୟଂ ଲୟସମର୍ଥଂ ଚ ଷଡେତେ ପାଠକା ଗୁଣାଃ ॥

୩. ଗୀତୀ ଶୀଘ୍ରୀ ଶିରଃକମ୍ପୀ ତଥା ଲିଖିତପାଠକଃ ।
ଅନର୍ଥଜ୍ଞୋଽଳ୍ପକଣ୍ଠଶ୍ଚ ଷଡେତେ ପାଠକାଧମାଃ ॥

୪. ଯାବନ୍ନ ପୂର୍ଯ୍ୟତେଽଧ୍ୟାୟସ୍ତାବନ୍ନ ବିରମେତ୍ ପଠନ୍ ।
ଯଦି ପ୍ରମାଦାଦଧ୍ୟାୟେ ବିରାମୋ ଭବତି ପ୍ରିୟେ ।
ପୁନରଧ୍ୟାୟମାରଭ୍ୟ ପଠେତ୍ସର୍ବଂ ମୁହୁର୍ମୁହୁଃ ॥

ଅଜ୍ଞାନବଶତଃ ପୁସ୍ତକ ହସ୍ତରେ ଧରି ପାଠ କରିବାର ଫଳ ଅଧା ହୁଏ। ସ୍ତୋତ୍ର ପାଠ ମାନସିକ ନୁହେଁ; ବାଚିକ ହେବା ବିଧେୟ। ବାଣୀଦ୍ୱାରା ତାହାର ସ୍ପଷ୍ଟ ଉଚ୍ଚାରଣ ହିଁ ଉତ୍ତମ ବୋଲି ସ୍ୱୀକାର କରାଯାଇଛି।[୧] ଅତି ବଡ଼ ପାଟିରେ କହିବା ଏବଂ ପାଠ ସମୟରେ ବ୍ୟଗ୍ର ହେବା ଉଚିତ ନୁହେଁ। ଯତ୍ନପୂର୍ବକ ଶୁଦ୍ଧ ଏବଂ ସ୍ଥିରଚିତ୍ତରେ ପାଠ କରିବା ଉଚିତ।[୨] ପାଠ କଣ୍ଠସ୍ଥ ହୋଇ ନଥିଲେ ପୁସ୍ତକରୁ ପାଠ କର। ସ୍ୱହସ୍ତଲିଖିତ ଅଥବା ବ୍ରାହ୍ମଣେତର ପୁରୁଷଙ୍କ ଲିଖିତ ସ୍ତୋତ୍ର ପାଠ କରିବା ଅନୁଚିତ।[୩] ଯଦି ଏକ ସହସ୍ରରୁ ଅଧିକ ଶ୍ଳୋକଗୁଡ଼ିକର ବା ମନ୍ତ୍ରଗୁଡ଼ିକର ଗ୍ରନ୍ଥ ଥାଏ; ତେବେ ପୁସ୍ତକ ଦେଖି ପାଠ କରିବା ଉଚିତ। ଏହାଠାରୁ କମ୍ ଶ୍ଳୋକ ଥିଲେ ସେଗୁଡ଼ିକୁ କଣ୍ଠସ୍ଥ କରି ପୁସ୍ତକ ବିନା ପାଠ କରାଯାଇପାରେ।[୪] ଅଧ୍ୟାୟ ସମାପ୍ତ ହେବା ପରେ 'ଇତି', 'ବଧ', 'ଅଧ୍ୟାୟ' ଏବଂ 'ସମାପ୍ତ' ଶବ୍ଦ ଉଚ୍ଚାରଣ କରିବା ଉଚିତ ନୁହେଁ।[୫]



---

୧. ଅଜ୍ଞାନାତ୍ସ୍ଥାପିତେ ହସ୍ତେ ପାଠେ ହ୍ୟର୍ଧଫଳଂ ଧ୍ରୁବମ୍।
ନ ମାନସେ ପଠେତ୍ସ୍ତୋତ୍ରଂ ବାଚିକଂ ତୁ ପ୍ରଶସ୍ୟତେ ॥

୨. ଉଚ୍ଚୈଃ ପାଠଂ ନିଷିଦ୍ଧଂ ସ୍ୟାତ୍ ତ୍ୱରାଂ ଚ ପରିବର୍ଜୟେତ୍।
ଶୁଦ୍ଧେନାଚଳଚିତ୍ତେନ ପଠିତବ୍ୟଂ ପ୍ରଯତ୍ନତଃ ॥

୩. କଣ୍ଠସ୍ଥପାଠାଭାବେ ତୁ ପୁସ୍ତକୋପରି ବାଚୟେତ୍।
ନ ସ୍ୱୟଂ ଲିଖିତଂ ସ୍ତୋତ୍ରଂ ନାବ୍ରାହ୍ମଣଲିପିଂ ପଠେତ୍ ॥

୪. ପୁସ୍ତକେ ବାଚନଂ ଶସ୍ତଂ ସହସ୍ରାଦଧିକଂ ଯଦି।
ତତୋ ନ୍ୟୂନସ୍ୟ ତୁ ଭବେଦ୍ ବାଚନଂ ପୁସ୍ତକଂ ବିନା ॥

୫. ଅଧ୍ୟାୟ ସମାପ୍ତ ହେବାପରେ ଏପରି କହିବା ଉଚିତ—'ଶ୍ରୀମାର୍କଣ୍ଡେୟପୁରାଣେ ସାବର୍ଣ୍ଣିକେ ମନ୍ୱନ୍ତରେ ଦେବୀମାହାତ୍ମ୍ୟେ ପ୍ରଥମଃ ଓଁ ତତ୍ସତ୍।' ଏହିପ୍ରକାର 'ଦ୍ୱିତୀୟଃ', 'ତୃତୀୟଃ' ଆଦି କହି ସମାପ୍ତ କରିବା ଉଚିତ।



॥ ଶ୍ରୀଦୁର୍ଗାୟୈ ନମଃ ॥

# ଅଥ ଶ୍ରୀଦୁର୍ଗାସପ୍ତଶତୀ

## ପ୍ରଥମୋଽଧ୍ୟାୟଃ

[ରାଜା ସୁରଥ ଓ ସମାଧି ବୈଶ୍ୟଙ୍କୁ ଭଗବତୀଙ୍କ ମହିମା କହିବା ପ୍ରସଙ୍ଗରେ ମେଧା ଋଷି ମଧୁ-କୈଟଭ ବଧର ପ୍ରସଙ୍ଗ ବର୍ଣ୍ଣନା କରିବା]

### ବିନିଯୋଗଃ

ଓଁ ପ୍ରଥମଚରିତ୍ରସ୍ୟ ବ୍ରହ୍ମା ଋଷିଃ, ମହାକାଳୀ ଦେବତା, ଗାୟତ୍ରୀ ଛନ୍ଦଃ, ନନ୍ଦା ଶକ୍ତିଃ, ରକ୍ତଦନ୍ତିକା ବୀଜମ୍, ଅଗ୍ନିସ୍ତତ୍ତ୍ୱମ୍, ଋଗ୍‌ବେଦଃ ସ୍ୱରୂପମ୍, ଶ୍ରୀମହାକାଳୀପ୍ରୀତ୍ୟର୍ଥେ ପ୍ରଥମଚରିତ୍ରଜପେ ବିନିଯୋଗଃ ।

### ଧ୍ୟାନମ୍

ଓଁ ଖଡ୍‌ଗଂ ଚକ୍ରଗଦେଷୁଚାପପରିଘାଞ୍ଛୂଳଂ ଭୁଶୁଣ୍ଡୀଂ ଶିରଃ
ଶଙ୍ଖଂ ସଂଦଧତୀଂ କରୈସ୍ତ୍ରିନୟନାଂ ସର୍ବାଙ୍ଗଭୂଷାବୃତାମ୍ ।
ନୀଳାଶ୍ମଦ୍ୟୁତିମାସ୍ୟପାଦଦଶକାଂ ସେବେ ମହାକାଳିକାଂ
ଯାମସ୍ତୌତ୍‌ସ୍ୱପିତେ ହରୌ କମଲଜୋ ହନ୍ତୁଂ ମଧୁଂ କୈଟଭମ୍ ॥

---

ପ୍ରଥମ ଚରିତ୍ରର ବ୍ରହ୍ମା ଋଷି, ମହାକାଳୀ ଦେବତା, ଗାୟତ୍ରୀ ଛନ୍ଦ, ନନ୍ଦା ଶକ୍ତି, ରକ୍ତଦନ୍ତିକା ବୀଜ, ଅଗ୍ନି ତତ୍ତ୍ୱ ଏବଂ ଋଗ୍‌ବେଦ ସ୍ୱରୂପ ଅଟନ୍ତି । ଶ୍ରୀମହାକାଳୀ ଦେବତାଙ୍କ ପ୍ରସନ୍ନତା ନିମନ୍ତେ ପ୍ରଥମ ଚରିତ୍ରର ଜପରେ ବିନିଯୋଗ କରାଯାଏ ।

ଭଗବାନ୍ ବିଷ୍ଣୁ ଶୟନ କଲାପରେ ମଧୁ ଓ କୈଟଭକୁ ମାରିବା ନିମନ୍ତେ କମଳଜନ୍ମା ବ୍ରହ୍ମା ଯାହାଙ୍କୁ ସ୍ତବନ କରିଥିଲେ; ସେହି ମହାକାଳୀ ଦେବୀଙ୍କୁ ମୁଁ ସେବା କରୁଛି । ସେ ନିଜ ଦଶଟି ଭୁଜରେ ଖଡ୍‌ଗ, ଚକ୍ର, ଗଦା, ଶର, ଧନୁ, ପରିଘ, ଶୂଳ, ଭୁଶୁଣ୍ଡି, ମସ୍ତକ ଏବଂ ଶଙ୍ଖ ଧାରଣ କରିଛନ୍ତି । ତାଙ୍କର ତିନୋଟି ନେତ୍ର ରହିଛି । ସେ ସମସ୍ତ ଅଙ୍ଗରେ ଦିବ୍ୟ ଆଭୂଷଣଦ୍ୱାରା ବିଭୂଷିତା ଅଟନ୍ତି । ତାଙ୍କ ଶରୀରର କାନ୍ତି ନୀଳମଣିସଦୃଶ ଅଟେ ତଥା ସେ ଦଶମୁଖ ଓ ଦଶପାଦଯୁକ୍ତା ଅଟନ୍ତି ।

# ଓଁ ନମଶ୍ଚଣ୍ଡିକାୟୈ[1]

*'ଓଁ ଐଁ' ମାର୍କଣ୍ଡେୟ ଉବାଚ ॥ ୧ ॥*

**ସାବର୍ଣ୍ଣିଃ ସୂର୍ଯ୍ୟତନୟୋ ଯୋ ମନୁଃ କଥ୍ୟତେଽଷ୍ଟମଃ ।**
**ନିଶାମୟ ତଦୁତ୍ପତ୍ତିଂ ବିସ୍ତରାଦ୍ ଗଦତୋ ମମ ॥ ୨ ॥**
**ମହାମାୟାନୁଭାବେନ ଯଥା ମନ୍ୱନ୍ତରାଧିପଃ ।**
**ସ ବଭୂବ ମହାଭାଗଃ ସାବର୍ଣ୍ଣିସ୍ତନୟୋ ରବେଃ ॥ ୩ ॥**
**ସ୍ୱାରୋଚିଷେଽନ୍ତରେ ପୂର୍ବଂ ଚୈତ୍ରବଂଶସମୁଦ୍ଭବଃ ।**
**ସୁରଥୋ ନାମ ରାଜାଭୂତ୍ ସମସ୍ତେ କ୍ଷିତିମଣ୍ଡଳେ ॥ ୪ ॥**
**ତସ୍ୟ ପାଳୟତଃ ସମ୍ୟକ୍ ପ୍ରଜାଃ ପୁତ୍ରାନିବୌରସାନ୍ ।**
**ବଭୂବୁଃ ଶତ୍ରବୋ ଭୂପାଃ କୋଲାବିଧ୍ୱଂସିନସ୍ତଦା ॥ ୫ ॥**
**ତସ୍ୟ ତୈରଭବଦ୍ ଯୁଦ୍ଧମତିପ୍ରବଳଦଣ୍ଡିନଃ ।**

---

**ମାର୍କଣ୍ଡେୟ କହିଲେ**—॥ ୧ ॥ (ହେ କ୍ରୌଷ୍ଟୁକି ମୁନି !) ସୂର୍ଯ୍ୟଙ୍କ ପୁତ୍ର ସାବର୍ଣ୍ଣି, ଯାହାଙ୍କୁ 'ଅଷ୍ଟମ ମନୁ' ବୋଲି କୁହାଯାଏ; ତାଙ୍କର ଉତ୍ପତ୍ତି କଥା ବିସ୍ତାରପୂର୍ବକ କହୁଛି; ଶ୍ରବଣ କର ॥ ୨ ॥ ସୂର୍ଯ୍ୟକୁମାର ମହାଭାଗ ସାବର୍ଣ୍ଣି ଭଗବତୀ ମହାମାୟାଙ୍କ ଅନୁଗ୍ରହରୁ ଯେଉଁପ୍ରକାରେ ମନ୍ୱନ୍ତରର ସ୍ୱାମୀ ହେଲେ; ସେହି ପ୍ରସଙ୍ଗ ଶୁଣାଉଛି ॥ ୩ ॥ ପୂର୍ବକାଳର କଥା । ସ୍ୱାରୋଚିଷ ମନ୍ୱନ୍ତରରେ ଚୈତ୍ର ବଂଶରେ ଉତ୍ପନ୍ନ ସୁରଥ ନାମକ ଜଣେ ରାଜା ଥିଲେ । ତାଙ୍କର ସମସ୍ତ ଭୂମଣ୍ଡଳ ଉପରେ ଅଧିକାର ଥିଲା ॥ ୪ ॥ ସେ ପ୍ରଜାମାନଙ୍କୁ ନିଜ ଔରସ ପୁତ୍ରସଦୃଶ ଧର୍ମପୂର୍ବକ ପାଳନ କରୁଥିଲେ; ତଥାପି ସେହି ସମୟରେ କୋଲାବିଧ୍ୱଂସୀ[2] ନାମକ କ୍ଷତ୍ରିୟମାନେ ତାଙ୍କର ଶତ୍ରୁ ହୋଇଥିଲେ ॥ ୫ ॥

ରାଜା ସୁରଥଙ୍କ ଦଣ୍ଡନୀତି ଅତି କଠୋର ଥିଲା । ଶତ୍ରୁମାନଙ୍କ ସହିତ

---

୧. ଓଁ ଚଣ୍ଡୀଦେବୀଙ୍କୁ ନମସ୍କାର କରୁଛି ।

୨. 'କୋଲାବିଧ୍ୱଂସୀ' କୌଣସି ବିଶେଷ ବଂଶର କ୍ଷତ୍ରିୟଙ୍କର ସଂଜ୍ଞା ଅଟେ । ଦକ୍ଷିଣରେ 'କୋଲା' ନାମକ ଏକ ନଗରୀ ପ୍ରସିଦ୍ଧି ଲାଭ କରିଥିଲା । ତାହା ପ୍ରାଚୀନକାଳରେ ରାଜଧାନୀ ଥିଲା । ଯେଉଁ କ୍ଷତ୍ରିୟମାନେ ଆକ୍ରମଣ କରି ତାହାକୁ ଧ୍ୱଂସ କଲେ; ସେମାନଙ୍କୁ 'କୋଲାବିଧ୍ୱଂସୀ' କୁହାଯାଏ ।

ନ୍ୟୂନୈରପି ସ ତୈର୍ଯୁଦ୍ଧେ କୋଲାବିଧ୍ୱଂସିଭିର୍ଜିତଃ ॥ ୬ ॥
ତତଃ ସ୍ୱପୁରମାୟାତୋ ନିଜଦେଶାଧିପୋଽଭବତ୍ ।
ଆକ୍ରାନ୍ତଃ ସ ମହାଭାଗସ୍ତୈସ୍ତଦା ପ୍ରବଲାରିଭିଃ ॥ ୭ ॥
ଅମାତ୍ୟୈର୍ବଲିଭିର୍ଦୁଷ୍ଟୈର୍ଦୁର୍ବଲସ୍ୟ ଦୁରାତ୍ମଭିଃ ।
କୋଶୋ ବଲଂ ଚାପହୃତଂ ତତ୍ରାପି ସ୍ୱପୁରେ ତତଃ ॥ ୮ ॥
ତତୋ ମୃଗୟାବ୍ୟାଜେନ ହୃତସ୍ୱାମ୍ୟଃ ସ ଭୂପତିଃ ।
ଏକାକୀ ହୟମାରୁହ୍ୟ ଜଗାମ ଗହନଂ ବନମ୍ ॥ ୯ ॥
ସ ତତ୍ରାଶ୍ରମମଦ୍ରାକ୍ଷୀଦ୍ ଦ୍ୱିଜବର୍ଯ୍ୟସ୍ୟ ମେଧସଃ ।
ପ୍ରଶାନ୍ତଶ୍ୱାପଦାକୀର୍ଣ୍ଣଂ ମୁନିଶିଷ୍ୟୋପଶୋଭିତମ୍ ॥ ୧୦ ॥
ତସ୍ଥୌ କଞ୍ଚିତ୍ସ କାଲଂ ଚ ମୁନିନା ତେନ ସତ୍କୃତଃ ।
ଇତଶ୍ଚେତଶ୍ଚ ବିଚରଂସ୍ତସ୍ମିନ୍ମୁନିବରାଶ୍ରମେ ॥ ୧୧ ॥

---

ତାଙ୍କର ସଂଗ୍ରାମ ହେଲା । ଯଦିଓ କୋଲାବିଧ୍ୱଂସୀମାନେ ସଂଖ୍ୟାରେ ଅଳ୍ପ ଥିଲେ; ତଥାପି ରାଜା ସୁରଥଙ୍କୁ ସେମାନେ ଯୁଦ୍ଧରେ ପରାସ୍ତ କଲେ ॥ ୬ ॥ ସେତେବେଳେ ସେ ଯୁଦ୍ଧଭୂମିରୁ ନିଜ ନଗରକୁ ପ୍ରତ୍ୟାବର୍ତ୍ତନ କଲେ ଏବଂ କେବଳ ନିଜ ଦେଶରେ ରାଜା ହୋଇ ରହିଲେ । (ସମସ୍ତ ପୃଥିବୀରୁ ତାଙ୍କର ଅଧିକାର କମିବାରେ ଲାଗିଲା ।) କିନ୍ତୁ ସେଠାରେ ମଧ୍ୟ ସେହି ଯୋଦ୍ଧା ଶତ୍ରୁମାନେ ମହାଭାଗ ରାଜା ସୁରଥଙ୍କ ଉପରେ ଆକ୍ରମଣ କଲେ ॥ ୭ ॥

ରାଜାଙ୍କର ବଳ କ୍ଷୀଣ ହେଉଥିଲା । ତେଣୁ ତାଙ୍କର ଦୁଷ୍ଟ, ବଳବାନ୍ ଏବଂ ଦୁରାତ୍ମା ମନ୍ତ୍ରୀମାନେ ତାଙ୍କର ରାଜଧାନୀରେ ରାଜକୀୟ ସେନା ଏବଂ ରାଜକୋଷକୁ ଅଧିକାର କରିନେଲେ ॥ ୮ ॥ ସୁରଥଙ୍କ ପ୍ରଭୁତ୍ୱ ନଷ୍ଟ ହୋଇଗଲା । ତେଣୁ ସେ ଶିକାର କରିବା ଆଳରେ ଅଶ୍ୱାରୋହଣ କରି ସେଠାରୁ ଏକାକୀ ଏକ ଘଞ୍ଚ ଅରଣ୍ୟକୁ ଚାଲିଗଲେ ॥ ୯ ॥ ସେଠାରେ ସେ ବିପ୍ରବର ମେଧା ମୁନିଙ୍କ ଆଶ୍ରମକୁ ଦେଖିଲେ । ସେଠି କେତେପ୍ରକାର ହିଂସ୍ର ଜୀବ (ନିଜ ସ୍ୱାଭାବିକ ହିଂସାବୃତ୍ତି ପରିତ୍ୟାଗ କରି) ଖୁବ୍ ଶାନ୍ତ ଭାବରେ ରହୁଥିଲେ । ମୁନିଙ୍କ ଅନେକ ଶିଷ୍ୟ ସେହି ବନର ଶୋଭାକୁ ବର୍ଦ୍ଧନ କରୁଥିଲେ ॥ ୧୦ ॥ ସେଠାକୁ ଯିବା ପରେ ମୁନି ତାଙ୍କର ସତ୍କାର କଲେ ଏବଂ ସେ ମୁନିଶ୍ରେଷ୍ଠଙ୍କ ଆଶ୍ରମରେ ରହି ବିଭିନ୍ନ

ସୋଽଚିନ୍ତୟତ୍ତଦା ତତ୍ର ମମତ୍ୱାକୃଷ୍ଟଚେତନଃ[1] ।
ମତ୍ପୂର୍ବୈଃ ପାଳିତଂ ପୂର୍ବଂ ମୟା ହୀନଂ ପୁରଂ ହି ତତ୍ ॥ ୧୨ ॥
ମଦ୍ଭୃତ୍ୟୈସ୍ତୈରସଦ୍ବୃତ୍ତୈର୍ଧର୍ମତଃ ପାଲ୍ୟତେ ନ ବା ।
ନ ଜାନେ ସ ପ୍ରଧାନୋ ମେ ଶୂରହସ୍ତୀ ସଦାମଦଃ ॥ ୧୩ ॥
ମମ ବୈରିବଶଂ ଯାତଃ କାନ୍ ଭୋଗାନୁପଲପ୍ସ୍ୟତେ ।
ଯେ ମମାନୁଗତା ନିତ୍ୟଂ ପ୍ରସାଦଧନଭୋଜନୈଃ ॥ ୧୪ ॥
ଅନୁବୃତ୍ତିଂ ଧ୍ରୁବଂ ତେଽଦ୍ୟ କୁର୍ବନ୍ତ୍ୟନ୍ୟମହୀଭୃତାମ୍ ।
ଅସମ୍ୟଗ୍ବ୍ୟୟଶୀଳୈସ୍ତୈଃ କୁର୍ବଦ୍ଭିଃ ସତତଂ ବ୍ୟୟମ୍ ॥ ୧୫ ॥
ସଞ୍ଚିତଃ ସୋଽତିଦୁଃଖେନ କ୍ଷୟଂ କୋଶୋ ଗମିଷ୍ୟତି ।
ଏତଚ୍ଚାନ୍ୟଚ୍ଚ ସତତଂ ଚିନ୍ତୟାମାସ ପାର୍ଥିବଃ ॥ ୧୬ ॥
ତତ୍ର ବିପ୍ରାଶ୍ରମାଭ୍ୟାଶେ ବୈଶ୍ୟମେକଂ ଦଦର୍ଶ ସଃ ।
ସ ପୃଷ୍ଟସ୍ତେନ କସ୍ତ୍ୱଂ ଭୋ ହେତୁଶ୍ଚାଗମନେଽତ୍ର କଃ ॥ ୧୭ ॥

---

ସ୍ଥାନ ବିଚରଣ କରି କିଛି କାଳ କଟାଇ ଦେଲେ ॥ ୧୧ ॥ ପୁନଶ୍ଚ ମମତାରେ ଆକୃଷ୍ଟଚିତ୍ତ ହୋଇ ସେଠାରେ ଏହିପ୍ରକାର ଚିନ୍ତା କଲେ—''ପୂର୍ବକାଳରେ ମୋର ପୂର୍ବଜମାନେ ଯାହାକୁ ପାଳନ କରୁଥିଲେ; ସେହି ନଗର ଆଜି ମୋଠାରୁ ଦୂରେଇ ଯାଇଛି ॥ ୧୨ ॥ ଜଣାନାହିଁ, ମୋର ଦୁରାଗ୍ରହୀ ଭୃତ୍ୟଗଣ ତାହାକୁ ଧର୍ମପୂର୍ବକ ରକ୍ଷା କରୁଛନ୍ତି ବା କରୁନାହାନ୍ତି । ମୋର ସେହି ମହା ବଳବାନ୍ ମଦସ୍ରାବୀ ପ୍ରଧାନ ହସ୍ତୀ ବର୍ତ୍ତମାନ ଶତ୍ରୁମାନଙ୍କର ଅଧୀନ ହୋଇ କିଏ ଜାଣେ କେଉଁ ଭୋଗକୁ ଉପଭୋଗ କରୁଛି ? ଯେଉଁ ଲୋକମାନେ ମୋର କୃପା, ଧନ ଏବଂ ଭୋଜନ ପାଇବାଦ୍ୱାରା ସର୍ବଦା ମୋ ପଛେ ପଛେ ଗମନ କରୁଥିଲେ; ସେମାନେ ନିଶ୍ଚିତଭାବରେ ବର୍ତ୍ତମାନ ଅନ୍ୟ ରାଜାମାନଙ୍କୁ ଅନୁସରଣ କରୁଥିବେ । ସେହି ଅପବ୍ୟୟୀ ଲୋକଙ୍କଦ୍ୱାରା ସର୍ବଦା ଅଧିକ ବ୍ୟୟ ହେଉଥିବାରୁ ଅତ୍ୟନ୍ତ କଷ୍ଟରେ ସଞ୍ଚିତ ମୋର ସେହି ରାଜକୋଷ ରିକ୍ତ ହୋଇଯିବଣି ।'' ଏହି ସବୁ କଥା ସମେତ ଆହୁରି ଅନେକ ବିଷୟରେ ରାଜା ସୁରଥ ସର୍ବଦା ଚିନ୍ତା କରୁଥିଲେ ॥ ୧୩-୧୬ ॥ ଦିନେ ସେ ବିପ୍ରବର ମେଧାଙ୍କ ଆଶ୍ରମ ନିକଟରେ ଏକ ବୈଶ୍ୟକୁ ଦେଖିଲେ ଏବଂ ତାଙ୍କୁ ପଚ୍ଚରିଲେ—''ଭାଇ! ତୁମେ କିଏ ? ତୁମ୍ଭର

---

୧. ପାଠାନ୍ତର—ମମତ୍ୱାକୃଷ୍ଟମାନସଃ ।

ସଶୋକ ଇବ କସ୍ମାତ୍ତ୍ୱଂ ଦୁର୍ମନା ଇବ ଲକ୍ଷ୍ୟସେ ।
ଇତ୍ୟାକର୍ଣ୍ୟ ବଚସ୍ତସ୍ୟ ଭୂପତେଃ ପ୍ରଣୟୋଦିତମ୍ ॥ ୧୮ ॥
ପ୍ରତ୍ୟୁବାଚ ସ ତଂ ବୈଶ୍ୟଃ ପ୍ରଶ୍ରୟାବନତୋ ନୃପମ୍ ॥ ୧୯ ॥

*ବୈଶ୍ୟ ଉବାଚ ॥ ୨୦ ॥*

ସମାଧିର୍ନାମ ବୈଶ୍ୟୋଽହମୁତ୍ପନ୍ନୋ ଧନିନାଂ କୁଲେ ॥ ୨୧ ॥
ପୁତ୍ରଦାରୈର୍ନିରସ୍ତଶ୍ଚ ଧନଲୋଭାଦସାଧୁଭିଃ ।
ବିହୀନଶ୍ଚ ଧନୈର୍ଦାରୈଃ ପୁତ୍ରୈରାଦାୟ ମେ ଧନମ୍ ॥ ୨୨ ॥
ବନମଭ୍ୟାଗତୋ ଦୁଃଖୀ ନିରସ୍ତଶ୍ଚାପ୍ତବନ୍ଧୁଭିଃ ।
ସୋଽହଂ ନ ବେଦ୍ମି ପୁତ୍ରାଣାଂ କୁଶଳାକୁଶଳାତ୍ମିକାମ୍ ॥ ୨୩ ॥
ପ୍ରବୃତ୍ତିଂ ସ୍ୱଜନାନାଂ ଚ ଦାରାଣାଂ ଚାତ୍ର ସଂସ୍ଥିତଃ ।
କିଂ ନୁ ତେଷାଂ ଗୃହେ କ୍ଷେମମକ୍ଷେମଂ କିଂ ନୁ ସାମ୍ପ୍ରତମ୍ ॥ ୨୪ ॥
କଥଂ ତେ କିଂ ନୁ ସଦ୍‌ବୃତ୍ତା ଦୁର୍ବୃତ୍ତାଃ କିଂ ନୁ ମେ ସୁତାଃ ॥ ୨୫ ॥

*ରାଜୋବାଚ ॥ ୨୬ ॥*

ଯୈର୍ନିରସ୍ତୋ ଭବାଁଲ୍ଲୁବ୍ଧୈଃ ପୁତ୍ରଦାରାଦିଭିର୍ଧନୈଃ ॥ ୨୭ ॥

---

ଏଠାକୁ ଆସିବାର କାରଣ କଣ ? ତୁମ୍ଭେ କାହିଁକି ଶୋକଗ୍ରସ୍ତ ଏବଂ ଅନ୍ୟମନସ୍କ ଦେଖାଯାଉଛ ?'' ରାଜା ସୁରଥଙ୍କ ଏହି ଶ୍ରଦ୍ଧାପୂର୍ବକ ବଚନ ଶୁଣି ବୈଶ୍ୟ ବିନୀତ ଭାବରେ ତାଙ୍କୁ ପ୍ରଣାମ କରି କହିଲେ ॥ ୧୭—୧୯ ॥

**ବୈଶ୍ୟ କହିଲେ**—॥ ୨୦ ॥ ହେ ରାଜନ୍ ! ମୁଁ ଧନୀ କୁଳରେ ଉତ୍ପନ୍ନ ହୋଇଥିବା ଏକ ବୈଶ୍ୟ ଅଟେ । ମୋର ନାମ ସମାଧି ॥ ୨୧ ॥ ମୋର ଦୁଷ୍ଟ ସ୍ତ୍ରୀ-ପୁତ୍ରମାନେ ଧନଲୋଭରେ ମୋତେ ଘରୁ ବାହାର କରି ଦେଇଛନ୍ତି । ମୁଁ ଏହି ସମୟରେ ଧନ, ସ୍ତ୍ରୀ-ପୁତ୍ରମାନଙ୍କ ଠାରୁ ବଞ୍ଚିତ ହୋଇଛି । ମୋର ବିଶ୍ୱସନୀୟ ବନ୍ଧୁମାନେ ମୋ ଧନକୁ ନେଇ ମୋତେ ଦୂରେଇ ଦେଇଛନ୍ତି । ତେଣୁ ଅତ୍ୟନ୍ତ ଦୁଃଖସନ୍ତାପରେ ମୁଁ ବନରେ ବିଚରଣ କରୁଛି । ଏଠାରେ ରହି ମୋର ପୁତ୍ରମାନେ, ସ୍ତ୍ରୀ ଓ ସ୍ୱଜନମାନେ କୁଶଳରେ ଅଛନ୍ତି କି ନାହାନ୍ତି ଜାଣି ପାରୁନାହିଁ । ଏହି ସମୟରେ ଘରେ ସେମାନେ କୁଶଳରେ ଅଛନ୍ତି କି ଦୁଃଖରେ ଅଛନ୍ତି? ॥ ୨୨—୨୪ ॥ ପୁତ୍ରମାନେ କିପରି ଅଛନ୍ତି ? ସେମାନେ କଣ ସଦାଚାରୀ ଅଛନ୍ତି ଅଥବା ଦୁରାଚାରୀ ହୋଇଯାଇଛନ୍ତି ? ॥ ୨୫ ॥

**ରାଜା ପଚାରିଲେ**—॥ ୨୬ ॥ ଯେଉଁ ଲୋଭୀ ସ୍ତ୍ରୀ-ପୁତ୍ର ପ୍ରଭୃତି ଧନ

**ତେଷୁ କିଂ ଭବତଃ ସ୍ନେହମନୁବଧ୍ନାତି ମାନସମ୍ ॥ ୨୮ ॥**

*ବୈଶ୍ୟ ଉବାଚ ॥ ୨୯ ॥*

**ଏବମେତଦ୍ୟଥା ପ୍ରାହ ଭବାନସ୍ମଦ୍‌ଗତଂ ବଚଃ ॥ ୩୦ ॥**
**କିଂ କରୋମି ନ ବଧ୍ନାତି ମମ ନିଷ୍ଠୁରତାଂ ମନଃ ।**
**ଯୈଃ ସଂତ୍ୟଜ୍ୟ ପିତୃସ୍ନେହଂ ଧନଲୁବ୍ଧୈର୍ନିରାକୃତଃ ॥ ୩୧ ॥**
**ପତିସ୍ୱଜନହାର୍ଦ୍ଦଂ ଚ ହାର୍ଦ୍ଦି ତେଷ୍ୱେବ ମେ ମନଃ ।**
**କିମେତନ୍ନାଭିଜାନାମି ଜାନନ୍ନପି ମହାମତେ ॥ ୩୨ ॥**
**ଯତ୍‌ପ୍ରେମପ୍ରବଣଂ ଚିତ୍ତଂ ବିଗୁଣେଷ୍ୱପି ବନ୍ଧୁଷୁ ।**
**ତେଷାଂ କୃତେ ମେ ନିଃଶ୍ୱାସୋ ଦୌର୍ମନସ୍ୟଂ ଚ ଜାୟତେ ॥ ୩୩ ॥**
**କରୋମି କିଂ ଯନ୍ନ ମନସ୍ତେଷ୍ୱପ୍ରୀତିଷୁ ନିଷ୍ଠୁରମ୍ ॥ ୩୪ ॥**

*ମାର୍କଣ୍ଡେୟ ଉବାଚ ॥ ୩୫ ॥*

**ତତସ୍ତୌ ସହିତୌ ବିପ୍ର ତଂ ମୁନିଂ ସମୁପସ୍ଥିତୌ ॥ ୩୬ ॥**

---

ଯୋଗୁଁ ତୁମକୁ ଘରୁ ବାହାର କରିଦେଲେ; ସେମାନଙ୍କ ପ୍ରତି ମନରେ ଏତେ ସ୍ନେହରୂପକ ବନ୍ଧନ କାହିଁକି ଅଛି? ॥ ୨୭-୨୮॥

**ବୈଶ୍ୟ କହିଲେ**—॥ ୨୯ ॥ ଆପଣ ମୋବିଷୟରେ ଯେପରି କଥା କହୁଛନ୍ତି; ସେସବୁ ଠିକ୍ ॥ ୩୦ ॥ କିନ୍ତୁ କଣ କରିବା? ମୋର ମନ ଏତେ ନିଷ୍ଠୁର ହୋଇପାରୁ ନାହିଁ। ଯେଉଁମାନେ ଧନଲୋଭରେ ପଡ଼ି ପିତାଙ୍କ ପ୍ରତି ସ୍ନେହ, ପତିଙ୍କ ପ୍ରତି ପ୍ରେମ ତଥା ଆତ୍ମୀୟଜନଙ୍କ ପ୍ରତି ଅନୁରାଗକୁ ଜଳାଞ୍ଜଳି ଦେଇ ମୋତେ ଘରୁ ବାହାର କରିଦେଲେ; ସେମାନଙ୍କ ପ୍ରତି ମୋ ହୃଦୟରେ ଏତେ ସ୍ନେହ ଅଛି! ହେ ମହାମତେ! ଗୁଣହୀନ ବନ୍ଧୁମାନଙ୍କ ପ୍ରତି ମୋର ଚିତ୍ତ ଯେପରି ପ୍ରେମମଗ୍ନ ହେଉଛି; ତାହାର କାରଣ କଣ?—ଏହି କଥାକୁ ଜାଣି ମଧ୍ୟ ମୁଁ ଆଉ କିଛି ଭାବି ପାରୁ ନାହିଁ। ସେମାନଙ୍କ ଉପରେ ମୁଁ ଦୀର୍ଘ ନିଃଶ୍ୱାସ ପକାଉଛି ଏବଂ ମୋର ହୃଦୟ ଅତ୍ୟନ୍ତ ଦୁଃଖିତ ହେଉଛି ॥ ୩୧—୩୩ ॥ ସେହି ଲୋକମାନଙ୍କର ମୋ ପ୍ରତି ସ୍ନେହଶ୍ରଦ୍ଧା ନାହିଁ। ତଥାପି ସେମାନଙ୍କ ପ୍ରତି ମୋର ମନ ନିଷ୍ଠୁର ହୋଇ ପାରୁ ନାହିଁ। ଏଥିପାଇଁ ମୁଁ କ'ଣ କରିବି? ॥ ୩୪ ॥

**ମାର୍କଣ୍ଡେୟ କହିଲେ**—॥ ୩୫ ॥ ହେ ବ୍ରହ୍ମନ୍ ! ଏହାପରେ ରାଜାମାନଙ୍କ




सिद्धिदात्री

ସମାଧିର୍ନାମ ବୈଶ୍ୟୋଽସୌ ସ ଚ ପାର୍ଥିବସତ୍ତମଃ ।
କୃତ୍ୱା ତୁ ତୌ ଯଥାନ୍ୟାଯ୍ୟଂ ଯଥାର୍ହଂ ତେନ ସଂବିଦମ୍ ॥ ୩୭ ॥
ଉପବିଷ୍ଟୌ କଥାଃ କାଶ୍ଚିଚ୍ଚକ୍ରତୁର୍ବୈଶ୍ୟପାର୍ଥିବୌ ॥ ୩୮ ॥

*ରାଜୋବାଚ ॥ ୩୯ ॥*

ଭଗବଂସ୍ତ୍ୱାମହଂ ପ୍ରଷ୍ଟୁମିଚ୍ଛାମ୍ୟେକଂ ବଦସ୍ୱ ତତ୍ ॥ ୪୦ ॥
ଦୁଃଖାୟ ଯନ୍ମେ ମନସଃ ସ୍ୱଚିତ୍ତାୟତ୍ତତାଂ ବିନା ।
ମମତ୍ୱଂ ଗତରାଜ୍ୟସ୍ୟ ରାଜ୍ୟାଙ୍ଗେଷ୍ୱଖିଳେଷ୍ୱପି ॥ ୪୧ ॥
ଜାନତୋଽପି ଯଥାଜ୍ଞସ୍ୟ କିମେତନ୍ମୁନିସତ୍ତମ ।
ଅୟଂ ଚ ନିକୃତଃ[୧] ପୁତ୍ରୈର୍ଦାରୈର୍ଭୃତ୍ୟୈସ୍ତଥୋଜ୍ଝିତଃ ॥ ୪୨ ॥
ସ୍ୱଜନେନ ଚ ସଂତ୍ୟକ୍ତସ୍ତେଷୁ ହାର୍ଦୀ ତଥାପ୍ୟତି ।
ଏବମେଷ ତଥାହଂ ଚ ଦ୍ୱାବପ୍ୟତ୍ୟନ୍ତଦୁଃଖିତୌ ॥ ୪୩ ॥
ଦୃଷ୍ଟଦୋଷେଽପି ବିଷୟେ ମମତ୍ୱାକୃଷ୍ଟମାନସୌ ।

---

ମଧ୍ୟରେ ଶ୍ରେଷ୍ଠ ସୁରଥ ଏବଂ ସେହି ସମାଧି ନାମକ ବୈଶ୍ୟ ଦୁହେଁ ସଙ୍ଗେ ସଙ୍ଗେ ମେଧା ମୁନିଙ୍କ ସେବାରେ ଉପସ୍ଥିତ ହେଲେ ଏବଂ ତାଙ୍କ ସହିତ ଯଥାଯୋଗ୍ୟ ନ୍ୟାୟାନୁକୂଳ ବିନୟପୂର୍ଣ୍ଣ କଥାବାର୍ତ୍ତା କଲେ । ତା'ପରେ ବୈଶ୍ୟ ଓ ରାଜା କିଛି କଥୋପକଥନ କରିବାକୁ ଆରମ୍ଭ କଲେ ॥ ୩୬—୩୮ ॥

**ରାଜା କହିଲେ**—॥ ୩୯ ॥ ହେ ଭଗବନ୍ ! ମୁଁ ଆପଣଙ୍କୁ ଗୋଟିଏ କଥା ପଚ୍ଚରିବାକୁ ଚାହୁଁଛି । ତାହା ମୋତେ କହନ୍ତୁ ॥ ୪୦ ॥ ମୋ ଚିତ୍ତ ନିଜ ଅଧୀନରେ ନ ରହିବା ଯୋଗୁଁ ସେହି କଥା ମୋ ମନକୁ ବହୁତ ଦୁଃଖ ଦେଉଛି । ମୋ ହସ୍ତରୁ ଚ୍ଚାଲିଯାଇଥିବା ରାଜ୍ୟ ଏବଂ ତାହାର ପ୍ରତ୍ୟେକ ଅଂଶପ୍ରତି ମୋର ମମତା ରହିଛି ॥ ୪୧ ॥ ହେ ମୁନିଶ୍ରେଷ୍ଠ ! ତାହା ବର୍ତ୍ତମାନ ମୋର ନୁହେଁ ବୋଲି ଜାଣିଲେ ମଧ୍ୟ ଅଜ୍ଞାନୀ ସଦୃଶ ମୋତେ ସେଥିପାଇଁ ଦୁଃଖ କାହିଁକି ଲାଗୁଛି ? ଏଣେ ଏହି ବୈଶ୍ୟ ମଧ୍ୟ ଘରୁ ଅପମାନିତ ହୋଇ ବାହାରି ଆସିଛନ୍ତି । ତାଙ୍କର ପୁତ୍ର, ସ୍ତ୍ରୀ ଏବଂ ଭୃତ୍ୟମାନେ ତାଙ୍କୁ ପରିତ୍ୟାଗ କରିଛନ୍ତି ॥ ୪୨ ॥ ସ୍ୱଜନମାନେ ମଧ୍ୟ ତାଙ୍କୁ ପରିତ୍ୟାଗ କରିଛନ୍ତି । ତଥାପି ଏହାଙ୍କର ସେମାନଙ୍କ ପ୍ରତି ଅତି ହାର୍ଦ୍ଦିକ ସ୍ନେହ ରହିଛି । ଏହିପରି ଭାବରେ ସେ ତଥା ମୁଁ ଦୁଇଜଣଯାକ ବହୁତ ଦୁଃଖୀ ॥ ୪୩ ॥ ଯେଉଁଥିରେ ପ୍ରତ୍ୟକ୍ଷ ଦୋଷ ଦେଖାଯାଇଛି; ସେହି

---

୧. ପା.—ନିଷ୍କୃତଃ ।

ତତ୍କିମେତଂ[1]ନ୍ମହାଭାଗ ଯନ୍ମୋହୋ ଜ୍ଞାନିନୋରପି ॥ ୪୪ ॥
ମମାସ୍ୟ ଚ ଭବତ୍ୟେଷା ବିବେକାନ୍ଧସ୍ୟ ମୂଢତା ॥ ୪୫ ॥

*ଋଷିରୁବାଚ ॥ ୪୬ ॥*

ଜ୍ଞାନମସ୍ତି ସମସ୍ତସ୍ୟ ଜନ୍ତୋର୍ବିଷୟଗୋଚରେ ॥ ୪୭ ॥
ବିଷୟ[2]ଶ୍ଚ ମହାଭାଗ ଯାତି[3] ଚୈବଂ ପୃଥକ୍ ପୃଥକ୍ ।
ଦିବାନ୍ଧାଃ ପ୍ରାଣିନଃ କେଚିଦ୍ରାତ୍ରାବନ୍ଧାସ୍ତଥାପରେ ॥ ୪୮ ॥
କେଚିଦ୍ଦିବା ତଥା ରାତ୍ରୌ ପ୍ରାଣିନସ୍ତୁଲ୍ୟଦୃଷ୍ଟୟଃ ।
ଜ୍ଞାନିନୋ ମନୁଜାଃ ସତ୍ୟଂ କିଂ[4] ତୁ ତେ ନ ହି କେବଳମ୍ ॥ ୪୯ ॥
ଯତୋ ହି ଜ୍ଞାନିନଃ ସର୍ବେ ପଶୁପକ୍ଷିମୃଗାଦୟଃ ।
ଜ୍ଞାନଂ ଚ ତନ୍ମନୁଷ୍ୟାଣାଂ ଯତ୍ତେଷାଂ ମୃଗପକ୍ଷିଣାମ୍ ॥ ୫୦ ॥
ମନୁଷ୍ୟାଣାଂ ଚ ଯତ୍ତେଷାଂ ତୁଲ୍ୟମନ୍ୟତ୍ତଥୋଭୟୋଃ ।
ଜ୍ଞାନେଽପି ସତି ପଶ୍ୟୈତାନ୍ ପତଙ୍ଗାଞ୍ଛାବଚଞ୍ଚୁଷୁ ॥ ୫୧ ॥

ବିଷୟ ନିମନ୍ତେ ଆମ୍ଭ ମନରେ ମମତାଜନିତ ଆକର୍ଷଣ ସୃଷ୍ଟି ହେଉଛି । ହେ ମହାଭାଗ ! ଆମ୍ଭ ଦୁହିଁଙ୍କର ଧୀଶକ୍ତି ଅଛି । ତଥାପି ଆମ୍ଭ ମନରେ ଯେଉଁ ମୋହ ସୃଷ୍ଟି ହୋଇଛି; ତାହା କ'ଣ ? ବିବେକଶୂନ୍ୟ ପୁରୁଷ ସଦୃଶ ମୋଠାରେ ଏବଂ ତାଙ୍କଠାରେ ଏହି ମୂଢ଼ତା ପ୍ରତ୍ୟକ୍ଷ ଭାବରେ ଦେଖା ଦେଉଛି ॥ ୪୪-୪୫ ॥

**ଋଷି କହିଲେ**—॥ ୪୬ ॥ ହେ ମହାଭାଗ ! ବିଷୟମାର୍ଗର ଜ୍ଞାନ ସବୁ ଜୀବଙ୍କର ଥାଏ ॥ ୪୭ ॥ ଏହିପରି ବିଷୟ ମଧ୍ୟ ସମସ୍ତଙ୍କ ପାଇଁ ପୃଥକ୍ ଭାବେ ରହିଛି । କେତେକ ପ୍ରାଣୀ ଦିନରେ ଦେଖି ପାରନ୍ତି ନାହିଁ ଏବଂ ଆଉ କେତେକ ରାତିରେ ଦେଖି ପାରନ୍ତି ନାହିଁ ॥ ୪୮ ॥ ତଥା ଏପରି କେତେକ ଜୀବ ଅଛନ୍ତି; ଯେଉଁମାନେ ଉଭୟ ଦିନ ଓ ରାତିରେ ସମାନଭାବରେ ଦେଖି ପାରନ୍ତି । ମନୁଷ୍ୟକୁ ବୁଦ୍ଧିମାନ୍ ଭାବିବା ସମୀଚୀନ; କିନ୍ତୁ କେବଳ ମନୁଷ୍ୟମାନେ ଏପରି ନୁହଁନ୍ତି ॥ ୪୯ ॥ ପଶୁ, ପକ୍ଷୀ ଏବଂ ମୃଗ ଆଦି ସମସ୍ତ ପ୍ରାଣୀ ମଧ୍ୟ ବୁଦ୍ଧିମାନ୍ । ମନୁଷ୍ୟର ବୁଦ୍ଧି ମଧ୍ୟ ସେହି ମୃଗ ଓ ପକ୍ଷୀମାନଙ୍କ ପରି ହୋଇଥାଏ ॥ ୫୦ ॥ ତଥା ମନୁଷ୍ୟର ଯେପରି ବୁଦ୍ଧି ଥାଏ; ସେହି ମୃଗ ଓ ପକ୍ଷୀ ଆଦିଙ୍କର ବି

୧. ପା.—ତନ୍ମେନୈତ. । ୨. ପା.—ୟାଶ୍ଚ । ୩. ପା.—ଯାନ୍ତି । ୪. ପା.—କିଂନୁ ତେ ।

କଣମୋକ୍ଷାଦୃତାନ୍ମୋହାତ୍ପୀଡ୍ୟମାନାନପି କ୍ଷୁଧା ।
ମାନୁଷା ମନୁଜବ୍ୟାଘ୍ର ସାଭିଳାଷାଃ ସୁତାନ୍ ପ୍ରତି ॥ ୫୨ ॥
ଲୋଭାତ୍ପ୍ରତ୍ୟୁପକାରାୟ ନନ୍ୱେତାଂ[୧]ନ୍ କିଂ ନ ପଶ୍ୟସି ।
ତଥାପି ମମତାବର୍ତ୍ତେ ମୋହଗର୍ତ୍ତେ ନିପାତିତାଃ ॥ ୫୩ ॥
ମହାମାୟାପ୍ରଭାବେଣ ସଂସାରସ୍ଥିତିକାରିଣା[୨] ।
ତନ୍ନାତ୍ର ବିସ୍ମୟଃ କାର୍ଯ୍ୟୋ ଯୋଗନିଦ୍ରା ଜଗତ୍ପତେଃ ॥ ୫୪ ॥
ମହାମାୟା ହରେଶ୍ଚୈଷା[୩] ତୟା ସମ୍ମୋହ୍ୟତେ ଜଗତ୍ ।
ଜ୍ଞାନିନାମପି ଚେତାଂସି ଦେବୀ ଭଗବତୀ ହି ସା ॥ ୫୫ ॥
ବଳାଦାକୃଷ୍ୟ ମୋହାୟ ମହାମାୟା ପ୍ରଯଚ୍ଛତି ।
ତୟା ବିସୃଜ୍ୟତେ ବିଶ୍ୱଂ ଜଗଦେତଚ୍ଚରାଚରମ୍ ॥ ୫୬ ॥
ସୈଷା ପ୍ରସନ୍ନା ବରଦା ନୃଣାଂ ଭବତି ମୁକ୍ତୟେ ।
ସା ବିଦ୍ୟା ପରମା ମୁକ୍ତେର୍ହେତୁଭୂତା ସନାତନୀ ॥ ୫୭ ॥

ସେହିପରି ବୁଦ୍ଧି ଥାଏ । ଏହି ବୁଦ୍ଧି ଓ ଅନ୍ୟ କଥାରେ ବି ଉଭୟଙ୍କ ମଧ୍ୟରେ ପ୍ରାୟତଃ ସମାନତା ରହିଛି । ବୋଧଶକ୍ତି ଥିଲେ ମଧ୍ୟ ଏହି ପକ୍ଷୀମାନଙ୍କୁ ଦେଖ । ଏମାନେ ସ୍ୱୟଂ ଭୋକରେ ରହି ମଧ୍ୟ ମୋହବଶତଃ ତାଙ୍କ ଛୁଆମାନଙ୍କ ଥଣ୍ଟରେ କେତେ ଆଗ୍ରହରେ ଗ୍ରଉଳ ଓ ଅନ୍ନ ଦେଉଛନ୍ତି । ହେ ନରଶ୍ରେଷ୍ଠ ! ତୁମେ କ'ଣ ଦେଖି ପାରୁନାହଁ ଯେ ମନୁଷ୍ୟ ବୁଦ୍ଧିମାନ୍ ହେଲେ ମଧ୍ୟ ଲୋଭବଶତଃ ନିଜେ କରୁଥିବା ଉପକାରର ପ୍ରତ୍ୟୁପକାର ପୁତ୍ରମାନଙ୍କଠାରୁ ପାଇବା ପାଇଁ ଅଭିଳାଷ କରନ୍ତି । ଯଦ୍ୟପି ସେମାନେ ସବୁ ନିର୍ବୋଧ ନୁହଁନ୍ତି; ତଥାପି ସେମାନେ ସଂସାରରେ ସ୍ଥିତି (ଜନ୍ମମରଣର ପରମ୍ପରା) ବଜାୟ ରଖିଥିବା ଭଗବତୀ ମହାମାୟାଙ୍କ ପ୍ରଭାବରେ ମମତାମୟ ଭ୍ରମରଯୁକ୍ତ ମୋହର ଗଭୀର ଗାତରେ ପଡ଼ିଯାଇଛନ୍ତି । ତେଣୁ ଏଥିରେ ଆଶ୍ଚର୍ଯ୍ୟ ହେବା ଉଚିତ ନୁହେଁ । ଜଗଦୀଶ୍ୱର ଭଗବାନ୍ ବିଷ୍ଣୁଙ୍କ ଯୋଗନିଦ୍ରାରୂପା ଭଗବତୀ ମହାମାୟାଙ୍କ ଦ୍ୱାରା ଏହି ଜଗତ୍ ମୋହିତ ହେଉଅଛି । ସେହି ଭଗବତୀ ମହାମାୟା ଦେବୀ ଜ୍ଞାନୀମାନଙ୍କ ଚିତ୍ତକୁ ବି ବଳପୂର୍ବକ ଆକର୍ଷଣ କରି ମୋହରେ ନିକ୍ଷେପ କରନ୍ତି । ସେ ଏହି ସମସ୍ତ

୧. ପା.—ନନ୍ୱେତେ । ୨. ପା.—ରିଣଃ । ୩. ପା.—ଚୈତତ୍ ।

ସଂସାରବନ୍ଧହେତୁଶ୍ଚ ସୈବ ସର୍ବେଶ୍ୱରେଶ୍ୱରୀ ॥ ୫୮ ॥

*ରାଜୋବାଚ ॥ ୫୯ ॥*

ଭଗବନ୍ କା ହି ସା ଦେବୀ ମହାମାୟେତି ଯାଂ ଭବାନ୍ ॥ ୬୦ ॥
ବ୍ରବୀତି କଥମୁତ୍ପନ୍ନା ସା କର୍ମାସ୍ୟାଶ୍ଚ[୧] କିଂ ଦ୍ୱିଜ ।
ଯତ୍ପ୍ରଭାବା[୨] ଚ ସା ଦେବୀ ଯତ୍ସ୍ୱରୂପା ଯଦୁଦ୍ଭବା ॥ ୬୧ ॥
ତତ୍ସର୍ବଂ ଶ୍ରୋତୁମିଚ୍ଛାମି ତ୍ୱତ୍ତୋ ବ୍ରହ୍ମବିଦାଂ ବର ॥ ୬୨ ॥

*ଋଷିରୁବାଚ ॥ ୬୩ ॥*

ନିତ୍ୟୈବ ସା ଜଗନ୍ମୂର୍ତ୍ତିସ୍ତୟା ସର୍ବମିଦଂ ତତମ୍ ॥ ୬୪ ॥
ତଥାପି ତତ୍ସମୁତ୍ପତ୍ତିର୍ବହୁଧା ଶ୍ରୂୟତାଂ ମମ ।
ଦେବାନାଂ କାର୍ଯ୍ୟସିଦ୍ଧ୍ୟର୍ଥମାବିର୍ଭବତି ସା ଯଦା ॥ ୬୫ ॥

---

ଚରାଚର ଜଗତ୍କୁ ସୃଷ୍ଟି କରନ୍ତି ଏବଂ ସେ ପ୍ରସନ୍ନ ହେବା ମାତ୍ରକେ ମନୁଷ୍ୟମାନଙ୍କୁ ମୁକ୍ତି ନିମନ୍ତେ ବରଦାନ କରନ୍ତି । ସେ ହିଁ ପରା ବିଦ୍ୟା, ସଂସାର ବନ୍ଧନ ଏବଂ ମୋକ୍ଷର ହେତୁଭୂତା ସନାତନୀ ଦେବୀ ତଥା ସମସ୍ତ ଈଶ୍ୱରଙ୍କର ଅଧୀଶ୍ୱରୀ ଅଟନ୍ତି ॥ ୫୧—୫୮ ॥

**ରାଜା କହିଲେ**—॥ ୫୯ ॥ ହେ ଭଗବନ୍ ! ଯାହାକୁ ଆପଣ ମହାମାୟା କହନ୍ତି; ସେହି ଦେବୀ କିଏ ? ହେ ବ୍ରହ୍ମନ୍ ! ତାଙ୍କର ଆବିର୍ଭାବ କିପରି ହେଲା ତଥା ତାଙ୍କ ଲୀଳା ଚରିତ ସବୁ କ'ଣ ? ବ୍ରହ୍ମବେତ୍ତାମାନଙ୍କ ମଧ୍ୟରେ ଶ୍ରେଷ୍ଠ ହେ ମହର୍ଷେ ! ସେହି ଦେବୀଙ୍କ ପ୍ରଭାବ, ସ୍ୱରୂପ ଏବଂ ବିଭିନ୍ନପ୍ରକାର ଆବିର୍ଭାବ ବିଷୟରେ ଆପଣଙ୍କ ମୁଖରୁ ଶୁଣିବାକୁ ଚାହୁଁଛି ॥ ୬୦—୬୨ ॥

**ଋଷି କହିଲେ**—॥ ୬୩ ॥ ହେ ରାଜନ୍ ! ପ୍ରକୃତରେ ସେହି ଦେବୀ ନିତ୍ୟସ୍ୱରୂପା ଅଟନ୍ତି । ସମସ୍ତ ଜଗତ୍ ତାଙ୍କରି ରୂପ ଅଟେ ତଥା ସେ ସମସ୍ତ ବିଶ୍ୱକୁ ବ୍ୟାପ୍ତ କରି ରଖିଛନ୍ତି; ତଥାପି ତାଙ୍କର ପ୍ରାକଟ୍ୟ ଅନେକପ୍ରକାରରେ ହୁଏ । ତାହା ମୋଠାରୁ ଶୁଣ । ଯଦ୍ୟପି ସେ ନିତ୍ୟ ଓ ଅଜନ୍ମା; ତଥାପି ଯେତେବେଳେ ଦେବତାମାନଙ୍କର କାର୍ଯ୍ୟସିଦ୍ଧି କରିବାନିମନ୍ତେ ପ୍ରକଟ ହୁଅନ୍ତି; ସେତେବେଳେ

---

୧. ପା.—କର୍ମ ଚ୍ୟସ୍ୟାଶ୍ଚ । ୨. ପା.—ଯତ୍ସ୍ୱଭାବା ।

ଉତ୍ପନ୍ନେତି ତଦା ଲୋକେ ସା ନିତ୍ୟାପ୍ୟଭିଧୀୟତେ ।
ଯୋଗନିଦ୍ରାଂ ଯଦା ବିଷ୍ଣୁର୍ଜଗତ୍ୟେକାର୍ଣ୍ଣବୀକୃତେ ॥ ୬୬ ॥
ଆସ୍ତୀର୍ଯ୍ୟ ଶେଷମଭଜତ୍‌କଳ୍ପାନ୍ତେ ଭଗବାନ୍ ପ୍ରଭୁଃ ।
ତଦା ଦ୍ୱାବସୁରୌ ଘୋରୌ ବିଖ୍ୟାତୌ ମଧୁକୈଟଭୌ ॥ ୬୭ ॥
ବିଷ୍ଣୁକର୍ଣ୍ଣମଳୋଦ୍ଭୂତୌ ହନ୍ତୁଂ ବ୍ରହ୍ମାଣମୁଦ୍ୟତୌ ।
ସ ନାଭିକମଳେ ବିଷ୍ଣୋଃ ସ୍ଥିତୋ ବ୍ରହ୍ମା ପ୍ରଜାପତିଃ ॥ ୬୮ ॥
ଦୃଷ୍ଟ୍ୱା ତାବସୁରୌ ଚୋଗ୍ରୌ ପ୍ରସୁପ୍ତଂ ଚ ଜନାର୍ଦ୍ଦନମ୍ ।
ତୁଷ୍ଟାବ ଯୋଗନିଦ୍ରାଂ ତାମେକାଗ୍ରହୃଦୟସ୍ଥିତଃ ॥ ୬୯ ॥
ବିବୋଧନାର୍ଥାୟ ହରେର୍ହରିନେତ୍ରକୃତାଳୟାମ୍[୧] ।
ବିଶ୍ୱେଶ୍ୱରୀଂ ଜଗଦ୍ଧାତ୍ରୀଂ ସ୍ଥିତିସଂହାରକାରିଣୀମ୍ ॥ ୭୦ ॥
ନିଦ୍ରାଂ ଭଗବତୀଂ ବିଷ୍ଣୋରତୁଳାଂ ତେଜସଃ ପ୍ରଭୁଃ ॥ ୭୧ ॥

ସଂସାରରେ ଉତ୍ପନ୍ନ ହେଲେ ବୋଲି କୁହାଯାଏ । କଳ୍ପାନ୍ତରେ ଯେତେବେଳେ ସମସ୍ତ ଜଗତ୍ ଏକାର୍ଣ୍ଣବରେ ନିମଗ୍ନ ହେଉଥିଲା ଏବଂ ସମସ୍ତଙ୍କ ପ୍ରଭୁ ଭଗବାନ୍ ବିଷ୍ଣୁ ଶେଷନାଗ ନାମକ ଶଯ୍ୟା ବିଛାଇ ଯୋଗନିଦ୍ରାରେ ଶୟନ କରୁଥିଲେ; ସେହି ସମୟରେ ତାଙ୍କ କର୍ଣ୍ଣର ମଳିରୁ ଦୁଇଟି ଭୟଙ୍କର ଅସୁର ଉତ୍ପନ୍ନ ହେଲେ । ସେମାନେ ମଧୁ ଓ କୈଟଭ ନାମରେ ବିଖ୍ୟାତ ଥିଲେ । ସେ ଦୁହେଁ ବ୍ରହ୍ମାଙ୍କୁ ବଧ କରିବାକୁ ପ୍ରୟାସ କଲେ । ଭଗବାନ୍ ବିଷ୍ଣୁଙ୍କ ନାଭିକମଳରେ ବିରାଜମାନ ପ୍ରଜାପତି ବ୍ରହ୍ମା ଯେତେବେଳେ ସେହି ଦୁଇଟି ଭୟାନକ ଅସୁର ନିଜ ପାଖକୁ ଆସୁଥିବା ଏବଂ ଭଗବାନ୍ ଶୟନ କରୁଥିବାର ଦେଖିଲେ; ସେତେବେଳେ ଏକାଗ୍ରଚିତ୍ତ ହୋଇ ଭଗବାନ୍ ବିଷ୍ଣୁଙ୍କୁ ଉଠାଇବାପାଇଁ ତାଙ୍କ ନେତ୍ରରେ ନିବାସ କରୁଥିବା ଯୋଗନିଦ୍ରାଙ୍କ ସ୍ତବ ଆରମ୍ଭ କଲେ । ଯିଏ ଏହି ବିଶ୍ୱର ଅଧୀଶ୍ୱରୀ, ଜଗତ୍‌ର ଧାତ୍ରୀ, ସଂସାରର ପାଳନକର୍ତ୍ତ୍ରୀ ଓ ସଂହାରକର୍ତ୍ତ୍ରୀ ତଥା ତେଜଃସ୍ୱରୂପ ଭଗବାନ୍ ବିଷ୍ଣୁଙ୍କ ଅନୁପମ ଶକ୍ତି ଅଟନ୍ତି; ସେହି ଭଗବତୀ ନିଦ୍ରାଦେବୀଙ୍କୁ ଭଗବାନ୍ ବ୍ରହ୍ମା ସ୍ତୁତି କରିବାକୁ ଆରମ୍ଭ କଲେ ॥ ୬୪—୭୧ ॥

୧. କେତେକ ପାଣ୍ଡୁଲିପିରେ ଏହା ପରେ 'ବ୍ରହ୍ମୋବାଚ' ଅଛି ତଥା 'ନିଦ୍ରାଂ ଭଗବତୀଂ.' ଶ୍ଳୋକାର୍ଦ୍ଧର ସ୍ଥାନରେ—'ସ୍ତୌମି ନିଦ୍ରାଂ ଭଗବତୀଂ ବିଷ୍ଣୋରତୁଳତେଜସଃ ॥' ଏପରି ପାଠ ଅଛି ।

*ବ୍ରହ୍ମୋବାଚ ॥ ୭୨ ॥*

**ତ୍ୱଂ ସ୍ୱାହା ତ୍ୱଂ ସ୍ୱଧା ତ୍ୱଂ ହି ବଷଟ୍‌କାରଃସ୍ୱରାତ୍ମିକା ॥ ୭୩ ॥**
**ସୁଧା ତ୍ୱମକ୍ଷରେ ନିତ୍ୟେ ତ୍ରିଧା ମାତ୍ରାତ୍ମିକା ସ୍ଥିତା ।**
**ଅର୍ଦ୍ଧମାତ୍ରାସ୍ଥିତା ନିତ୍ୟା ଯାନୁଚ୍ଚାର୍ଯ୍ୟା ବିଶେଷତଃ ॥ ୭୪ ॥**
**ତ୍ୱମେବ ସଂଧ୍ୟାଂ[1] ସାବିତ୍ରୀ ତ୍ୱଂ ଦେବି ଜନନୀ ପରା ।**
**ତ୍ୱୟୈତଦ୍ଧାର୍ଯ୍ୟତେ ବିଶ୍ୱଂ ତ୍ୱୟୈତତ୍‌ସୃଜ୍ୟତେ ଜଗତ୍ ॥ ୭୫ ॥**
**ତ୍ୱୟୈତତ୍‌ପାଲ୍ୟତେ ଦେବି ତ୍ୱମସ୍ୟନ୍ତେ ଚ ସର୍ବଦା ।**
**ବିସୃଷ୍ଟୌ ସୃଷ୍ଟିରୂପା ତ୍ୱଂ ସ୍ଥିତିରୂପା ଚ ପାଲନେ ॥ ୭୬ ॥**
**ତଥା ସଂହୃତିରୂପାନ୍ତେ ଜଗତୋଽସ୍ୟ ଜଗନ୍ମୟେ ।**
**ମହାବିଦ୍ୟା ମହାମାୟା ମହାମେଧା ମହାସ୍ମୃତିଃ ॥ ୭୭ ॥**
**ମହାମୋହା ଚ ଭବତୀ ମହାଦେବୀ ମହାସୁରୀ[2] ।**
**ପ୍ରକୃତିସ୍ତ୍ୱଂ ଚ ସର୍ବସ୍ୟ ଗୁଣତ୍ରୟବିଭାବିନୀ ॥ ୭୮ ॥**

---

**ବ୍ରହ୍ମା କହିଲେ**—॥ ୭୨ ॥ ହେ ଦେବି ! ତୁମେ ହିଁ ସ୍ୱାହା, ତୁମେ ହିଁ ସ୍ୱଧା ଏବଂ ତୁମେ ହିଁ ବଷଟ୍‌କାର ଅଟ । ସ୍ୱର ମଧ୍ୟ ତୁମର ସ୍ୱରୂପ ଅଟେ । ତୁମେ ଜୀବନଦାୟିନୀ ସୁଧା ଅଟ । ନିତ୍ୟ ଅକ୍ଷର ପ୍ରଣବରେ 'ଅ'କାର, 'ଉ'କାର, 'ମ'କାର— ଏହି ତିନୋଟି ମାତ୍ରା ରୂପରେ ତୁମ୍ଭେ ସ୍ଥିତ ଅଛ । ସେହି ତିନୋଟି ମାତ୍ରାର ଅତିରିକ୍ତ ଯେଉଁ ବିନ୍ଦୁରୂପା ନିତ୍ୟ ଅର୍ଦ୍ଧମାତ୍ରା ଅଛି; ଯାହାକୁ ବିଶେଷ ରୂପରେ ଉଚ୍ଚାରଣ କରାଯାଇପାରେ ନାହିଁ; ତାହା ମଧ୍ୟ ତୁମେ ଅଟ ॥ ୭୩-୭୪ ॥ ହେ ଦେବି ! ତୁମ୍ଭେ ସଂଧ୍ୟା, ସାବିତ୍ରୀ ଏବଂ ପରମ ଜନନୀ ଅଟ । ହେ ଦେବି ! ତୁମେ ଏହି ବିଶ୍ୱ-ବ୍ରହ୍ମାଣ୍ଡକୁ ଧାରଣ କରିଛ । ତୁମେ ଏହି ଜଗତ୍‌କୁ ସୃଷ୍ଟି କରିଛ ॥ ୭୫ ॥ ତୁମେ ହିଁ ଏହାକୁ ପାଳନ କରୁଛ ଏବଂ ସର୍ବଦା ତୁମ୍ଭେ ହିଁ କଳ୍ପର ଶେଷରେ ସମସ୍ତଙ୍କୁ ନିଜେ ଗ୍ରାସ କରୁଛ । ହେ ଜଗନ୍ମୟୀ ଦେବି ! ଏହି ଜଗତ୍‌ର ଉତ୍ପତ୍ତି ସମୟରେ ତୁମ୍ଭେ ସୃଷ୍ଟିରୂପା ଅଟ । ପାଳନକାଳରେ ସ୍ଥିତିରୂପା ଅଟ ॥ ୭୬ ॥ କଳ୍ପାନ୍ତସମୟରେ ସଂହାର ରୂପ ଧାରଣ କର । ତୁମ୍ଭେ ମହାବିଦ୍ୟା, ମହାମାୟା, ମହାମେଧା, ମହାସ୍ମୃତି, ମହାମୋହରୂପା, ମହାଦେବୀ ଏବଂ ମହାସୁରୀ ଅଟ । ତୁମ୍ଭେ ତିନୋଟି ଗୁଣକୁ ଉତ୍ପନ୍ନ କରୁଥିବା ସମସ୍ତଙ୍କ ପ୍ରକୃତି ଅଟ ॥ ୭୭-୭୮ ॥

---

୧. ପା.—ସା ତ୍ୱଂ । ୨. ପା.—ମହେଶ୍ୱରୀ ।

କାଳରାତ୍ରିର୍ମହାରାତ୍ରିର୍ମୋହରାତ୍ରିଶ୍ଚ ଦାରୁଣା ।
ତ୍ୱଂ ଶ୍ରୀସ୍ତ୍ୱମୀଶ୍ୱରୀ ତ୍ୱଂ ହ୍ରୀସ୍ତ୍ୱଂ ବୁଦ୍ଧିର୍ବୋଧଲକ୍ଷଣା ॥ ୭୯ ॥
ଲଜ୍ଜା ପୁଷ୍ଟିସ୍ତଥା ତୁଷ୍ଟିସ୍ତ୍ୱଂ ଶାନ୍ତିଃ କ୍ଷାନ୍ତିରେବ ଚ ।
ଖଡ୍‌ଗିନୀ ଶୂଳିନୀ ଘୋରା ଗଦିନୀ ଚକ୍ରିଣୀ ତଥା ॥ ୮୦ ॥
ଶଙ୍ଖିନୀ ଚାପିନୀ ବାଣଭୁଶୁଣ୍ଡୀପରିଘାୟୁଧା ।
ସୌମ୍ୟା ସୌମ୍ୟତରାଶେଷସୌମ୍ୟେଭ୍ୟସ୍ତ୍ୱତିସୁନ୍ଦରୀ ॥ ୮୧ ॥
ପରାପରାଣାଂ ପରମା ତ୍ୱମେବ ପରମେଶ୍ୱରୀ ।
ଯଚ୍ଚ କିଂଚିତ୍‌କ୍ୱଚିଦ୍‌ବସ୍ତୁ ସଦସଦ୍‌ବାଖିଲାତ୍ମିକେ ॥ ୮୨ ॥
ତସ୍ୟ ସର୍ବସ୍ୟ ଯା ଶକ୍ତିଃ ସା ତ୍ୱଂ କିଂ ସ୍ତୂୟସେ ତଦା[୧] ।
ଯୟା ତ୍ୱୟା ଜଗତ୍‌ସ୍ରଷ୍ଟା ଜଗତ୍‌ପାତ୍ୟତ୍ତି[୨] ଯୋ ଜଗତ୍ ॥ ୮୩ ॥
ସୋଽପି ନିଦ୍ରାବଶଂ ନୀତଃ କସ୍ତ୍ୱାଂ ସ୍ତୋତୁମିହେଶ୍ୱରଃ ।
ବିଷ୍ଣୁଃ ଶରୀରଗ୍ରହଣମହମୀଶାନ ଏବ ଚ ॥ ୮୪ ॥

ଭୟଙ୍କର କାଳରାତ୍ରି, ମହାରାତ୍ରି ଓ ମୋହରାତ୍ରି ମଧ୍ୟ ତୁମେ ଅଟ । ତୁମ୍ଭେ ଶ୍ରୀ, ତୁମେ ହିଁ ଈଶ୍ୱରୀ, ତୁମେ ହିଁ ହ୍ରୀ ଏବଂ ତୁମେ ହିଁ ବୋଧସ୍ୱରୂପା ବୁଦ୍ଧି ଅଟ ॥ ୭୯ ॥ ଲଜ୍ଜା, ପୁଷ୍ଟି, ତୁଷ୍ଟି, ଶାନ୍ତି ଏବଂ କ୍ଷମା ତୁମେ ଅଟ । ତୁମେ ଖଡ୍‌ଗଧାରିଣୀ, ଶୂଳଧାରିଣୀ, ଘୋରରୂପା ତଥା ଗଦା, ଚକ୍ର, ଶଙ୍ଖ ଏବଂ ଧନୁ ଧାରଣକାରିଣୀ ଅଟ । ବାଣ, ଭୁଶୁଣ୍ଡୀ ଏବଂ ପରିଘ—ଏହା ତୁମ୍ଭର ଅସ୍ତ୍ର ଅଟେ । ତୁମ୍ଭେ ସୌମ୍ୟ ଓ ସୌମ୍ୟତର ଅଟ । ଏତିକି ନୁହେଁ; ଯେତେସବୁ ସୌମ୍ୟ ଏବଂ ସୁନ୍ଦର ପଦାର୍ଥ ରହିଛି; ସେ ସବୁ ଅପେକ୍ଷା ତୁମ୍ଭେ ଅତ୍ୟଧିକ ସୁନ୍ଦରୀ ଅଟ । ପର, ଅପର—ସବୁଠାରୁ ଉର୍ଦ୍ଧ୍ୱରେ ରହୁଥିବା ପରମେଶ୍ୱରୀ ତୁମ୍ଭେ ଅଟ ॥ ୮୦-୮୧ ॥ ହେ ସର୍ବସ୍ୱରୂପେ ଦେବି ! ଯେଉଁଠାରେ ବି ସତ୍ ଅସଦ୍‌ରୂପ ଯାହା କିଛି ବସ୍ତୁ ରହିଛି ଏବଂ ସେ ସବୁର ଯାହା ଶକ୍ତି ଅଛି; ସେ ସବୁ ତୁମ୍ଭେ ଅଟ । ଏପରି ଅବସ୍ଥାରେ ତୁମ୍ଭର ସ୍ତୁତି କ'ଣ ହୋଇପାରେ ? ଯିଏ ଏହି ଜଗତ୍‌ର ସୃଷ୍ଟି, ପାଳନ ଏବଂ ସଂହାର କରନ୍ତି; ସେହି ଭଗବାନ୍‌ଙ୍କୁ ମଧ୍ୟ ଯେତେବେଳେ ତୁମ୍ଭେ ନିଦ୍ରାର ଅଧୀନ କରିଦେଲ; ସେତେବେଳେ ତୁମ୍ଭଙ୍କୁ ସ୍ତୁତି କରିବାକୁ ଏଠାରେ କିଏ ବା ସମର୍ଥ ହୋଇପାରେ ? ମୋତେ, ଭଗବାନ୍ ଶଙ୍କରଙ୍କୁ ତଥା ଭଗବାନ୍ ବିଷ୍ଣୁଙ୍କୁ ମଧ୍ୟ ତୁମ୍ଭେ ଏହି ଶରୀର

୧. ପା.—ମୟା । ୨. ପା.—ପାତାତ୍ତି ।

କାରିତାସ୍ତେ ଯତୋଽତସ୍ତ୍ୱାଂ କଃ ସ୍ତୋତୁଂ ଶକ୍ତିମାନ୍ ଭବେତ୍ ।
ସା ତ୍ୱମିତ୍ଥଂ ପ୍ରଭାବୈଃ ସ୍ୱୈରୁଦାରୈର୍ଦେବି ସଂସ୍ତୁତା ॥ ୮୫ ॥
ମୋହୟୈତୌ ଦୁରାଧର୍ଷାବସୁରୌ ମଧୁକୈଟଭୌ ।
ପ୍ରବୋଧଂ ଚ ଜଗତ୍ସ୍ୱାମୀ ନୀୟତାମଚ୍ୟୁତୋ ଲଘୁ ॥ ୮୬ ॥
ବୋଧଶ୍ଚ କ୍ରିୟତାମସ୍ୟ ହନ୍ତୁମେତୌ ମହାସୁରୌ ॥ ୮୭ ॥

*ଋଷିରୁବାଚ ॥ ୮୮ ॥*

ଏବଂ ସ୍ତୁତା ତଦା ଦେବୀ ତାମସୀ ତତ୍ର ବେଧସା ॥ ୮୯ ॥
ବିଷ୍ଣୋଃ ପ୍ରବୋଧନାର୍ଥାୟ ନିହନ୍ତୁଂ ମଧୁକୈଟଭୌ ।
ନେତ୍ରାସ୍ୟନାସିକାବାହୁହୃଦୟେଭ୍ୟସ୍ତଥୋରସଃ ॥ ୯୦ ॥
ନିର୍ଗମ୍ୟ ଦର୍ଶନେ ତସ୍ଥୌ ବ୍ରହ୍ମଣୋଽବ୍ୟକ୍ତଜନ୍ମନଃ ।
ଉତ୍ତସ୍ଥୌ ଚ ଜଗନ୍ନାଥସ୍ତୟା ମୁକ୍ତୋ ଜନାର୍ଦନଃ ॥ ୯୧ ॥
ଏକାର୍ଣ୍ଣବେଽହିଶୟନାତ୍ତତଃ ସ ଦଦୃଶେ ଚ ତୌ ।
ମଧୁକୈଟଭୌ ଦୁରାତ୍ମାନାବତିବୀର୍ଯ୍ୟପରାକ୍ରମୌ ॥ ୯୨ ॥

---

ଧାରଣ କରାଇଅଛ । ଅତଃ ତୁମ୍ଭଙ୍କୁ ସ୍ତୁତି କରିବାକୁ କାହାର ଶକ୍ତି ରହିଛି ? ହେ ଦେବି ! ତୁମ୍ଭେ ନିଜର ଏହି ଉଦାର ପ୍ରଭାବଦ୍ୱାରା ପ୍ରଶଂସିତ ହେଉଛ ॥ ୮୨—୮୫ ॥ ଯେଉଁ ଦୁଇଟି ଦୁର୍ଦ୍ଧର୍ଷ ଅସୁର ମଧୁ ଓ କୈଟଭ ଅଛନ୍ତି; ସେମାନଙ୍କୁ ମୋହରେ ପକାଅ ଏବଂ ଜଗଦୀଶ୍ୱର ଭଗବାନ୍ ବିଷ୍ଣୁଙ୍କୁ ଶୀଘ୍ର ଜାଗ୍ରତ କରାଅ । ଏହା ସହିତ ତାଙ୍କ ଭିତରେ ଏହି ଦୁଇଟି ମହାନ୍ ଅସୁରଙ୍କୁ ବଧ କରିବାକୁ ବୁଦ୍ଧି ଉତ୍ପନ୍ନ କରାଅ ॥ ୮୬, ୮୭ ॥

**ଋଷି କହିଲେ**—॥ ୮୮ ॥ ହେ ରାଜନ୍ ! ଯେତେବେଳେ ବ୍ରହ୍ମା ସେଠାରେ ମଧୁ ଏବଂ କୈଟଭକୁ ମାରିବା ଉଦ୍ଦେଶ୍ୟରେ ଭଗବାନ୍ ବିଷ୍ଣୁଙ୍କୁ ଜାଗ୍ରତ କରିବାପାଇଁ ତମୋଗୁଣର ଅଧିଷ୍ଠାତ୍ରୀ ଦେବୀ ଯୋଗନିଦ୍ରାଙ୍କୁ ଏହିପ୍ରକାରେ ସ୍ତୁତି କଲେ; ସେତେବେଳେ ସେ ଭଗବାନ୍‌ଙ୍କ ନେତ୍ର, ମୁଖ, ନାସିକା, ବାହୁ, ହୃଦୟ ଏବଂ ବକ୍ଷଃସ୍ଥଳରୁ ବାହାରି ଅବ୍ୟକ୍ତଜନ୍ମା ବ୍ରହ୍ମାଙ୍କ ଦୃଷ୍ଟି ସମକ୍ଷରେ ଦଣ୍ଡାୟମାନ ହେଲେ । ଯୋଗନିଦ୍ରା ବାହାରି ଆସିବା ପରେ ଜଗତ୍‌ର ସ୍ୱାମୀ ଭଗବାନ୍ ଜନାର୍ଦ୍ଦନ ସେହି ଏକାର୍ଣ୍ଣବର ଜଳରେ ଶେଷନାଗର ଶଯ୍ୟାରୁ ଜାଗ୍ରତ ହୋଇ ସେହି ଦୁଇଟି ଅସୁରଙ୍କୁ ଦେଖିଲେ । ସେହି ଦୁରାତ୍ମା ମଧୁ ଏବଂ କୈଟଭ ଅତ୍ୟନ୍ତ ବଳବାନ୍ ତଥା ପରାକ୍ରମୀ

କ୍ରୋଧରକ୍ତେକ୍ଷଣାବତ୍ତୁଂ[1] ବ୍ରହ୍ମାଣଂ ଜନିତୋଦ୍ୟମୌ ।
ସମୁତ୍ଥାୟ ତତସ୍ତାଭ୍ୟାଂ ଯୁଯୁଧେ ଭଗବାନ୍ ହରିଃ ॥ ୯୩ ॥
ପଞ୍ଚବର୍ଷସହସ୍ରାଣି ବାହୁପ୍ରହରଣୋ ବିଭୁଃ ।
ତାବପ୍ୟତିବଳୋନ୍ମତ୍ତୌ ମହାମାୟାବିମୋହିତୌ ॥ ୯୪ ॥
ଉକ୍ତବନ୍ତୌ ବରୋଽସ୍ମତ୍ତୋ ବ୍ରିୟତାମିତି କେଶବମ୍ ॥ ୯୫ ॥

*ଶ୍ରୀଭଗବାନୁବାଚ ॥ ୯୬ ॥*

ଭବେତାମଦ୍ୟ ମେ ତୁଷ୍ଟୌ ମମ ବଧ୍ୟାବୁଭାବପି ॥ ୯୭ ॥
କିମନ୍ୟେନ ବରେଣାତ୍ର ଏତାବଦ୍ଧି ବୃତଂ ମମ[2] ॥ ୯୮ ॥

*ଋଷିରୁବାଚ ॥ ୯୯ ॥*

ବଞ୍ଚିତାଭ୍ୟାମିତି ତଦା ସର୍ବମାପୋମୟଂ ଜଗତ୍ ॥ ୧୦୦ ॥
ବିଲୋକ୍ୟ ତାଭ୍ୟାଂ ଗଦିତୋ ଭଗବାନ୍ କମଲେକ୍ଷଣଃ[3] ।
ଆବାଂ ଜହି ନ ଯତ୍ରୋର୍ବୀ ସଲିଲେନ ପରିପ୍ଳୁତା ॥ ୧୦୧ ॥

---

ଥିଲେ ଏବଂ କ୍ରୋଧରେ ଆଖି ଲାଲ୍ କରି ବ୍ରହ୍ମାଙ୍କୁ ଭକ୍ଷଣ କରିବାକୁ ପ୍ରୟାସ କରୁଥିଲେ । ସେତେବେଳେ ଭଗବାନ୍ ଶ୍ରୀହରି ଉଠି ସେହି ଦୁଇଜଣଙ୍କ ସହ ପାଞ୍ଚହଜାର ବର୍ଷପର୍ଯ୍ୟନ୍ତ କେବଳ ବାହୁଯୁଦ୍ଧ କଲେ । ସେ ଦୁହେଁ ମଧ୍ୟ ଅତ୍ୟନ୍ତ ବଳଶାଳୀ ହୋଇଥିବା ଯୋଗୁଁ ଉନ୍ମତ୍ତ ହେଉଥିଲେ । ଏଠାରେ ମହାମାୟା ମଧ୍ୟ ସେମାନଙ୍କୁ ମୋହରେ ପକାଉଥିଲେ । ତେଣୁ ସେମାନେ ଭଗବାନ୍ ବିଷ୍ଣୁଙ୍କୁ କହିଲେ—ଆମ୍ଭେ ତୁମ୍ଭର ବୀରତାଦ୍ୱାରା ସନ୍ତୁଷ୍ଟ ହୋଇଛୁ । ତୁମ୍ଭେ ଆମ୍ଭମାନଙ୍କୁ କୌଣସି ବର ପ୍ରାର୍ଥନା କର ॥ ୮୯—୯୫ ॥

**ଶ୍ରୀଭଗବାନ୍ କହିଲେ**—॥ ୯୬ ॥ ଯଦି ତୁମେ ଦୁହେଁ ମୋ ଉପରେ ପ୍ରସନ୍ନ ହୋଇଛ; ତେବେ ବର୍ତ୍ତମାନ ମୋ ହାତରେ ନିହତ ହୁଅ । ମୁଁ ଏତିକି ବର ପ୍ରାର୍ଥନା କରୁଛି । ଏଠାରେ ଆଉ ଦ୍ୱିତୀୟ ବର କଣ ବା ନେବା ଆବଶ୍ୟକ ? ॥ ୯୭-୯୮ ॥

**ଋଷି କହିଲେ**—॥ ୯୯ ॥ ଏହି ପ୍ରକାରେ ସେମାନେ ପ୍ରବଞ୍ଚିତ ହେଲେ । ତା'ପରେ ସେମାନେ ସାରା ସଂସାର ଜଳମୟ ହୋଇଥିବା ଦେଖି କମଳନୟନ

---

୧. ପା.—ଣୌ ହନ୍ତୁଂ । ୨. ପା.—ମୟା, ୩. ମାର୍କଣ୍ଡେୟପୁରାଣର କେତେକ ପାଣ୍ଡୁଲିପିରେ 'ପ୍ରୀତୌ ସ୍ୱସ୍ତବ ଯୁଦ୍ଧେନ ଶ୍ଲାଘ୍ୟସ୍ତ୍ୱଂ ମୃତ୍ୟୁରାବୟୋଃ ।' ଏତିକି ଅଧିକ ପାଠ ରହିଛି ।

*ଋଷିରୁବାଚ ॥ ୧୦୨ ॥*

**ତଥେତ୍ୟୁକ୍ତ୍ୱା ଭଗବତା ଶଙ୍ଖଚକ୍ରଗଦାଭୃତା ।**
**କୃତ୍ୱା ଚକ୍ରେଣ ବୈ ଛିନ୍ନେ ଜଘନେ ଶିରସୀ ତୟୋଃ ॥ ୧୦୩ ॥**
**ଏବମେଷା ସମୁତ୍ପନ୍ନା ବ୍ରହ୍ମଣା ସଂସ୍ତୁତା ସ୍ୱୟମ୍ ।**
**ପ୍ରଭାବମସ୍ୟା ଦେବ୍ୟାସ୍ତୁ ଭୂୟଃ ଶୃଣୁ ବଦାମି ତେ ॥ଐଂ ଓଁ ॥ ୧୦୪ ॥**

*ଇତି ଶ୍ରୀମାର୍କଣ୍ଡେୟପୁରାଣେ ସାବର୍ଣ୍ଣିକେ ମନ୍ୱନ୍ତରେ ଦେବୀମାହାତ୍ମ୍ୟେ*
*ମଧୁକୈଟଭବଧୋ ନାମ ପ୍ରଥମୋଽଧ୍ୟାୟଃ ॥ ୧ ॥*

*ଉବାଚ ୧୪, ଅର୍ଧଶ୍ଳୋକାଃ ୨୪, ଶ୍ଳୋକାଃ ୬୬,*
*ଏବମାଦିତଃ ॥ ୧୦୪ ॥*



---

ଭଗବାନ୍‌ଙ୍କୁ କହିଲେ—ଯେଉଁଠାରେ ପୃଥିବୀ ଜଳମଗ୍ନ ନ ହୋଇଛି; ଅର୍ଥାତ୍ ଯେଉଁସ୍ଥାନରେ ଜଳ ଆଦୌ ନାହିଁ; ସେହି ସ୍ଥାନରେ ଆମ୍ଭମାନଙ୍କୁ ବଧ କର ॥୧୦୦, ୧୦୧॥

**ଋଷି କହିଲେ**—॥ ୧୦୨ ॥ ସେତେବେଳେ 'ତଥାସ୍ତୁ' କହି ଶଙ୍ଖ, ଚକ୍ର ଏବଂ ଗଦା ଧାରଣ କରିଥିବା ଭଗବାନ୍ ସେହି ଦୁଇଜଣଙ୍କ ମସ୍ତକକୁ ନିଜ ଜଙ୍ଘ ଉପରେ ରଖି ଚକ୍ରରେ କାଟି ଦେଲେ ॥ ୧୦୩ ॥ ଏହି ପ୍ରକାର ଏହି ଦେବୀ ମହାମାୟାଙ୍କୁ ବ୍ରହ୍ମା ସ୍ତୁତି କଲାପରେ ସେ ସ୍ୱୟଂ ପ୍ରକଟିତ ହେଲେ । ଏଥର ତୁମକୁ ତାଙ୍କ ପ୍ରଭାବ ବିଷୟରେ କହୁଛି, ଶୁଣ ॥ ୧୦୪ ॥

*ଏହିପ୍ରକାର ଶ୍ରୀମାର୍କଣ୍ଡେୟ ପୁରାଣରେ ସାବର୍ଣ୍ଣିକ ମନ୍ୱନ୍ତରର କଥା*
*ଅନ୍ତର୍ଗତ ଦେବୀମାହାତ୍ମ୍ୟରେ 'ମଧୁକୈଟଭ ବଧ' ନାମକ*
*ପ୍ରଥମ ଅଧ୍ୟାୟ ସମାପ୍ତ ହେଲା ॥ ୧ ॥*



## ଦ୍ୱିତୀୟୋଽଧ୍ୟାୟଃ

### [ଦେବତାମାନଙ୍କ ତେଜରୁ ଦେବୀଙ୍କ ଆବିର୍ଭାବ ଏବଂ ମହିଷାସୁରର ସୈନ୍ୟଙ୍କୁ ସଂହାର କରିବା]

### ବିନିୟୋଗଃ

ଓଁ ମଧ୍ୟମଚରିତ୍ରସ୍ୟ ବିଷ୍ଣୁର୍ଋଷିଃ, ମହାଲକ୍ଷ୍ମୀର୍ଦେବତା, ଉଷ୍ଣିକ୍ ଛନ୍ଦଃ, ଶାକମ୍ଭରୀ ଶକ୍ତିଃ, ଦୁର୍ଗା ବୀଜମ୍, ବାୟୁସ୍ତତ୍ତ୍ୱମ୍, ଯଜୁର୍ବେଦଃ ସ୍ୱରୂପମ୍, ଶ୍ରୀମହାଲକ୍ଷ୍ମୀପ୍ରୀତ୍ୟର୍ଥଂ ମଧ୍ୟମଚରିତ୍ରଜପେ ବିନିୟୋଗଃ ।

### ଧ୍ୟାନମ୍

**ଓଁ ଅକ୍ଷସ୍ରକ୍‌ପରଶୁଂ ଗଦେଷୁକୁଳିଶଂ ପଦ୍ମଂ ଧନୁଷ୍କୁଣ୍ଡିକାଂ**
**ଦଣ୍ଡଂ ଶକ୍ତିମସିଂ ଚ ଚର୍ମ ଜଳଜଂ ଘଣ୍ଟାଂ ସୁରାଭାଜନମ୍ ।**
**ଶୂଳଂ ପାଶସୁଦର୍ଶନେ ଚ ଦଧତୀଂ ହସ୍ତୈଃ ପ୍ରସନ୍ନାନନାଂ**
**ସେବେ ସୈରିଭମର୍ଦ୍ଦିନୀମିହ ମହାଲକ୍ଷ୍ମୀଂ ସରୋଜସ୍ଥିତାମ୍ ॥**

*'ଓଁ ହ୍ରୀଂ' ଋଷିରୁବାଚ ॥ ୧ ॥*

**ଦେବାସୁରମଭୂଦ୍‌ଯୁଦ୍ଧଂ ପୂର୍ଣ୍ଣମବ୍ଦଶତଂ ପୁରା ।**
**ମହିଷେଽସୁରାଣାମଧିପେ ଦେବାନାଂ ଚ ପୁରନ୍ଦରେ ॥ ୨ ॥**

---

॥ ଓଁ ॥ ମଧ୍ୟମ ଚରିତ୍ରର ବିଷ୍ଣୁ ଋଷି, ମହାଲକ୍ଷ୍ମୀ ଦେବତା, ଉଷ୍ଣିକ୍ ଛନ୍ଦ, ଶାକମ୍ଭରୀ ଶକ୍ତି, ଦୁର୍ଗା ବୀଜ, ବାୟୁ ତତ୍ତ୍ୱ ଏବଂ ଯଜୁର୍ବେଦ ସ୍ୱରୂପ ଅଟେ । ଶ୍ରୀମହାଲକ୍ଷ୍ମୀଙ୍କ ପ୍ରସନ୍ନତା ନିମନ୍ତେ ମଧ୍ୟମ ଚରିତ୍ର ପାଠରେ ଏହାର ବିନିୟୋଗ ହୋଇଛି ।

କମଳାସନ ଉପରେ ବସିଥିବା ପ୍ରସନ୍ନମୁଖୀଯୁକ୍ତା ମହିଷାସୁରମର୍ଦ୍ଦିନୀ ଭଗବତୀ ମହାଲକ୍ଷ୍ମୀଙ୍କୁ ମୁଁ ଭଜନ କରୁଛି ଯେ ନିଜ ହସ୍ତରେ ଅକ୍ଷମାଳା, ଫାର୍ଶା, ଗଦା, ତୀର, ବଜ୍ର, ପଦ୍ମ, ଧନୁ, କୁଣ୍ଡିକା, ଦଣ୍ଡ, ଶକ୍ତି, ଖଡ୍‌ଗ, ଢାଲ, ଶଙ୍ଖ, ଘଣ୍ଟା, ମଧୁପାତ୍ର, ଶୂଳ, ପାଶ ଏବଂ ଚକ୍ର ଧାରଣ କରିଛନ୍ତି ।

**ଋଷି କହିଲେ**—॥ ୧ ॥ ପୂର୍ବକାଳରେ ଦେବତା ଓ ଅସୁରଗଣ ମଧ୍ୟରେ ପୂରାପୂରି ଏକ ଶତ ବର୍ଷ ପର୍ଯ୍ୟନ୍ତ ଘୋର ସଂଗ୍ରାମ ହୋଇଥିଲା । ସେଥିରେ

ତତ୍ରାସୁରୈର୍ମହାବୀର୍ୟୈର୍ଦେବସୈନ୍ୟଂ ପରାଜିତମ୍ ।
ଜିତ୍ୱା ଚ ସକଲାନ୍ ଦେବାନିନ୍ଦ୍ରୋଽଭୂନ୍ମହିଷାସୁରଃ ॥ ୩ ॥
ତତଃ ପରାଜିତା ଦେବାଃ ପଦ୍ମଯୋନିଂ ପ୍ରଜାପତିମ୍ ।
ପୁରସ୍କୃତ୍ୟ ଗତାସ୍ତତ୍ର ଯତ୍ରେଶଗରୁଡଧ୍ୱଜୌ ॥ ୪ ॥
ଯଥାବୃତ୍ତଂ ତୟୋସ୍ତଦ୍ୱନ୍ମହିଷାସୁରଚେଷ୍ଟିତମ୍ ।
ତ୍ରିଦଶାଃ କଥୟାମାସୁର୍ଦେବାଭିଭବବିସ୍ତରମ୍ ॥ ୫ ॥
ସୂର୍ଯ୍ୟେନ୍ଦ୍ରାଗ୍ନ୍ୟନିଲେନ୍ଦୂନାଂ ଯମସ୍ୟ ବରୁଣସ୍ୟ ଚ ।
ଅନ୍ୟେଷାଂ ଚାଧିକାରାନ୍ ସ ସ୍ୱୟମେବାଧିତିଷ୍ଠତି ॥ ୬ ॥
ସ୍ୱର୍ଗାନ୍ନିରାକୃତାଃ ସର୍ବେ ତେନ ଦେବଗଣା ଭୁବି ।
ବିଚରନ୍ତି ଯଥା ମର୍ତ୍ତ୍ୟା ମହିଷେଣ ଦୁରାତ୍ମନା ॥ ୭ ॥
ଏତଦ୍ ବଃ କଥିତଂ ସର୍ବମମରାରିବିଚେଷ୍ଟିତମ୍ ।
ଶରଣଂ ବଃ ପ୍ରପନ୍ନାଃ ସ୍ମୋ ବଧସ୍ତସ୍ୟ ବିଚିନ୍ତ୍ୟତାମ୍ ॥ ୮ ॥

---

ମହିଷାସୁର ଥିଲା ଅସୁରମାନଙ୍କର ଅଧିପତି ଏବଂ ଦେବତାମାନଙ୍କ ନାୟକ ଥିଲେ ଇନ୍ଦ୍ର ॥ ୨ ॥ ସେହି ଯୁଦ୍ଧରେ ଦେବତାମାନଙ୍କ ସେନା ମହାବଳୀ ଅସୁରମାନଙ୍କଦ୍ୱାରା ପରାସ୍ତ ହୋଇଥିଲେ । ସମସ୍ତ ଦେବତାଙ୍କୁ ପରାସ୍ତ କରି ମହିଷାସୁର ଇନ୍ଦ୍ରପଦରେ ବସିଲା ॥ ୩ ॥ ସେତେବେଳେ ପରାଜିତ ଦେବତାମାନେ ପ୍ରଜାପତି ବ୍ରହ୍ମାଙ୍କୁ ଆଗରେ ରଖି ସେହି ସ୍ଥାନକୁ ଗମନ କଲେ; ଯେଉଁଠାରେ ଭଗବାନ୍ ଶଙ୍କର ଓ ବିଷ୍ଣୁ ବିରାଜମାନ କରିଥିଲେ ॥ ୪ ॥ ଦେବତାମାନେ ମହିଷାସୁରର ପରାକ୍ରମ ତଥା ନିଜ ପରାଜୟର ଯଥାବତ୍ ବୃତ୍ତାନ୍ତ ସେହି ଦୁଇ ଦେବେଶ୍ୱରଙ୍କୁ ବିସ୍ତାରପୂର୍ବକ କହି ଶୁଣାଇଲେ ॥ ୫ ॥ ସେମାନେ କହିଲେ— 'ହେ ଭଗବନ୍ ! ମହିଷାସୁର ସୂର୍ଯ୍ୟ, ଇନ୍ଦ୍ର, ଅଗ୍ନି, ବାୟୁ, ଚନ୍ଦ୍ରମା, ଯମ, ବରୁଣ ତଥା ଅନ୍ୟ ଦେବତାମାନଙ୍କ ଅଧିକାରକୁ ଛିନ୍ନ କରି ସ୍ୱୟଂ ହିଁ ସମସ୍ତଙ୍କ ଅଧିଷ୍ଠାତା ହୋଇଛି ॥ ୬ ॥ ସେହି ଦୁରାତ୍ମା ମହିଷାସୁର ସମସ୍ତ ଦେବତାଙ୍କୁ ସ୍ୱର୍ଗରୁ ବାହାର କରିଦେଇଛି । ବର୍ତ୍ତମାନ ସେମାନେ ମନୁଷ୍ୟଙ୍କ ପରି ପୃଥିବୀରେ ବିଚରଣ କରୁଛନ୍ତି ॥ ୭ ॥ ଦୈତ୍ୟମାନଙ୍କର ଏହି ସମସ୍ତ ବୃତ୍ତାନ୍ତ ଆମ୍ଭେ ଆପଣଙ୍କୁ କହି ଶୁଣାଇଲୁ । ବର୍ତ୍ତମାନ ଆମ୍ଭେ ଆପଣଙ୍କ ଶରଣରେ ଆସିଛୁ । ତାହାର ବଧ ପାଇଁ କୌଣସି ଉପାୟ ଆପଣ ହିଁ ଚିନ୍ତା କରନ୍ତୁ' ॥ ୮ ॥

ଇତ୍ଥଂ ନିଶମ୍ୟ ଦେବାନାଂ ବଚାଂସି ମଧୁସୂଦନଃ ।
ଚକାର କୋପଂ ଶମ୍ଭୁଶ୍ଚ ଭ୍ରୂକୁଟୀକୁଟିଳାନନୌ ॥ ୯ ॥
ତତୋଽତିକୋପପୂର୍ଣ୍ଣସ୍ୟ ଚକ୍ରିଣୋ ବଦନାତ୍ତତଃ ।
ନିଶ୍ଚକ୍ରାମ ମହତ୍ତେଜୋ ବ୍ରହ୍ମଣଃ ଶଙ୍କରସ୍ୟ ଚ ॥ ୧୦ ॥
ଅନ୍ୟେଷାଂ ଚୈବ ଦେବାନାଂ ଶକ୍ରାଦୀନାଂ ଶରୀରତଃ ।
ନିର୍ଗତଂ ସୁମହତ୍ତେଜସ୍ତଚ୍ଚୈକ୍ୟଂ ସମଗଚ୍ଛତ ॥ ୧୧ ॥
ଅତୀବ ତେଜସଃ କୂଟଂ ଜ୍ୱଳନ୍ତମିବ ପର୍ବତମ୍ ।
ଦଦୃଶୁସ୍ତେ ସୁରାସ୍ତତ୍ର ଜ୍ୱାଳାବ୍ୟାପ୍ତଦିଗନ୍ତରମ୍ ॥ ୧୨ ॥
ଅତୁଳଂ ତତ୍ର ତତ୍ତେଜଃ ସର୍ବଦେବଶରୀରଜମ୍ ।
ଏକସ୍ଥଂ ତଦଭୂନ୍ନାରୀ ବ୍ୟାପ୍ତଲୋକତ୍ରୟଂ ତ୍ୱିଷା ॥ ୧୩ ॥
ଯଦଭୂଚ୍ଛାମ୍ଭବଂ ତେଜସ୍ତେନାଜାୟତ ତନ୍ମୁଖମ୍ ।
ଯାମ୍ୟେନ ଚାଭବନ୍ କେଶା ବାହବୋ ବିଷ୍ଣୁତେଜସା ॥ ୧୪ ॥

ଏହିପରି ଦେବତାମାନଙ୍କ ବଚନ ଶୁଣି ଭଗବାନ୍ ବିଷ୍ଣୁ ଏବଂ ଶିବ ଦୈତ୍ୟମାନଙ୍କ ଉପରେ ଅତି କ୍ରୋଧ କଲେ । ତାଙ୍କର ଆଖି ପତା କୁଞ୍ଚିତ ହେଲା ଏବଂ ମୁଖ କୁଟିଳ ଦିଶିଲା ॥ ୯ ॥ ସେତେବେଳେ ଅତ୍ୟନ୍ତ କୋପଭର ହୋଇ ଚକ୍ରପାଣି ଶ୍ରୀବିଷ୍ଣୁଙ୍କ ମୁଖରୁ ଏକ ମହାନ୍ ତେଜ ପ୍ରକଟ ହେଲା । ସେହିପ୍ରକାର ବ୍ରହ୍ମା, ଶଙ୍କର ତଥା ଇନ୍ଦ୍ରାଦି ଅନ୍ୟାନ୍ୟ ଦେବତାମାନଙ୍କ ଶରୀରରୁ ଅତି ଗରୀୟାନ୍ ତେଜ ବାହାରିଲା । ସେ ସବୁ ମିଶି ଏକାକାର ହୋଇଗଲା ॥ ୧୦-୧୧ ॥ ମହାନ୍ ତେଜର ସେହି ପୁଞ୍ଜ ଜାଜ୍ୱଲ୍ୟମାନ ପର୍ବତ ପରି ଜଣା ପଡୁଥିଲା । ଦେବତାମାନେ ଦେଖିଲେ ସେଠାରେ ତାହାର ଜ୍ୱାଳା ସମସ୍ତ ଦିଗରେ ବ୍ୟାପ୍ତ ହୋଇ ରହିଛି ॥ ୧୨ ॥ ସମସ୍ତ ଦେବତାଙ୍କ ଶରୀରରୁ ପ୍ରକଟ ହୋଇଥିବା ସେହି ତେଜର କୌଣସି ତୁଳନା ନ ଥିଲା । ସେହି ତେଜପୁଞ୍ଜ ଏକତ୍ରିତ ହେବା ପରେ ଏକ ନାରୀ ରୂପରେ ପରିଣତ ହୋଇଥିଲା ଏବଂ ନିଜ ପ୍ରକାଶଦ୍ୱାରା ତିନିଲୋକରେ ବ୍ୟାପ୍ତ ହେବାପରି ଜଣା ପଡୁଥିଲା ॥ ୧୩ ॥ ଭଗବାନ୍ ଶଙ୍କରଙ୍କର ତେଜରୁ ସେହି ଦେବୀଙ୍କ ମୁଖ ପ୍ରକଟ ହୋଇଥିଲା । ଯମରାଜଙ୍କ ତେଜରୁ ତାଙ୍କ ମସ୍ତକରେ କେଶ ବାହାରିଥିଲା । ଶ୍ରୀବିଷ୍ଣୁ ଭଗବାନ୍‌ଙ୍କ ତେଜରେ ତାଙ୍କର ଭୁଜଗୁଡ଼ିକ ଉତ୍ପନ୍ନ ହୋଇଥିଲା ॥ ୧୪ ॥

ସୌମ୍ୟେନ ସ୍ତନୟୋର୍ଯୁଗ୍ମଂ ମଧ୍ୟଂ ଚୈନ୍ଦ୍ରେଣ ଚାଭବତ୍ ।
ବାରୁଣେନ ଚ ଜଙ୍ଘୋରୂ ନିତମ୍ବସ୍ତେଜସା ଭୁବଃ ॥ ୧୫ ॥
ବ୍ରହ୍ମଣସ୍ତେଜସା ପାଦୌ ତଦଙ୍ଗୁଲ୍ୟୋଽର୍କତେଜସା ।
ବସୂନାଂ ଚ କରାଙ୍ଗୁଲ୍ୟଃ କୌବେରେଣ ଚ ନାସିକା ॥ ୧୬ ॥
ତସ୍ୟାସ୍ତୁ ଦନ୍ତାଃ ସମ୍ଭୂତାଃ ପ୍ରାଜାପତ୍ୟେନ ତେଜସା ।
ନୟନତ୍ରିତୟଂ ଜଜ୍ଞେ ତଥା ପାବକତେଜସା ॥ ୧୭ ॥
ଭ୍ରୁବୌ ଚ ସନ୍ଧ୍ୟୟୋସ୍ତେଜଃ ଶ୍ରବଣାବନିଲସ୍ୟ ଚ ।
ଅନ୍ୟେଷାଂ ଚୈବ ଦେବାନାଂ ସମ୍ଭବସ୍ତେଜସାଂ ଶିବା ॥ ୧୮ ॥
ତତଃ ସମସ୍ତଦେବାନାଂ ତେଜୋରାଶିସମୁଦ୍ଭବାମ୍ ।
ତାଂ ବିଲୋକ୍ୟ ମୁଦଂ ପ୍ରାପୁରମରା ମହିଷାର୍ଦିତାଃ[୧] ॥ ୧୯ ॥
ଶୂଳଂ ଶୂଳାଦ୍ୱିନିଷ୍କୃଷ୍ୟ ଦଦୌ ତସ୍ୟୈ ପିନାକଧୃକ୍ ।
ଚକ୍ରଂ ଚ ଦତ୍ତବାନ୍ କୃଷ୍ଣଃ ସମୁତ୍ପାଦ୍ୟ[୨] ସ୍ୱଚକ୍ରତଃ ॥ ୨୦ ॥

ଚନ୍ଦ୍ରଙ୍କ ତେଜରୁ ଦୁଇଟି ସ୍ତନ ଏବଂ ଇନ୍ଦ୍ରଙ୍କ ତେଜରୁ ମଧ୍ୟଭାଗ (କଟିପ୍ରଦେଶ) ପ୍ରାଦୁର୍ଭୂତ ହୋଇଥିଲା । ବରୁଣଙ୍କ ତେଜରୁ ଜଙ୍ଘ ଓ ପିଣ୍ଡ ତଥା ପୃଥିବୀର ତେଜରୁ ନିତମ୍ବଭାଗ ପ୍ରକଟିତ ହୋଇଥିଲା ॥ ୧୫ ॥ ବ୍ରହ୍ମାଙ୍କ ତେଜରୁ ଦୁଇଟି ଚରଣ ଏବଂ ସୂର୍ଯ୍ୟଙ୍କ ତେଜରୁ ପାଦର ଅଙ୍ଗୁଳିମାନ ଉତ୍ପନ୍ନ ହୋଇଥିଲା । ବସୁମାନଙ୍କ ତେଜରେ ହସ୍ତର ଅଙ୍ଗୁଳି ଏବଂ କୁବେରଙ୍କ ତେଜରେ ନାସିକା ପ୍ରକଟ ହୋଇଥିଲା ॥ ୧୬ ॥ ସେହି ଦେବୀଙ୍କ ଦାନ୍ତ ପ୍ରଜାପତିଙ୍କ ତେଜରେ ଓ ତିନୋଟି ନେତ୍ର ଅଗ୍ନିଙ୍କ ତେଜରେ ଉତ୍ପନ୍ନ ହୋଇଥିଲେ ॥ ୧୭ ॥ ତାଙ୍କ ଭ୍ରୂଲତା ସନ୍ଧ୍ୟାରୁ ଓ କର୍ଣ୍ଣ ବାୟୁର ତେଜରୁ ଉତ୍ପନ୍ନ ହୋଇଥିଲେ । ଏହିପ୍ରକାର ଅନ୍ୟାନ୍ୟ ଦେବତାମାନଙ୍କ ତେଜ ମଧ୍ୟ ମିଶିବାରୁ ତହିଁରୁ ସେହି କଲ୍ୟାଣମୟୀ ଦେବୀ ଆବିର୍ଭୂତା ହୋଇଥିଲେ ॥ ୧୮ ॥

ତାପରେ ସବୁ ଦେବତାଙ୍କ ତେଜପୁଞ୍ଜଦ୍ୱାରା ପ୍ରକଟ ହୋଇଥିବା ଦେବୀଙ୍କୁ ଦେଖି ମହିଷାସୁର ଦ୍ୱାରା ଦୁଃଖିତ ହୋଇଥିବା ଦେବତାମାନେ ବହୁତ ପ୍ରସନ୍ନ ହେଲେ ॥ ୧୯ ॥ ପିନାକଧାରୀ ଭଗବାନ୍ ଶଙ୍କର ନିଜ ଶୂଳରୁ ଗୋଟିଏ ଶୂଳ

୧. କେତେକ ପାଣ୍ଡୁଲିପିରେ ଏହା ପରେ 'ତତୋ ଦେବା ଦଦୁସ୍ତସ୍ୟୈ ସ୍ୱାନି ସ୍ୱାନ୍ୟାୟୁଧାନି ଚ । ଊଚୁର୍ଜୟଜୟେତ୍ୟୁଚ୍ଚୈର୍ଜୟନ୍ତୀଂ ତେ ଜୟୈଷିଣଃ ॥' ଏତିକି ପାଠ ଅଧିକ ରହିଛି । ୨. ପା.—ଟ୍ୟ ।

ଶଙ୍ଖଂ ଚ ବରୁଣଃ ଶକ୍ତିଂ ଦଦୌ ତସ୍ୟୈ ହୁତାଶନଃ ।
ମାରୁତୋ ଦତ୍ତବାଂଶ୍ଚାପଂ ବାଣପୂର୍ଣ୍ଣେ ତଥେଷୁଧୀ ॥ ୨୧ ॥
ବଜ୍ରମିନ୍ଦ୍ରଃ ସମୁତ୍ପାଦ୍ୟ[1] କୁଳିଶାଦମରାଧିପଃ ।
ଦଦୌ ତସ୍ୟୈ ସହସ୍ରାକ୍ଷୋ ଘଣ୍ଟାମୈରାବତାଦ୍ ଗଜାତ୍ ॥ ୨୨ ॥
କାଳଦଣ୍ଡାଦ୍ୟମୋ ଦଣ୍ଡଂ ପାଶଂ ଚାମ୍ବୁପତିର୍ଦ୍ଦଦୌ ।
ପ୍ରଜାପତିଶ୍ଚାକ୍ଷମାଳାଂ ଦଦୌ ବ୍ରହ୍ମା କମଣ୍ଡଳୁମ୍ ॥ ୨୩ ॥
ସମସ୍ତରୋମକୂପେଷୁ ନିଜରଶ୍ମୀନ୍ ଦିବାକରଃ ।
କାଳଶ୍ଚ ଦତ୍ତବାନ୍ ଖଡ୍ଗଂ ତସ୍ୟା[2]ଶ୍ଚର୍ମ ଚ ନିର୍ମଳମ୍ ॥ ୨୪ ॥
କ୍ଷୀରୋଦଶ୍ଚାମଳଂ ହାରମଜରେ ଚ ତଥାମ୍ବରେ ।
ଚୂଡାମଣିଂ ତଥା ଦିବ୍ୟଂ କୁଣ୍ଡଳେ କଟକାନି ଚ ॥ ୨୫ ॥
ଅର୍ଦ୍ଧଚନ୍ଦ୍ରଂ ତଥା ଶୁଭ୍ରଂ କେୟୂରାନ୍ ସର୍ବବାହୁଷୁ ।
ନୂପୁରୌ ବିମଳୌ ତଦ୍ୱଦ୍ ଗ୍ରୈବେୟକମନୁତ୍ତମମ୍ ॥ ୨୬ ॥

ବାହାର କରି ତାଙ୍କୁ ଦେଲେ । ପୁନଶ୍ଚ ଭଗବାନ୍ ବିଷ୍ଣୁ ନିଜ ଚକ୍ରରୁ ଚକ୍ର ଉତ୍ପନ୍ନ କରି ଭଗବତୀଙ୍କୁ ଅର୍ପଣ କଲେ ॥ ୨୦ ॥ ବରୁଣ ମଧ୍ୟ ଶଙ୍ଖ ଉପହାର ଦେଲେ । ଅଗ୍ନି ତାଙ୍କୁ ଶକ୍ତି ଦେଲେ ଏବଂ ବାୟୁ ଧନୁ ଏବଂ ଶରଦ୍ୱାରା ପରିପୂର୍ଣ୍ଣ ଦୁଇଟି ତୂଣୀର ପ୍ରଦାନ କଲେ ॥ ୨୧ ॥ ସହସ୍ର ନେତ୍ରଯୁକ୍ତ ଦେବରାଜ ଇନ୍ଦ୍ର ନିଜ ବଜ୍ରରୁ ବଜ୍ର ଉତ୍ପନ୍ନ କରି ପ୍ରଦାନ କଲେ ଏବଂ ଐରାବତ ହସ୍ତୀଠାରୁ କାଢ଼ି ଏକ ଘଣ୍ଟା ମଧ୍ୟ ପ୍ରଦାନ କଲେ ॥ ୨୨ ॥ ଯମରାଜ କାଳଦଣ୍ଡରୁ ଦଣ୍ଡ, ବରୁଣ ପାଶ, ପ୍ରଜାପତି ସ୍ଫଟିକାକ୍ଷମାଳା ତଥା ବ୍ରହ୍ମା କମଣ୍ଡଳୁ ପ୍ରଦାନ କଲେ ॥ ୨୩ ॥ ସୂର୍ଯ୍ୟଦେବ ଦେବୀଙ୍କ ସମସ୍ତ ଲୋମକୂପରେ ନିଜ କିରଣର ତେଜ ଭରି ଦେଲେ । କାଳ ତାଙ୍କୁ ଚକ୍‌ମକ୍ କରୁଥିବା ଢାଲ ଏବଂ ଖଣ୍ଡା ପ୍ରଦାନ କଲେ ॥ ୨୪ ॥ କ୍ଷୀରସମୁଦ୍ର ଉଜ୍ଜ୍ୱଳ ହାର ତଥା କଦାପି ଜୀର୍ଣ୍ଣ ହେଉ ନ ଥିବା ଦୁଇଟି ଦିବ୍ୟ ବସ୍ତ୍ର ପ୍ରଦାନ କଲେ । ଏହାସହିତ ସେ ଦିବ୍ୟ ଚୂଡ଼ାମଣି, ଦୁଇଟି କୁଣ୍ଡଳ, କଙ୍କଣ, ଉଜ୍ଜ୍ୱଳ ଅର୍ଦ୍ଧଚନ୍ଦ୍ର, ସବୁ ବାହୁ ନିମନ୍ତେ କେୟୂର, ଦୁଇଟି ଚରଣନିମନ୍ତେ ନିର୍ମଳ ନୂପୁର, ଗଳାପାଇଁ ସୁନ୍ଦର ହାର ଏବଂ ଅଙ୍ଗୁଳିରେ ପିନ୍ଧିବା ନିମନ୍ତେ ରତ୍ନଖଚିତ ଅଙ୍ଗୁରୀୟକ ପ୍ରଦାନ

୧. ପା.—ତ୍ୟ । ୨. ପା.—ତସ୍ୟୈ ଚର୍ମ ।

ଅଙ୍ଗୁଳୀୟକରତ୍ନାନି ସମସ୍ତାସ୍ୱଙ୍ଗୁଳୀଷୁ ଚ ।
ବିଶ୍ୱକର୍ମା ଦଦୌ ତସ୍ୟୈ ପରଶୁଂ ଚାତିନିର୍ମଳମ୍ ॥ ୨୭ ॥
ଅସ୍ତ୍ରାଣ୍ୟନେକରୂପାଣି ତଥାଭେଦ୍ୟଂ ଚ ଦଂଶନମ୍ ।
ଅମ୍ଳାନପଙ୍କଜାଂ ମାଳାଂ ଶିରସ୍ୟୁରସି ଚାପରାମ୍ ॥ ୨୮ ॥
ଅଦଦଜ୍ଜଳଧିସ୍ତସ୍ୟୈ ପଙ୍କଜଂ ଚାତିଶୋଭନମ୍ ।
ହିମବାନ୍ ବାହନଂ ସିଂହଂ ରତ୍ନାନି ବିବିଧାନି ଚ ॥ ୨୯ ॥
ଦଦାବଶୂନ୍ୟଂ ସୁରୟା ପାନପାତ୍ରଂ ଧନାଧିପଃ ।
ଶେଷଶ୍ଚ ସର୍ବନାଗେଶୋ ମହାମଣିବିଭୂଷିତମ୍ ॥ ୩୦ ॥
ନାଗହାରଂ ଦଦୌ ତସ୍ୟୈ ଧତ୍ତେ ଯଃ ପୃଥିବୀମିମାମ୍ ।
ଅନ୍ୟୈରପି ସୁରୈର୍ଦେବୀ ଭୂଷଣୈରାୟୁଧୈସ୍ତଥା ॥ ୩୧ ॥
ସମ୍ମାନିତା ନନାଦୋଚ୍ଚୈଃ ସାଟ୍ଟହାସଂ ମୁହୁର୍ମୁହୁଃ ।
ତସ୍ୟା ନାଦେନ ଘୋରେଣ କୃତ୍ସ୍ନମାପୂରିତଂ ନଭଃ ॥ ୩୨ ॥
ଅମାୟତାତିମହତା ପ୍ରତିଶବ୍ଦୋ ମହାନଭୂତ୍ ।
ଚୁକ୍ଷୁଭୁଃ ସକଳା ଲୋକାଃ ସମୁଦ୍ରାଶ୍ଚ ଚକମ୍ପିରେ ॥ ୩୩ ॥

---

କଲେ । ବିଶ୍ୱକର୍ମା ତାଙ୍କୁ ଚିକ୍‌ଚିକ୍ କରୁଥିବା ଅତ୍ୟନ୍ତ ଉଜ୍ଜ୍ୱଳ ଫାର୍ଶା ପ୍ରଦାନ କଲେ ॥ ୨୫—୨୭ ॥ ଏହା ସହିତ ଅନେକପ୍ରକାରର ଅସ୍ତ୍ର ଏବଂ ଅଭେଦ୍ୟ କବଚ ପ୍ରଦାନ କଲେ । ଏତଦ୍‌ବ୍ୟତୀତ ମସ୍ତକ ଏବଂ ବକ୍ଷଃସ୍ଥଳରେ ଧାରଣ କରିବା ପାଇଁ ଅମ୍ଳାନ ପଦ୍ମମାଳା ଦେଲେ ॥ ୨୮ ॥ ସମୁଦ୍ର ତାଙ୍କୁ ସୁନ୍ଦର କମଳପୁଷ୍ପ ଉପହାର ଦେଲେ । ହିମାଳୟ ବାହନ ପାଇଁ ସିଂହ ଓ ବିବିଧ ରତ୍ନ ସମର୍ପଣ କଲେ ॥ ୨୯ ॥ ଧନାଧ୍ୟକ୍ଷ କୁବେର ମଧୁ ପରିପୂର୍ଣ୍ଣ ପାନପାତ୍ର ପ୍ରଦାନ କଲେ ତଥା ନାଗରାଜ ଶେଷ, ଯିଏ ଏହି ପୃଥିବୀକୁ ଧାରଣ କରିଛନ୍ତି; ତାଙ୍କୁ ବହୁମୂଲ୍ୟର ମଣିଦ୍ୱାରା ବିଭୂଷିତ ନାଗହାର ପ୍ରଦାନ କଲେ । ଏହିପ୍ରକାର ଅନ୍ୟ ଦେବତାମାନେ ମଧ୍ୟ ଆଭୂଷଣ ଏବଂ ଅସ୍ତ୍ର-ଶସ୍ତ୍ର ପ୍ରଦାନ କରି ଦେବୀଙ୍କୁ ସମ୍ମାନ ପ୍ରଦାନ କଲେ । ତତ୍‌ପଶ୍ଚାତ୍ ସେ ବାରମ୍ବାର ଅଟ୍ଟହାସପୂର୍ବକ ଉଚ୍ଚସ୍ୱରରେ ଗର୍ଜନ କଲେ । ତାଙ୍କର ଭୟଙ୍କର ନାଦରେ ସମଗ୍ର ଆକାଶ କମ୍ପି ଉଠିଲା ॥ ୩୦—୩୨ ॥ ଦେବୀଙ୍କ ସେହି ଅତ୍ୟନ୍ତ

**ଚଚାଲ ବସୁଧା ଚେଲୁଃ ସକଲାଶ୍ଚ ମହୀଧରାଃ ।**
**ଜୟେତି ଦେବାଶ୍ଚ ମୁଦା ତାମୂଚୁଃ ସିଂହବାହିନୀମ୍[1] ॥ ୩୪ ॥**
**ତୁଷ୍ଟୁବୁର୍ମୁନୟଶ୍ଚୈନାଂ ଭକ୍ତିନମ୍ରାତ୍ମମୂର୍ତ୍ତୟଃ ।**
**ଦୃଷ୍ଟ୍ୱା ସମସ୍ତଂ ସଂକ୍ଷୁବ୍ଧଂ ତ୍ରୈଲୋକ୍ୟମମରାରୟଃ ॥ ୩୫ ॥**
**ସନ୍ନଦ୍ଧାଖିଲସୈନ୍ୟାସ୍ତେ ସମୁତ୍ତସ୍ଥୁରୁଦାୟୁଧାଃ ।**
**ଆଃ କିମେତଦିତି କ୍ରୋଧାଦାଭାଷ୍ୟ ମହିଷାସୁରଃ ॥ ୩୬ ॥**
**ଅଭ୍ୟଧାବତ ତଂ ଶବ୍ଦମଶେଷୈରସୁରୈର୍ବୃତଃ ।**
**ସ ଦଦର୍ଶ ତତୋ ଦେବୀଂ ବ୍ୟାପ୍ତଲୋକତ୍ରୟାଂ ତ୍ୱିଷା ॥ ୩୭ ॥**
**ପାଦାକ୍ରାନ୍ତ୍ୟା ନତଭୁବଂ କିରୀଟୋଲ୍ଲିଖିତାମ୍ବରାମ୍ ।**
**କ୍ଷୋଭିତାଶେଷପାତାଳାଂ ଧନୁର୍ଜ୍ୟାନିଃସ୍ୱନେନ ତାମ୍ ॥ ୩୮ ॥**

ଉଚ୍ଚସ୍ୱରରେ କରିଥିବା ସିଂହନାଦ କେବେହେଲେ ସହ୍ୟ ହେଉ ନ ଥିଲା । ଆକାଶ ସେହି ଶବ୍ଦ ସମ୍ମୁଖରେ ଲଘୁରୂପେ ପ୍ରତୀତ ହେଉଥିଲା । ତାଠାରୁ ବଡ଼ ଜୋରରେ ପ୍ରତିଧ୍ୱନି ହେଉଥିଲା । ତାହାଫଳରେ ସମଗ୍ର ବିଶ୍ୱ ଥରି ଉଠିଲା ଏବଂ ସମୁଦ୍ର କମ୍ପି ଉଠିଲା ॥ ୩୩ ॥ ପୃଥିବୀ ଟଳମଳ ହେଲା । ସମସ୍ତ ପର୍ବତ ଥରିଲେ । ସେହି ସମୟରେ ଦେବତାମାନେ ଅତ୍ୟନ୍ତ ପ୍ରସନ୍ନତାର ସହିତ ସିଂହବାହିନୀ ଭବାନୀଙ୍କୁ କହିଲେ—'ହେ ଦେବି ! ତୁମ୍ଭର ଜୟ ହେଉ' ॥ ୩୪ ॥ ଏକ ସଙ୍ଗରେ ମହର୍ଷିମାନେ ଭକ୍ତିଭାବରେ ବିନମ୍ର ହୋଇ ତାଙ୍କୁ ସ୍ତୁତି କଲେ ।

ସମଗ୍ର ତ୍ରିଲୋକକୁ କ୍ଷୋଭଗ୍ରସ୍ତ ଦେଖି ଦୈତ୍ୟଗଣ ନିଜର ସୈନ୍ୟଗଣଙ୍କୁ କବଚ ଆଦି ଦ୍ୱାରା ସୁସଜ୍ଜିତ କରି ହସ୍ତରେ ଅସ୍ତ୍ରଶସ୍ତ୍ର ଧରି ହଠାତ୍ ଉଠି ଦଣ୍ଡାୟମାନ ହେଲେ । ସେହି ସମୟରେ ମହିଷାସୁର ଅତି କ୍ରୋଧରେ ଆସି କହିଲା—'ଆଃ ! ଏ କଣ ହେଉଛି ?' ପୁନଶ୍ଚ ସେ ସମସ୍ତ ଅସୁରଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ସେହି ସିଂହନାଦକୁ ଲକ୍ଷ୍ୟ କରି ଦଉଡ଼ିଲା ଏବଂ ସମ୍ମୁଖରେ ଉପସ୍ଥିତ ହୋଇ ସେହି ଦେବୀଙ୍କୁ ଦେଖିଲା । ସେତେବେଳେ ଦେବୀ ନିଜ ପ୍ରଭାରେ ତ୍ରିଭୁବନକୁ ପ୍ରକାଶିତ କରୁଥିଲେ ॥ ୩୫—୩୭ ॥ ତାଙ୍କ ଚରଣର ଭାରରେ ପୃଥିବୀ ଦବିଯାଉଥିଲା । ମସ୍ତକର ମୁକୁଟଦ୍ୱାରା ଆକାଶରେ ରେଖା ସୃଷ୍ଟି ହେଉଥିଲା ଏବଂ ସେ ନିଜ ଧନୁର ଟଙ୍କାର ଦ୍ୱାରା ସପ୍ତ ପାତାଳକୁ କ୍ଷୁବ୍ଧ

୧. ପା.—ବାହନାମ୍ ।

ଦିଶୋ ଭୁଜସହସ୍ରେଣ ସମନ୍ତାଦ୍ ବ୍ୟାପ୍ୟ ସଂସ୍ଥିତାମ୍ ।
ତତଃ ପ୍ରବବୃତେ ଯୁଦ୍ଧଂ ତୟା ଦେବ୍ୟା ସୁରଦ୍ୱିଷାମ୍ ॥ ୩୯ ॥
ଶସ୍ତ୍ରାସ୍ତ୍ରୈର୍ବହୁଧା ମୁକ୍ତୈରାଦୀପିତଦିଗନ୍ତରମ୍ ।
ମହିଷାସୁରସେନାନୀଶ୍ଚିକ୍ଷୁରାଖ୍ୟୋ ମହାସୁରଃ ॥ ୪୦ ॥
ଯୁଯୁଧେ ଚାମରଶ୍ଚାନ୍ୟୈଶ୍ଚତୁରଙ୍ଗବଳାନ୍ୱିତଃ ।
ରଥାନାମୟୁତୈଃ ଷଡ୍ଭିରୁଦଗ୍ରାଖ୍ୟୋ ମହାସୁରଃ ॥ ୪୧ ॥
ଅୟୁଧ୍ୟତାୟୁତାନାଂ ଚ ସହସ୍ରେଣ ମହାହନୁଃ ।
ପଞ୍ଚାଶଦ୍ଭିଶ୍ଚ ନିୟୁତୈରସିଲୋମା ମହାସୁରଃ ॥ ୪୨ ॥
ଅୟୁତାନାଂ ଶତୈଃ ଷଡ୍ଭିର୍ବାଷ୍କଲୋ ଯୁଯୁଧେ ରଣେ ।
ଗଜବାଜିସହସ୍ରୌଘୈରନେକୈଃ[୧] ପରିବାରିତଃ[୨] ॥ ୪୩ ॥
ବୃତୋ ରଥାନାଂ କୋଟ୍ୟା ଚ ଯୁଦ୍ଧେ ତସ୍ମିନ୍ନୟୁଧ୍ୟତ ।
ବିଡାଲାଖ୍ୟୋଽୟୁତାନାଂ ଚ ପଞ୍ଚାଶଦ୍ଭିରଥାୟୁତୈଃ ॥ ୪୪ ॥

କରିଦେଉଥିଲେ ॥ ୩୮ ॥ ଦେବୀ ନିଜର ହଜାର ଭୁଜଦ୍ୱାରା ସମସ୍ତ ଦିଗକୁ ଆଚ୍ଛାଦିତ କରି ଦଣ୍ଡାୟମାନ ହୋଇଥିଲେ । ତାପରେ ତାଙ୍କ ସହିତ ଦୈତ୍ୟମାନେ ଯୁଦ୍ଧ କରିବାକୁ ଆରମ୍ଭ କଲେ ॥ ୩୯ ॥ ନାନାପ୍ରକାରର ଅସ୍ତ୍ରଶସ୍ତ୍ର ପ୍ରହାରରେ ସମସ୍ତ ଦିଗ ଉଦ୍ଭାସିତ ହେବାକୁ ଲାଗିଲେ । ଚିକ୍ଷୁର ନାମକ ବିରାଟ ଅସୁର ମହିଷାସୁରର ସେନାନାୟକ ଥିଲା ॥ ୪୦ ॥ ସେ ଦେବୀଙ୍କ ସହ ଯୁଦ୍ଧ କଲା । ଅନ୍ୟ ଦୈତ୍ୟମାନଙ୍କ ଚତୁରଙ୍ଗିଣୀ ସେନାଙ୍କୁ ସଙ୍ଗରେ ଧରି ଦୈତ୍ୟ ଚାମର ମଧ୍ୟ ଯୁଦ୍ଧ କଲା । ଷାଠିଏ ହଜାର ରଥୀମାନଙ୍କ ସହିତ ଆସି ଉଦଗ୍ର ନାମକ ମହାଦୈତ୍ୟ ଯୁଦ୍ଧ କଲା ॥ ୪୧ ॥ ଏକକୋଟି ରଥୀଙ୍କୁ ସଙ୍ଗରେ ନେଇ ମହାହନୁ ନାମକ ଦୈତ୍ୟ ଯୁଦ୍ଧ କଲା । ଯାହାର ଲୋମରାଜି ଖଣ୍ଡାସଦୃଶ ତୀକ୍ଷ୍ଣ; ସେହି ଅସିଲୋମା ନାମକ ମହାଦୈତ୍ୟ ପାଞ୍ଚକୋଟି ରଥୀ ସୈନିକ ସହିତ ଯୁଦ୍ଧରେ ଉପସ୍ଥିତ ହେଲା ॥ ୪୨ ॥ ଷାଠିଏ ଲକ୍ଷ ରଥୀଙ୍କଦ୍ୱାରା ପରିବେଷ୍ଟିତ ହୋଇ ବାଷ୍କଳ ନାମକ ଦୈତ୍ୟ ମଧ୍ୟ ସେହି ଯୁଦ୍ଧଭୂମିରେ ଯୁଦ୍ଧ କଲା । ପରିବାରିତ[୨] ନାମକ ରାକ୍ଷସ ଗଜାରୋହୀ ଓ ଅଶ୍ୱାରୋହୀଙ୍କର ଅନେକ ଦଳ ତଥା ଏକ

୧. ପା.—କୈରୁଗ୍ରଦର୍ଶନଃ । ୨. ପରିତୋ ବାରୟତି ଶତ୍ରୂନିତି ବ୍ୟୁତ୍ପତ୍ତିଃ ।

ଯୁଯୁଧେ ସଂଯୁଗେ ତତ୍ର ରଥାନାଂ ପରିବାରିତଃ[୧] ।
ଅନ୍ୟେ ଚ ତତ୍ରାୟୁତଶୋ ରଥନାଗହୟୈର୍ବୃତାଃ ॥ ୪୫ ॥
ଯୁଯୁଧୁଃ ସଂଯୁଗେ ଦେବ୍ୟା ସହ ତତ୍ର ମହାସୁରାଃ ।
କୋଟିକୋଟିସହସ୍ରୈସ୍ତୁ ରଥାନାଂ ଦନ୍ତିନାଂ ତଥା ॥ ୪୬ ॥
ହୟାନାଂ ଚ ବୃତୋ ଯୁଦ୍ଧେ ତତ୍ରାଭୂନ୍ମହିଷାସୁରଃ ।
ତୋମରୈର୍ଭିନ୍ଦିପାଲୈଶ୍ଚ ଶକ୍ତିଭିର୍ମୁସଲୈସ୍ତଥା ॥ ୪୭ ॥
ଯୁଯୁଧୁଃ ସଂଯୁଗେ ଦେବ୍ୟା ଖଡ୍ଗୈଃ ପରଶୁପଟ୍ଟିଶୈଃ ।
କେଚିଚ୍ଚ ଚିକ୍ଷିପୁଃ ଶକ୍ତୀଃ କେଚିତ୍ପାଶାଂସ୍ତଥାପରେ ॥ ୪୮ ॥
ଦେବୀଂ ଖଡ୍ଗପ୍ରହାରୈସ୍ତୁ ତେ ତାଂ ହନ୍ତୁଂ ପ୍ରଚକ୍ରମୁଃ ।
ସାପି ଦେବୀ ତତସ୍ତାନି ଶସ୍ତ୍ରାଣ୍ୟସ୍ତ୍ରାଣି ଚଣ୍ଡିକା ॥ ୪୯ ॥
ଲୀଲୟୈବ ପ୍ରଚିଚ୍ଛେଦ ନିଜଶସ୍ତ୍ରାସ୍ତ୍ରବର୍ଷିଣୀ ।
ଅନାୟସ୍ତାନନା ଦେବୀ ସ୍ତୂୟମାନା ସୁରର୍ଷିଭିଃ ॥ ୫୦ ॥

---

କୋଟି ରଥାରୋହୀଙ୍କୁ ନେଇ ଯୁଦ୍ଧ କଲା । ବିଡ଼ାଳ ନାମକ ଦୈତ୍ୟ ପାଞ୍ଚ ଶହ କୋଟି ରଥୀଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଯୁଦ୍ଧ କଲା । ଏହାବ୍ୟତୀତ ଆଉ ହଜାର ହଜାର ମହାଦୈତ୍ୟ ରଥ, ହସ୍ତୀ ଏବଂ ଅଶ୍ୱସେନାଙ୍କୁ ସଙ୍ଗରେ ଧରି ସେଠାରେ ଦେବୀଙ୍କ ସହ ଯୁଦ୍ଧ କଲେ । ସ୍ୱୟଂ ମହିଷାସୁର ସେହି ରଣଭୂମିରେ କୋଟି କୋଟି ସହସ୍ର ରଥ, ହସ୍ତୀ ଏବଂ ଅଶ୍ୱସେନା ସହିତ ପହଞ୍ଚିଲା । ସେହି ଦୈତ୍ୟମାନେ ତୋମର, ଭିନ୍ଦିପାଳ, ଶକ୍ତି, ମୂଷଳ, ଖଡ୍ଗ, ପରଶୁ ଏବଂ ପଟ୍ଟିଶ ଆଦି ଅସ୍ତ୍ରଶସ୍ତ୍ରଗୁଡ଼ିକୁ ଧରି ଦେବୀଙ୍କ ସହ ଯୁଦ୍ଧ କଲେ । କେତେକ ଦୈତ୍ୟ ତାଙ୍କ ଉପରେ ଶକ୍ତି ପ୍ରହାର କଲେ । କେତେକ ଫାଶ ଫୋପାଡ଼ିଲେ ॥ ୪୩—୪୮ ॥ ଅନ୍ୟ କେତେକ ଦୈତ୍ୟ ଖଡ୍ଗ ପ୍ରହାର କରି ଦେବୀଙ୍କୁ ମାରିବାପାଇଁ ଉଦ୍ୟମ କଲେ । ଦେବୀ ମଧ୍ୟ କ୍ରୋଧଭର ହୋଇ ଅନାୟାସରେ ନିଜ ଅସ୍ତ୍ରଶସ୍ତ୍ରକୁ ବର୍ଷା କରି ଦୈତ୍ୟମାନଙ୍କ ସେହି ସମସ୍ତ ଅସ୍ତ୍ରଶସ୍ତ୍ରକୁ କାଟିଦେଲେ । ତାଙ୍କ ମୁଖରେ ପରିଶ୍ରମ ବା କ୍ଳାନ୍ତଭାବର ଲେଶମାତ୍ର ଚିହ୍ନ ନ

---

୧. କେତେକ ପାଣ୍ଡୁଲିପିରେ ଏହାପରେ "କୃତଃ କାଳୋ ରଥାନାଂ ଚ ରଣେ ପଞ୍ଚାଶତାୟୁତୈଃ । ଯୁଯୁଧେ ସଂଯୁଗେ ତତ୍ର ତାବଦ୍ଭିଃ ପରିବାରିତଃ ॥" ଏତିକି ପାଠ ଅଧିକ ଅଛି ।

ମୁମୋଚାସୁରଦେହେଷୁ ଶସ୍ତ୍ରାଣ୍ୟସ୍ତ୍ରାଣି ଚେଶ୍ୱରୀ ।
ସୋଽପି କ୍ରୁଦ୍ଧୋ ଧୁତସଟୋ ଦେବ୍ୟା ବାହନକେସରୀ ॥ ୫୧ ॥
ଚଚାରାସୁରସୈନ୍ୟେଷୁ ବନେଷ୍ୱିବ ହୁତାଶନଃ ।
ନିଃଶ୍ୱାସାନ୍ ମୁମୁଚେ ଯାଂଶ୍ଚ ଯୁଧ୍ୟମାନା ରଣେଽମ୍ବିକା ॥ ୫୨ ॥
ତ ଏବ ସଦ୍ୟଃ ସମ୍ଭୂତା ଗଣାଃ ଶତସହସ୍ରଶଃ ।
ଯୁଯୁଧୁସ୍ତେ ପରଶୁଭିର୍ଭିନ୍ଦିପାଳାସିପଟ୍ଟିଶୈଃ ॥ ୫୩ ॥
ନାଶୟନ୍ତୋଽସୁରଗଣାନ୍ ଦେବୀଶକ୍ତ୍ୟୁପବୃଂହିତାଃ ।
ଅବାଦୟନ୍ତ ପଟହାନ୍ ଗଣାଃ ଶଙ୍ଖାଂସ୍ତଥାପରେ ॥ ୫୪ ॥
ମୃଦଙ୍ଗାଂଶ୍ଚ ତଥୈବାନ୍ୟେ ତସ୍ମିନ୍ ଯୁଦ୍ଧମହୋତ୍ସବେ ।
ତତୋ ଦେବୀ ତ୍ରିଶୂଳେନ ଗଦୟା ଶକ୍ତିବୃଷ୍ଟିଭିଃ[୧] ॥ ୫୫ ॥
ଖଡ୍‌ଗାଦିଭିଶ୍ଚ ଶତଶୋ ନିଜଘାନ ମହାସୁରାନ୍ ।
ପାତୟାମାସ ଚୈବାନ୍ୟାନ୍ ଘଣ୍ଟାସ୍ୱନବିମୋହିତାନ୍ ॥ ୫୬ ॥

ଥିଲା । ଦେବତା ଏବଂ ଋଷି ତାଙ୍କୁ ସ୍ତୁତି କରୁଥିଲେ ଏବଂ ସେହି ଭଗବତୀ ପରମେଶ୍ୱରୀ ଦୈତ୍ୟଙ୍କ ଶରୀର ଉପରେ ଅସ୍ତ୍ରଶସ୍ତ୍ର ବର୍ଷା କରୁଥିଲେ ।

ଦେବୀଙ୍କ ବାହନ ସିଂହ ମଧ୍ୟ କ୍ରୋଧରେ ନିଜର କଣ୍ଠପ୍ରଦେଶସ୍ଥ ରୋମରାଜି ପ୍ରକମ୍ପିତ କରି ଅସୁରମାନଙ୍କ ସେନାଗହଣରେ ଏପରି ବିଚରଣ କଲା, ସତେ ଯେପରି ଅରଣ୍ୟମଧ୍ୟରେ ନିଆଁ ଲାଗିଯାଇଛି କି ? ରଣଭୂମିରେ ଦୈତ୍ୟମାନଙ୍କ ସହ ଯୁଦ୍ଧ କରୁଥିବା ଅମ୍ବାଦେବୀ ଯେତେ ନିଃଶ୍ୱାସ ପରିତ୍ୟାଗ କରୁଥିଲେ; ସେସବୁ ସେତେବେଳେ ଶତସହସ୍ର ଗଣରୂପରେ ପ୍ରକଟ ହୋଇଗଲେ ଏବଂ ପରଶୁ, ଭିନ୍ଦିପାଳ, ଖଡ୍‌ଗ ଓ ପଟ୍ଟିଶ ଆଦି ଅସ୍ତ୍ରଦ୍ୱାରା ଅସୁରମାନଙ୍କୁ ପ୍ରତିରୋଧ କଲେ ॥ ୪୯—୫୩ ॥ ଦେବୀଙ୍କ ଶକ୍ତିରେ ଶକ୍ତିମାନ୍ ହୋଇଥିବା ସେହି ଗଣମାନେ ଅସୁରମାନଙ୍କୁ ବିନାଶ କରିବା ସହିତ ପଟହ(ନାଗରା) ଓ ଶଙ୍ଖ ପ୍ରଭୃତି ବଜାଇବାକୁ ଲାଗିଲେ ॥ ୫୪ ॥ ସେହି ସଂଗ୍ରାମ ମହୋତ୍ସବରେ କେତେକ ଗଣ ମୃଦଙ୍ଗ ବଜାଇଲେ । ତାପରେ ଦେବୀ ତ୍ରିଶୂଳ, ଗଦା ଓ ଶକ୍ତି ବର୍ଷା କରି ଏବଂ ଖଡ୍‌ଗ ଆଦିରେ ଶହ ଶହ ମହାଦୈତ୍ୟଙ୍କୁ ସଂହାର କଲେ । କେତେକଙ୍କୁ ଘଣ୍ଟାର ଭୟଙ୍କର ନାଦରେ ମୂର୍ଚ୍ଛିତ କରି ମାରିଦେଲେ ॥ ୫୫-୫୬ ॥

୧. ପା.—ଶରବୃଷ୍ଟିଭିଃ ।

ଅସୁରାନ୍ ଭୁବି ପାଶେନ ବଦ୍ଧ୍ୱା ଚ୍ନ୍ୟାନକର୍ଷୟତ୍ ।
କେଚିଦ୍ ଦ୍ୱିଧା କୃତାସ୍ତୀକ୍ଷ୍ଣୈଃ ଖଡ୍ଗପାତୈସ୍ତଥାପରେ ॥ ୫୭ ॥
ବିପୋଥିତା ନିପାତେନ ଗଦୟା ଭୁବି ଶେରତେ ।
ବେମୁଶ୍ଚ କେଚିଦ୍‌ରୁଧିରଂ ମୁସଲେନ ଭୃଶଂ ହତାଃ ॥ ୫୮ ॥
କେଚିନ୍ନିପତିତା ଭୂମୌ ଭିନ୍ନାଃ ଶୂଳେନ ବକ୍ଷସି ।
ନିରନ୍ତରାଃ ଶରୌଘେଣ କୃତାଃ କେଚିଦ୍ରଣାଜିରେ ॥ ୫୯ ॥
ଶ୍ୟେନାଽନୁକାରିଣଃ ପ୍ରାଣାନ୍ ମୁମୁଚୁସ୍ତ୍ରିଦଶାର୍ଦ୍ଦିନାଃ ।
କେଷାଂଚିଦ୍ ବାହବଶ୍ଛିନ୍ନାଶ୍ଛିନ୍ନଗ୍ରୀବାସ୍ତଥାପରେ ॥ ୬୦ ॥
ଶିରାଂସି ପେତୁରନ୍ୟେଷାମନ୍ୟେ ମଧ୍ୟେ ବିଦାରିତାଃ ।
ବିଚ୍ଛିନ୍ନଜଙ୍ଘାସ୍ତ୍ୱପରେ ପେତୁରୁର୍ବ୍ୟାଂ ମହାସୁରାଃ ॥ ୬୧ ॥
ଏକବାହ୍ୱକ୍ଷିଚରଣାଃ କେଚିଦ୍ଦେବ୍ୟା ଦ୍ୱିଧା କୃତାଃ ।
ଛିନ୍ନେଽପି ଚ୍ନ୍ୟେ ଶିରସି ପତିତାଃ ପୁନରୁତ୍ଥିତାଃ ॥ ୬୨ ॥

ଅନେକ ଦୈତ୍ୟଙ୍କୁ ଫାଶରେ ବାନ୍ଧି ପୃଥିବୀ ଉପରେ ଘୋଷାରିଲେ । କେତେକ ଦୈତ୍ୟ ତାଙ୍କର ତୀକ୍ଷ୍ଣ ଖଡ୍ଗଘେଟରେ କଟି ଖଣ୍ଡ ଖଣ୍ଡ ହୋଇଗଲେ ॥ ୫୭ ॥ କେତେକ ଗଦାର ଆଘାତରେ ଆହତ ହୋଇ ପୃଥିବୀ ଉପରେ ଶୋଇଗଲେ । କେତେକ ମୂଷଳ ପ୍ରହାରରେ ଅତ୍ୟନ୍ତ ଆହତ ହୋଇ ରକ୍ତ ବାନ୍ତି କଲେ ॥ ୫୮ ॥ ଶୂଳଘାତରେ କେତେକ ଦୈତ୍ୟଙ୍କ ବକ୍ଷଃସ୍ଥଳ ଫାଟିଯିବାରୁ ସେମାନେ ପୃଥିବୀ ଉପରେ ମରି ଶୋଇଲେ । ସେହି ରଣାଙ୍ଗନରେ ଅହରହ ବାଣସମୂହର ବୃଷ୍ଟିରେ କେତେକ ଅସୁରଙ୍କ ବଳ ଭାଙ୍ଗିଗଲା ॥ ୫୯ ॥ ବାଜପକ୍ଷୀ ପରି ଝାମ୍ପ ଦେଉଥିବା ଦେବପୀଡ଼କ ଦୈତ୍ୟଗଣ ପ୍ରାଣ ହରାଇଲେ । କାହାର ହସ୍ତ ଛିନ୍ନଭିନ୍ନ ହେଲା । କାହାର ବେକ ଛିଣ୍ଡିଗଲା ॥ ୬୦ ॥ କେତେକ ଦୈତ୍ୟଙ୍କ ମସ୍ତକ କଟି ତଳେ ପଡ଼ିଲା । କେତେକଙ୍କ ଶରୀରର ମଧ୍ୟଭାଗ ବିଦୀର୍ଣ୍ଣ ହୋଇଗଲା । କେତେକ ମହାଦୈତ୍ୟଙ୍କ ଜଙ୍ଘ କଟିଯିବାରୁ ସେମାନେ ଧରାଶାୟୀ ହେଲେ ॥ ୬୧ ॥ କେତେକଙ୍କୁ ଦେବୀ ଗୋଟିଏ ହସ୍ତ, ଗୋଟିଏ ପାଦ ଏବଂ ଗୋଟିଏ ନେତ୍ରଯୁକ୍ତ କରି ଦୁଇଫାଳ କରି ଚିରିଦେଲେ । କେତେକ ଦୈତ୍ୟଙ୍କ ମସ୍ତକ କଟି ଯିବାରୁ ତଳେ ପଡ଼ିଯାଇ ପୁନଶ୍ଚ ଉଠି ଠିଆ

୧. ପା.—ସେନାନୁ. । ଶଲ୍ୟାନୁ. । ଶୈଳାନୁ. ।

କବନ୍ଧା ଯୁଯୁଧୁର୍ଦ୍ଦେବ୍ୟା ଗୃହୀତପରମାୟୁଧାଃ ।
ନନୃତୁଶ୍ଚାପରେ ତତ୍ର ଯୁଦ୍ଧେ ତୂର୍ଯ୍ୟଲୟାଶ୍ରିତାଃ ॥ ୬୩ ॥
କବନ୍ଧାଶ୍ଛିନ୍ନଶିରସଃ ଖଡ୍ଗଶକ୍ତ୍ୟଷ୍ଟିପାଣୟଃ ।
ତିଷ୍ଠ ତିଷ୍ଠେତି ଭାଷନ୍ତୋ ଦେବୀମନ୍ୟେ ମହାସୁରାଃ[୧] ॥ ୬୪ ॥
ପାତିତୈ ରଥନାଗାଶ୍ୱୈରସୁରୈଶ୍ଚ ବସୁନ୍ଧରା ।
ଅଗମ୍ୟା ସାଭବତ୍ତତ୍ର ଯତ୍ରାଭୂତ୍ସ ମହାରଣଃ ॥ ୬୫ ॥
ଶୋଣିତୌଘା ମହାନଦ୍ୟଃ ସଦ୍ୟସ୍ତତ୍ର ପ୍ରସୁସ୍ରୁବୁଃ ।
ମଧ୍ୟେ ଚାସୁରସୈନ୍ୟସ୍ୟ ବାରଣାସୁରବାଜିନାମ୍ ॥ ୬୬ ॥
କ୍ଷଣେନ ତନ୍ମହାସୈନ୍ୟମସୁରାଣାଂ ତଥାମ୍ବିକା ।
ନିନ୍ୟେ କ୍ଷୟଂ ଯଥା ବହ୍ନିସ୍ତୃଣଦାରୁମହାଚୟମ୍ ॥ ୬୭ ॥

---

ହୋଇଗଲେ ॥ ୬୨ ॥ କେତେକ କବନ୍ଧ ଉତ୍ତମ ଅସ୍ତ୍ରଶସ୍ତ୍ର ହସ୍ତରେ ଧରି ଦେବୀଙ୍କ ସହ ଯୁଦ୍ଧ କଲେ । କେତେକ କବନ୍ଧ ଯୁଦ୍ଧର ବାଜାକୁ ଲୟ କରି ସେଠାରେ ନାଚିଲେ ॥ ୬୩ ॥ କେତେକ ମସ୍ତକବିହୀନ କବନ୍ଧ ହସ୍ତରେ ଖଡ୍ଗ, ଶକ୍ତି ଏବଂ ଋଷ୍ଟି ନେଇ ଦଉଡ଼ିଲେ ତଥା କେତେକ ମହାଦୈତ୍ୟ 'ଅପେକ୍ଷା କର, ଅପେକ୍ଷା କର' କହି ଦେବୀଙ୍କୁ ଯୁଦ୍ଧନିମନ୍ତେ ଆହ୍ୱାନ କରୁଥିଲେ ॥ ୬୪ ॥ ଯେଉଁଠାରେ ସେହି ଘୋର ସଂଗ୍ରାମ ହୋଇଥିଲା, ସେଠାରେ ଦେବୀଙ୍କ ଦ୍ୱାରା ଛିନ୍ନ-ଭିନ୍ନ ରଥ, ହସ୍ତୀ, ଅଶ୍ୱ ଏବଂ ଅସୁରମାନଙ୍କ ଶବରେ ଧରଣୀ ପରିପୂର୍ଣ୍ଣ ହୋଇଗଲା । ଏପରିକି ଗମନାଗମନ କରିବା ସମ୍ଭବପର ହେଲା ନାହିଁ ॥ ୬୫ ॥ ଦୈତ୍ୟମାନଙ୍କ ସେନାମଧ୍ୟରେ ହସ୍ତୀ, ଅଶ୍ୱ ଏବଂ ଅସୁରମାନଙ୍କ ଶରୀରରୁ ଏତେ ଅଧିକ ମାତ୍ରାରେ ରକ୍ତପାତ ହେଲା ଯେ କିଛି ସମୟ ମଧ୍ୟରେ ସେଠାରେ ବଡ଼ ବଡ଼ ରକ୍ତନଦୀ ପ୍ରବାହିତ ହେଲା ॥ ୬୬ ॥ ଯେପରି ତୃଣ ଏବଂ କାଷ୍ଠସମୂହକୁ ଅଗ୍ନି କିଛି କ୍ଷଣମଧ୍ୟରେ ଭସ୍ମ କରିଦିଏ; ସେହିପରି ଅସୁରମାନଙ୍କ ବିଶାଳ ସୈନ୍ୟବାହିନୀକୁ ଜଗଦମ୍ବା କ୍ଷଣକ ମଧ୍ୟରେ ନଷ୍ଟ କରିଦେଲେ ॥ ୬୭ ॥

---

୧. କେତେକ ପାଣ୍ଡୁଲିପିରେ ଏହାପରେ 'ରୁଧିରୌଘବିଲୁପ୍ତାଙ୍ଗାଃ ସଂଗ୍ରାମେ ଲୋମହର୍ଷଣେ ।' ଏତିକି ପାଠ ଅଧିକ ଅଛି ।

**ସ ଚ ସିଂହୋ ମହାନାଦମୁତ୍ସୃଜନ୍ଧୁତକେସରଃ ।**
**ଶରୀରେଭ୍ୟୋଽମରାରୀଣାମସୂନିବ ବିଚିନ୍ୱତି ॥ ୬୮ ॥**
**ଦେବ୍ୟା ଗଣୈଶ୍ଚ ତୈସ୍ତତ୍ର କୃତଂ ଯୁଦ୍ଧଂ ମହାସୁରୈଃ ।**
**ଯଥୈଷାଂ[୧] ତୁତୁଷୁର୍ଦେବାଃ[୨] ପୁଷ୍ପବୃଷ୍ଟିମୁଚୋ ଦିବି ॥ ଓଁ ॥ ୬୯ ॥**

*ଇତି ଶ୍ରୀମାର୍କଣ୍ଡେୟପୁରାଣେ ସାବର୍ଣିକେ ମନ୍ୱନ୍ତରେ ଦେବୀମାହାତ୍ମ୍ୟେ*
*ମହିଷାସୁରସୈନ୍ୟବଧୋ ନାମ ଦ୍ୱିତୀୟୋଽଧ୍ୟାୟଃ ॥ ୨ ॥*

*ଉବାଚ ୧, ଶ୍ଳୋକାଃ ୬୮, ଏବମ୍ ୬୯,*
*ଏବମାଦିତଃ ୧୭୩ ॥*



ସେହି ସିଂହ ବେକର ଲୋମରାଜିକୁ ଫୁଲାଇ ଅତି ଜୋରରେ ଗର୍ଜନ କରି ଦୈତ୍ୟମାନଙ୍କ ଶରୀରରୁ ସେମାନଙ୍କ ପ୍ରାଣକୁ ହରଣ କରୁଥିଲା ॥ ୬୮ ॥ ସେଠାରେ ଦେବୀଙ୍କ ଗଣ ମଧ୍ୟ ସେହି ମହାଦୈତ୍ୟଙ୍କ ସହିତ ଏପରି ଯୁଦ୍ଧ କଲେ; ଯାହା ଫଳରେ ଆକାଶରେ ଦଣ୍ଡାୟମାନ ହୋଇଥିବା ଦେବଗଣ ସେମାନଙ୍କ ଉପରେ ବହୁତ ସନ୍ତୁଷ୍ଟ ହୋଇ ପୁଷ୍ପବର୍ଷା କଲେ ॥ ୬୯ ॥

*ଏହିପ୍ରକାର ଶ୍ରୀମାର୍କଣ୍ଡେୟପୁରାଣରେ ସାବର୍ଣିକ ମନ୍ୱନ୍ତରର*
*କଥାନ୍ତର୍ଗତ ଦେବୀମାହାତ୍ମ୍ୟରେ 'ମହିଷାସୁରର ସେନାବଧ'*
*ନାମକ ଦ୍ୱିତୀୟ ଅଧ୍ୟାୟ ସମ୍ପୂର୍ଣ୍ଣ ହେଲା ॥ ୨ ॥*



୧. ପା.—ଯଥୈନାଂ । ୨. ପା.—ତୁଷ୍ଟୁବୁର୍ଦେବାଃ ।

# ତୃତୀୟୋଽଧ୍ୟାୟଃ

## [ସେନାପତିମାନଙ୍କ ସମେତ ମହିଷାସୁର ବଧ]

### ଧ୍ୟାନମ୍

**ଓଁ ଉଦ୍ୟଭାନୁସହସ୍ରକାନ୍ତିମରୁଣକ୍ଷୌମାଂ ଶିରୋମାଳିକାଂ**
**ରକ୍ତାଲିପ୍ତପୟୋଧରାଂ ଜପବଟୀଂ ବିଦ୍ୟାମଭୀତିଂ ବରମ୍ ।**
**ହସ୍ତାବ୍ଜୈର୍ଦ୍ଦଧତୀଂ ତ୍ରିନେତ୍ରବିଲସଦ୍ୱକ୍ତ୍ରାରବିନ୍ଦଶ୍ରିୟଂ**
**ଦେବୀଂ ବଦ୍ଧହିମାଂଶୁରତ୍ନମୁକୁଟାଂ ବନ୍ଦେଽରବିନ୍ଦସ୍ଥିତାମ୍ ॥**

*ଓଁ ଋଷିରୁବାଚ ॥ ୧ ॥*

**ନିହନ୍ୟମାନଂ ତତ୍ସୈନ୍ୟମବଲୋକ୍ୟ ମହାସୁରଃ ।**
**ସେନାନୀଶ୍ଚିକ୍ଷୁରଃ କୋପାଦ୍ୟଯୌ ଯୋଦ୍ଧୁମଥାମ୍ବିକାମ୍ ॥ ୨ ॥**
**ସ ଦେବୀଂ ଶରବର୍ଷେଣ ବବର୍ଷ ସମରେଽସୁରଃ ।**
**ଯଥା ମେରୁଗିରେଃ ଶୃଙ୍ଗଂ ତୋୟବର୍ଷେଣ ତୋୟଦଃ ॥ ୩ ॥**

---

ଜଗଦମ୍ବାଙ୍କ ଶ୍ରୀଅଙ୍ଗର କାନ୍ତି ଉଦୟକାଳର ସହସ୍ର ସୂର୍ଯ୍ୟସଦୃଶ ଅଟେ । ସେ ରକ୍ତ ରଙ୍ଗର ରେଶମୀ ଶାଢୀ ପରିଧାନ କରିଛନ୍ତି । ତାଙ୍କ ଗଳାରେ ମୁଣ୍ଡମାଳା ଶୋଭା ପାଉଛି । ଦୁଇଟି ସ୍ତନ ଉପରେ ରକ୍ତ ଚନ୍ଦନର ଲେପ ଲଗା ହୋଇଛି । ସେ ନିଜର କରକମଳରେ ଜପମାଳିକା, ବିଦ୍ୟା ଏବଂ ଅଭୟ ତଥା ବର ନାମକ ମୁଦ୍ରାଗୁଡ଼ିକ ଧାରଣ କରିଛନ୍ତି । ତିନୋଟି ନେତ୍ରଦ୍ୱାରା ସୁଶୋଭିତ ମୁଖାରବିନ୍ଦ ଅତି ଶୋଭା ପାଉଛି । ତାଙ୍କର ମସ୍ତକ ଉପରେ ଚନ୍ଦ୍ରମା ସହିତ ରତ୍ନମୟ ମୁକୁଟ ବନ୍ଧା ହୋଇଅଛି । ସେ କମଳାସନରେ ବିରାଜମାନ କରିଛନ୍ତି । ଏପରି ଦେବୀଙ୍କୁ ମୁଁ ଭକ୍ତିପୂର୍ବକ ପ୍ରଣାମ କରୁଛି ।

**ଋଷି କହୁଛନ୍ତି**—॥ ୧ ॥ ଦୈତ୍ୟମାନଙ୍କ ସେନାକୁ ଏହିପରି କ୍ଷତିଗ୍ରସ୍ତ ହେଉଥିବାର ଦେଖି ମହାଦୈତ୍ୟ ସେନାପତି ଚିକ୍ଷୁର କ୍ରୋଧଭରେ ହୋଇ ଅମ୍ବିକା ଦେବୀଙ୍କ ସହିତ ଯୁଦ୍ଧ କରିବାପାଇଁ ଆଗଭର ହେଲା ॥ ୨ ॥ ସେହି ଅସୁର ରଣଭୂମିରେ ଦେବୀଙ୍କ ଉପରେ ଏତେ ଶର ବର୍ଷା କଲା ଯେ ସତେ ଯେପରି ମେଘମାଳା ମେରୁଗିରିର ଶିଖର ଉପରେ ଜଳଧାରା ବର୍ଷା କରୁଛି ॥ ୩ ॥

ତସ୍ୟଚ୍ଛିତ୍ତ୍ୱା ତତୋ ଦେବୀ ଲୀଲୟୈବ ଶରୋତ୍କରାନ୍ ।
ଜଘାନ ତୁରଗାନ୍ ବାଣୈର୍ଯନ୍ତାରଂ ଚୈବ ବାଜିନାମ୍ ॥ ୪ ॥
ଚିଚ୍ଛେଦ ଚ ଧନୁଃ ସଦ୍ୟୋ ଧ୍ୱଜଂ ଚାତିସମୁଚ୍ଛ୍ରିତମ୍ ।
ବିବ୍ୟାଧ ଚୈବ ଗାତ୍ରେଷୁ ଛିନ୍ନଧନ୍ୱାନମାଶୁଗୈଃ ॥ ୫ ॥
ସଚ୍ଛିନ୍ନଧନ୍ୱା ବିରଥୋ ହତାଶ୍ୱୋ ହତସାରଥିଃ ।
ଅଭ୍ୟଧାବତ ତାଂ ଦେବୀଂ ଖଡ୍‌ଗଚର୍ମଧରୋଽସୁରଃ ॥ ୬ ॥
ସିଂହମାହତ୍ୟ ଖଡ୍‌ଗେନ ତୀକ୍ଷ୍ଣଧାରେଣ ମୂର୍ଦ୍ଧନି ।
ଆଜଘାନ ଭୁଜେ ସବ୍ୟେ ଦେବୀମପ୍ୟତିବେଗବାନ୍ ॥ ୭ ॥
ତସ୍ୟାଃ ଖଡ୍‌ଗୋ ଭୁଜଂ ପ୍ରାପ୍ୟ ପଫାଲ ନୃପନନ୍ଦନ ।
ତତୋ ଜଗ୍ରାହ ଶୂଳଂ ସ କୋପାଦରୁଣଲୋଚନଃ ॥ ୮ ॥
ଚିକ୍ଷେପ ଚ ତତସ୍ତତ୍ତୁ ଭଦ୍ରକାଳ୍ୟାଂ ମହାସୁରଃ ।
ଜାଜ୍ୱଲ୍ୟମାନଂ ତେଜୋଭୀ ରବିବିମ୍ବମିବାମ୍ବରାତ୍ ॥ ୯ ॥

---

ସେତେବେଳେ ଦେବୀ ନିଜ ଶରଦ୍ୱାରା ତାହାର ଶରସମୂହକୁ ଅନାୟାସରେ କାଟି ଦେଇ ତାହାର ଅଶ୍ୱ ଏବଂ ସାରଥିକୁ ମଧ୍ୟ ହତ୍ୟା କଲେ ॥ ୪ ॥ ଏହା ସହିତ ତାହାର ଧନୁ ତଥା ଅତ୍ୟନ୍ତ ଉଚ୍ଚ ଧ୍ୱଜାକୁ ତତ୍କାଳ କାଟି ତଳେ ପକାଇଦେଲେ । ଧନୁ କଟିଯିବା ପରେ ତାହାର ଅଙ୍ଗଗୁଡ଼ିକୁ ଶରବିଦ୍ଧ କରିଦେଲେ ॥ ୫ ॥ ଧନୁ, ରଥ, ଅଶ୍ୱ ଏବଂ ସାରଥି ନଷ୍ଟ ହେବା ପରେ ସେହି ଅସୁର ଢାଲ ଏବଂ ଖଡ୍‌ଗ ନେଇ ଦେବୀଙ୍କ ଆଡ଼କୁ ଦଉଡ଼ିଲା ॥ ୬ ॥ ସେ ତୀକ୍ଷ୍ଣ ତରବାରି ଦ୍ୱାରା ସିଂହର ମସ୍ତକ ଉପରେ ଆଘାତ କରି ଦେବୀଙ୍କ ବାମ ବାହୁରେ ଅତି ବେଗରେ ପ୍ରହାର କଲା ॥ ୭ ॥ ହେ ରାଜନ୍ ! ଦେବୀଙ୍କ ବାହୁ ଉପରେ ସେହି ତରବାରି ପହଞ୍ଚିବା ମାତ୍ରକେ ତାହା ଭାଙ୍ଗିଗଲା । ପୁନଶ୍ଚ କ୍ରୋଧରେ ଆରକ୍ତ ଚକ୍ଷୁରେ ସେହି ରାକ୍ଷସ ହସ୍ତରେ ଏକ ଶୂଳ ଧାରଣ କଲା ॥ ୮ ॥ ତାହାକୁ ସେହି ମହାଦୈତ୍ୟ ଭଗବତୀ ଭଦ୍ରକାଳୀଙ୍କ ଉପରକୁ ନିକ୍ଷେପ କଲା । ସେହି ଶୂଳ ଆକାଶରୁ ପଡ଼ିବା ମାତ୍ରକେ ସୂର୍ଯ୍ୟମଣ୍ଡଳ ସଦୃଶ ନିଜ ତେଜରେ ଝଟକି ଉଠିଲା ॥ ୯ ॥

ଦୃଷ୍ଟ୍ୱା ତଦାପତଚ୍ଛୂଳଂ ଦେବୀ ଶୂଳମମୁଞ୍ଚତ ।
ତଚ୍ଛୂଳଂ[୧] ଶତଧା ତେନ ନୀତଂ ସ ଚ ମହାସୁରଃ ॥ ୧୦ ॥
ହତେ ତସ୍ମିନ୍ମହାବୀର୍ଯ୍ୟେ ମହିଷସ୍ୟ ଚମୂପତୌ ।
ଆଜଗାମ ଗଜାରୂଢଶ୍ଚାମରସ୍ତ୍ରିଦଶାର୍ଦ୍ଦନଃ ॥ ୧୧ ॥
ସୋଽପି ଶକ୍ତିଂ ମୁମୋଚାଥ ଦେବ୍ୟାସ୍ତାମମ୍ବିକା ଦ୍ରୁତମ୍ ।
ହୁଂକାରାଭିହତାଂ ଭୂମୌ ପାତୟାମାସ ନିଷ୍ପ୍ରଭାମ୍ ॥ ୧୨ ॥
ଭଗ୍ନାଂ ଶକ୍ତିଂ ନିପତିତାଂ ଦୃଷ୍ଟ୍ୱା କ୍ରୋଧସମନ୍ୱିତଃ ।
ଚିକ୍ଷେପ ଚାମରଃ ଶୂଳଂ ବାଣୈସ୍ତଦପି ସାଚ୍ଛିନତ୍ ॥ ୧୩ ॥
ତତଃ ସିଂହଃ ସମୁତ୍ପତ୍ୟ ଗଜକୁମ୍ଭାନ୍ତରେ ସ୍ଥିତଃ ।
ବାହୁଯୁଦ୍ଧେନ ଯୁଯୁଧେ ତେନୋଚ୍ଚୈସ୍ତ୍ରିଦଶାରିଣା ॥ ୧୪ ॥
ଯୁଦ୍ଧ୍ୟମାନୌ ତତସ୍ତୌ ତୁ ତସ୍ମାନ୍ନାଗାନ୍ମହୀଂ ଗତୌ ।
ଯୁଯୁଧାତେଽତିସଂରବ୍ଧୌ ପ୍ରହାରୈରତିଦାରୁଣୈଃ ॥ ୧୫ ॥

---

ସେହି ଶୂଳକୁ ନିଜ ଆଡ଼କୁ ଆସୁଥିବାର ଦେଖି ଦେବୀ ମଧ୍ୟ ଶୂଳ ପ୍ରହାର କଲେ । ତାହାଦ୍ୱାରା ରାକ୍ଷସର ଶୂଳ ସହସ୍ରଧା ହୋଇଗଲା । ଏହା ସହିତ ମହାଦୈତ୍ୟ ଚିକ୍ଷୁର ମଧ୍ୟ ଛିନ୍ନ ଭିନ୍ନ ହୋଇ ପ୍ରାଣତ୍ୟାଗ କଲା ॥ ୧୦ ॥

ମହିଷାସୁରର ସେହି ମହାପରାକ୍ରମୀ ସେନାପତି ଚିକ୍ଷୁରର ମୃତ୍ୟୁ ହେବା ପରେ ଦେବତାମାନଙ୍କୁ ପୀଡ଼ା ପ୍ରଦାନ କରୁଥିବା ଦୈତ୍ୟ ଚାମର ହସ୍ତୀ ଉପରେ ଆରୋହଣ କରି ଆସିଲା । ସେ ମଧ୍ୟ ଦେବୀଙ୍କ ଉପରେ ଶକ୍ତି ପ୍ରହାର କଲା । କିନ୍ତୁ ଜଗଦମ୍ବା ତାହାକୁ ନିଜ ହୁଙ୍କାରରେ ଆହତ ଏବଂ ନିଷ୍ପ୍ରଭ କରି ତତ୍କାଳ ଭୂପତିତ କରିଦେଲେ ॥ ୧୧-୧୨ ॥ ଶକ୍ତି ଭାଙ୍ଗି ଯାଇ ତଳେ ପଡ଼ିଯିବାର ଦେଖି ଚାମର ଭୀଷଣ କ୍ରୋଧରେ ଶୂଳ ନିକ୍ଷେପ କଲା । କିନ୍ତୁ ଦେବୀ ତାହାକୁ ନିଜ ଶରଦ୍ୱାରା କାଟି ଦେଲେ ॥ ୧୩ ॥ ଇତିମଧ୍ୟରେ ଦେବୀଙ୍କ ସିଂହ ଲମ୍ଫ ଦେଇ ହସ୍ତୀର ମସ୍ତକ ଉପରକୁ ଚଢ଼ିଯାଇ ସେହି ଦୈତ୍ୟ ସହ ଅତି ଜୋରରେ ବାହୁଯୁଦ୍ଧ କଲା ॥ ୧୪ ॥ ସେ ଦୁହେଁ ଯୁଦ୍ଧ କରୁ କରୁ ହସ୍ତୀଉପରୁ ତଳକୁ ଖସି ପଡ଼ିଲେ ଏବଂ ଅତ୍ୟନ୍ତ କ୍ରୋଧଭର ହୋଇ ପରସ୍ପର ଉପରେ ଅତି ଭୟଙ୍କର ଭାବରେ ପ୍ରହାର କରି

---

୧. ପା.—ତେନ ତଚ୍ଛତଧା ନୀତଂ ।

ତତୋ ବେଗାତ୍ ଖମୁତ୍ପତ୍ୟ ନିପତ୍ୟ ଚ ମୃଗାରିଣା ।
କରପ୍ରହାରେଣ ଶିରଶ୍ଚାମରସ୍ୟ ପୃଥକ୍‌କୃତମ୍ ॥ ୧୬ ॥
ଉଦଗ୍ରଶ୍ଚ ରଣେ ଦେବ୍ୟା ଶିଲାବୃକ୍ଷାଦିଭିର୍ହତଃ ।
ଦନ୍ତମୁଷ୍ଟିତଲୈଶ୍ଚୈବ କରାଳଶ୍ଚ ନିପାତିତଃ ॥ ୧୭ ॥
ଦେବୀ କ୍ରୁଦ୍ଧା ଗଦାପାତୈଶ୍ଚୂର୍ଣ୍ଣୟାମାସ ଚୋଦ୍ଧତମ୍ ।
ବାଷ୍କଳଂ ଭିନ୍ଦିପାଲେନ ବାଣୈସ୍ତାମ୍ରଂ ତଥାନ୍ଧକମ୍ ॥ ୧୮ ॥
ଉଗ୍ରାସ୍ୟମୁଗ୍ରବୀର୍ଯ୍ୟଂ ଚ ତଥୈବ ଚ ମହାହନୁମ୍ ।
ତ୍ରିନେତ୍ରା ଚ ତ୍ରିଶୂଳେନ ଜଘାନ ପରମେଶ୍ୱରୀ ॥ ୧୯ ॥
ବିଡାଳସ୍ୟାସିନା କାୟାତ୍ପାତୟାମାସ ବୈ ଶିରଃ ।
ଦୁର୍ଧରଂ ଦୁର୍ମୁଖଂ ଚୋଭୌ ଶରୈର୍ନିନ୍ୟେ ଯମକ୍ଷୟମ୍[୧] ॥ ୨୦ ॥

ସଂଗ୍ରାମ କଲେ ॥ ୧୫ ॥ ତାପରେ ସିଂହ ଅତି ବେଗରେ ଆକାଶମଣ୍ଡଳକୁ ଲମ୍ଫ ଦେଲା । ସେଠାରୁ ତଳେ ପଡ଼ିବା ସମୟରେ ସେ ପଞ୍ଝା ମାରି ଚାମରର ମସ୍ତକକୁ ଶରୀରରୁ ପୃଥକ୍ କରିଦେଲା ॥ ୧୬ ॥ ଏହିପ୍ରକାର ଉଦଗ୍ର ମଧ୍ୟ ପଥର ଏବଂ ବୃକ୍ଷ ଆଦିଦ୍ୱାରା ମାଡ଼ ଖାଇ ରଣଭୂମିରେ ଦେବୀଙ୍କ ହସ୍ତରେ ନିହତ ହେଲା ତଥା କରାଳ ମଧ୍ୟ ଦାନ୍ତ, ମୁଷ୍ଟି ଏବଂ ଚାପୁଡ଼ା ଆଘାତରେ ଧରାଶାୟୀ ହେଲା ॥ ୧୭ ॥ ଦେବୀ କ୍ରୋଧଭର ହୋଇ ଗଦାର ଆଘାତରେ ଉଦ୍ଧତକୁ ବଧ କଲେ । ଭିନ୍ଦିପାଳଦ୍ୱାରା ବାଷ୍କଳକୁ ତଥା ବାଣରେ ତାମ୍ର ଏବଂ ଅନ୍ଧକକୁ ମାରିଦେଲେ ॥ ୧୮ ॥ ତିନୋଟି ନେତ୍ରଯୁକ୍ତା ପରମେଶ୍ୱରୀ ତ୍ରିଶୂଳଦ୍ୱାରା ଉଗ୍ରାସ୍ୟ, ଉଗ୍ରବୀର୍ଯ୍ୟ ତଥା ମହାହନୁ ନାମକ ଦୈତ୍ୟଙ୍କୁ ହତ୍ୟା କଲେ ॥ ୧୯ ॥ ତରବାରିର ଆଘାତରେ ବିଡାଳର ମସ୍ତକକୁ ଶରୀରରୁ କାଟି ଅଲଗା କରିଦେଲେ । ଦୁର୍ଧର ଏବଂ ଦୁର୍ମୁଖ—ଏ ଦୁହିଁଙ୍କୁ ମଧ୍ୟ ନିଜ ବାଣଦ୍ୱାରା ଯମଲୋକକୁ ପଠାଇ ଦେଲେ ॥ ୨୦ ॥

୧. କେତେକ ପାଣ୍ଡୁଲିପିରେ ଏହାପରେ—
'କାଳଂ ଚ କାଳଦଣ୍ଡେନ କାଳରାତ୍ରିରପାତୟତ୍ ।
ଉଗ୍ରଦର୍ଶନମତ୍ୟୁଗ୍ରୈଃ ଖଡ୍‌ଗପାତୈରତାଡୟତ୍ ॥
ଅସିନୈବାସିଲୋମାନମଚ୍ଛିଦତ୍ସା ରଣୋତ୍ସବେ ।
ଗଣୈଃ ସିଂହେନ ଦେବ୍ୟା ଚ ଜୟକ୍ଷ୍ୱେଡାକୃତୋତ୍ସବୈଃ ॥'
—ଏହି ଦୁଇଟି ଶ୍ଲୋକ ଅଧିକ ଅଛି ।

ଏବଂ ସଂକ୍ଷୀୟମାଣେ ତୁ ସ୍ୱସୈନ୍ୟେ ମହିଷାସୁରଃ ।
ମାହିଷେଣ ସ୍ୱରୂପେଣ ତ୍ରାସୟାମାସ ତାନ୍ ଗଣାନ୍ ॥ ୨୧ ॥
କାଂଶ୍ଚିତ୍ତୁଣ୍ଡପ୍ରହାରେଣ ଖୁରକ୍ଷେପୈସ୍ତଥାପରାନ୍ ।
ଲାଙ୍ଗୂଳତାଡିତାଂଶ୍ଚାନ୍ୟାନ୍ ଶୃଙ୍ଗାଭ୍ୟାଂ ଚ ବିଦାରିତାନ୍ ॥ ୨୨ ॥
ବେଗେନ କାଂଶ୍ଚିଦପରାନ୍ନାଦେନ ଭ୍ରମଣେନ ଚ ।
ନିଃଶ୍ୱାସପବନେନାନ୍ୟାନ୍ ପାତୟାମାସ ଭୂତଲେ ॥ ୨୩ ॥
ନିପାତ୍ୟ ପ୍ରମଥାନୀକମଭ୍ୟଧାବତ ସୋଽସୁରଃ ।
ସିଂହଂ ହନ୍ତୁଂ ମହାଦେବ୍ୟାଃ କୋପଂ ଚକ୍ରେ ତତୋଽମ୍ବିକା ॥ ୨୪ ॥
ସୋଽପି କୋପାନ୍ମହାବୀର୍ଯ୍ୟଃ ଖୁରକ୍ଷୁଣ୍ଣମହୀତଳଃ ।
ଶୃଙ୍ଗାଭ୍ୟାଂ ପର୍ବତାନୁଚ୍ଚାଂଶ୍ଚିକ୍ଷେପ ଚ ନନାଦ ଚ ॥ ୨୫ ॥
ବେଗଭ୍ରମଣବିକ୍ଷୁଣ୍ଣା ମହୀ ତସ୍ୟ ବ୍ୟଶୀର୍ଯ୍ୟତ ।
ଲାଙ୍ଗୂଳେନାହତଶ୍ଚାବ୍ଧିଃ ପ୍ଲାବୟାମାସ ସର୍ବତଃ ॥ ୨୬ ॥

---

ଏହିପ୍ରକାର ନିଜର ସେନା ସଂହାର ହେଉଥିବାର ଦେଖି ମହିଷାସୁର ମଇଁଷି ରୂପ ଧାରଣ କରି ଦେବୀଙ୍କ ସୈନ୍ୟଗଣଙ୍କୁ ଭୟ ପ୍ରଦାନ କରିବାକୁ ଆରମ୍ଭ କଲା ॥ ୨୧ ॥ ସେ କେତେକଙ୍କୁ ମୁଖ ଆଘାତରେ, କେତେକଙ୍କୁ ଲାତ ମାରି, କେତେକଙ୍କୁ ଲାଞ୍ଜରେ ଆଘାତ ଦେଇ, କେତେକଙ୍କୁ ଶିଙ୍ଗରେ ବିଦୀର୍ଣ୍ଣ କରି, କେତେକଙ୍କୁ ଗୋଡ଼ାଇ, କେତେକଙ୍କୁ ସିଂହନାଦରେ, କେତେକଙ୍କୁ ଚକ୍‌କର ଦେଇ ଏବଂ କେତେକଙ୍କୁ ନିଃଶ୍ୱାସବାୟୁ ଦ୍ୱାରା ଆଘାତ ଦେଇ ଧରାଶାୟୀ କରିଦେଲା ॥ ୨୨-୨୩ ॥ ଏହିପ୍ରକାର ଦେବୀଙ୍କ ସେନାକୁ ଧରାଶାୟୀ କରି ସେହି ଅସୁର ମହାଦେବୀଙ୍କ ସିଂହକୁ ହତ୍ୟା କରିବାପାଇଁ ଝାମ୍ପ ଦେଲା । ଏହାଦ୍ୱାରା ଜଗଦମ୍ବା ବିଶେଷ କ୍ରୋଧାନ୍ୱିତ ହେଲେ ॥ ୨୪ ॥ ତେଣେ ମହାପରାକ୍ରମୀ ମହିଷାସୁର ମଧ୍ୟ କ୍ରୋଧରେ ଧରଣୀକୁ ଖୋଳିବାକୁ ଲାଗିଲା ତଥା ନିଜ ଶିଙ୍ଗରେ ଉଚ୍ଚ ଉଚ୍ଚ ପର୍ବତକୁ ଉଠାଇ ଫୋପାଡ଼ି ଗର୍ଜ୍ଜନ କଲା ॥ ୨୫ ॥ ସେ ପ୍ରବଳ ବେଗରେ ଘୂରିବାରୁ ପୃଥିବୀ କ୍ଷୁବ୍‌ଧ ହୋଇ ବିଦୀର୍ଣ୍ଣ ହୋଇଗଲା । ତାହାର ଲାଞ୍ଜ ଆଘାତରେ ସମୁଦ୍ର ଉଦ୍‌ବେଳିତ ହୋଇ ସବୁ ଆଡୁ ଧରଣୀକୁ ଜଳମଗ୍ନ କରିବାକୁ ଲାଗିଲା ॥ ୨୬ ॥

ଧୁତଶୃଙ୍ଗବିଭିନ୍ନାଶ୍ଚ ଖଣ୍ଡଂ[୧] ଖଣ୍ଡଂ ଯଯୁର୍ଘନାଃ ।
ଶ୍ୱାସାନିଳାସ୍ତାଃ ଶତଶୋ ନିପେତୁର୍ନଭସୋଽଚଳାଃ ॥ ୨୭ ॥
ଇତି କ୍ରୋଧସମାଧ୍ମାତମାପତନ୍ତଂ ମହାସୁରମ୍ ।
ଦୃଷ୍ଟ୍ୱା ସା ଚଣ୍ଡିକା କୋପଂ ତଦ୍‌ବଧାୟ ତଦାକରୋତ୍ ॥ ୨୮ ॥
ସା କ୍ଷିପ୍‌ତ୍ୱା ତସ୍ୟ ବୈ ପାଶଂ ତଂ ବବନ୍ଧ ମହାସୁରମ୍ ।
ତତ୍ୟାଜ ମାହିଷଂ ରୂପଂ ସୋଽପି ବଦ୍ଧୋ ମହାମୃଧେ ॥ ୨୯ ॥
ତତଃ ସିଂହୋଽଭବତ୍‌ସଦ୍ୟୋ ଯାବତ୍ତସ୍ୟାମ୍ବିକା ଶିରଃ ।
ଛିନତ୍ତି ତାବତ୍‌ପୁରୁଷଃ ଖଡ୍‌ଗପାଣିରଦୃଶ୍ୟତ ॥ ୩୦ ॥
ତତ ଏବାଶୁ ପୁରୁଷଂ ଦେବୀ ଚିଚ୍ଛେଦ ସାୟକୈଃ ।
ତଂ ଖଡ୍‌ଗଚର୍ମଣା ସାର୍ଧଂ ତତଃ ସୋଽଭୂନ୍ମହାଗଜଃ ॥ ୩୧ ॥

---

ହଲାଉଥିବା ଶିଙ୍ଗର ଆଘାତରେ ମେଘମାଳା ଖଣ୍ଡ ଖଣ୍ଡ ହୋଇଗଲା । ତାହାର ଶ୍ୱାସର ପ୍ରଚଣ୍ଡ ବାୟୁ ବେଗରେ ଉଡୁଥିବା ସହସ୍ର ସହସ୍ର ପର୍ବତ ଆକାଶରୁ ତଳକୁ ଖସି ପଡ଼ିଲେ ॥ ୨୭ ॥ ଏହିପରି କ୍ରୋଧଭର ହୋଇ ସେହି ମହାଦୈତ୍ୟକୁ ନିଜ ଆଡ଼କୁ ଆସୁଥିବାର ଦେଖି ଦେବୀ ଚଣ୍ଡିକା ତାହାକୁ ବଧ କରିବା ପାଇଁ ଅତ୍ୟନ୍ତ କ୍ରୋଧ କଲେ ॥ ୨୮ ॥ ସେ ପାଶ ଫିଙ୍ଗି ସେହି ମହାନ୍ ଅସୁରକୁ ବାନ୍ଧି ଦେଲେ । ସେହି ମହାସଂଗ୍ରାମରେ ବନ୍ଧା ହେବା ପରେ ସେ ମଇଁଷିର ରୂପ ପରିତ୍ୟାଗ କଲା ॥ ୨୯ ॥ ଏବଂ ହଠାତ୍ ସେ ସିଂହରୂପରେ ପ୍ରକଟ ହେଲା । ସେହି ଅବସ୍ଥାରେ ଜଗଦମ୍ବା ଯେମିତି ତାର ମସ୍ତକ କାଟିବାକୁ ଉଦ୍ୟତ ହେଲେ; ସେତେବେଳେ ସେ ଏକ ଖଡ୍‌ଗଧାରୀ ପୁରୁଷ ରୂପରେ ଦେଖାଦେଲା ॥ ୩୦ ॥ ଦେବୀ ଅବିଳମ୍ବେ ବାଣବର୍ଷା କରି ତଥା ଢାଲ ଓ ତରବାରି ଦ୍ୱାରା ସେହି ପୁରୁଷକୁ ମଧ୍ୟ ଆଘାତ କଲେ । ଇତିମଧ୍ୟରେ ସେ ବିରାଟ ହାତୀ ରୂପରେ ପରିଣତ ହୋଇଗଲା ॥ ୩୧ ॥ ତଥା ନିଜ ଶୁଣ୍ଢରେ ଦେବୀଙ୍କ ବିଶାଳ ସିଂହକୁ ଆକ୍ରମଣ କରି ଘୋର ଗର୍ଜନ କଲା । ଆକ୍ରମଣ

---

୧. ପା.—ଖଣ୍ଡଖଣ୍ଡଂ ।

**କରେଣ ଚ ମହାସିଂହଂ ତଂ ଚକର୍ଷ ଜଗର୍ଜ ଚ ।**
**କର୍ଷିତସ୍ତୁ କରଂ ଦେବୀ ଖଡ୍ଗେନ ନିରକୃନ୍ତତ ॥ ୩୨ ॥**
**ତତୋ ମହାସୁରୋ ଭୂୟୋ ମାହିଷଂ ବପୁରାସ୍ଥିତଃ ।**
**ତଥୈବ କ୍ଷୋଭୟାମାସ ତ୍ରୈଲୋକ୍ୟଂ ସଚରାଚରମ୍ ॥ ୩୩ ॥**
**ତତଃ କ୍ରୁଦ୍ଧା ଜଗନ୍ମାତା ଚଣ୍ଡିକା ପାନମୁତ୍ତମମ୍ ।**
**ପପୌ ପୁନଃ ପୁନଶ୍ଚୈବ ଜହାସାରୁଣଲୋଚନା ॥ ୩୪ ॥**
**ନନର୍ଦ ଚାସୁରଃ ସୋଽପି ବଲବୀର୍ୟମଦୋଦ୍ଧତଃ ।**
**ବିଷାଣାଭ୍ୟାଂ ଚ ଚିକ୍ଷେପ ଚଣ୍ଡିକାଂ ପ୍ରତି ଭୂଧରାନ୍ ॥ ୩୫ ॥**
**ସା ଚ ତାନ୍ ପ୍ରହିତାଂସ୍ତେନ ଚୂର୍ଣ୍ଣୟନ୍ତୀ ଶରୋତ୍କରୈଃ ।**
**ଉବାଚ ତଂ ମଦୋଦ୍ଧୂତମୁଖରାଗାକୁଲାକ୍ଷରମ୍ ॥ ୩୬ ॥**

*ଦେବ୍ୟୁବାଚ ॥ ୩୭ ॥*

**ଗର୍ଜ ଗର୍ଜ କ୍ଷଣଂ ମୂଢ ମଧୁ ଯାବତ୍ପିବାମ୍ୟହମ୍ ।**
**ମୟା ତ୍ୱୟି ହତେଽତ୍ରୈବ ଗର୍ଜିଷ୍ୟନ୍ତ୍ୟାଶୁ ଦେବତାଃ ॥ ୩୮ ॥**

---

କରିବା ସମୟରେ ଦେବୀ ତାଙ୍କର ଖଡ୍ଗରେ ତାହାର ଶୁଣ୍ଢକୁ କାଟି ଦେଲେ ॥ ୩୨ ॥ ସେତିକିବେଳେ ସେହି ମହାଦୈତ୍ୟ ପୁନଃ ମଇଁଷି ଶରୀର ଧାରଣ କରି ପ୍ରଥମ ଥର ପରି ଚରାଚର ପ୍ରାଣୀମାନଙ୍କ ସହିତ ତ୍ରିଭୁବନକୁ ବ୍ୟାକୁଳିତ କଲା ॥ ୩୩ ॥ ସେତେବେଳେ କ୍ରୋଧଭର ହୋଇ ଜଗନ୍ମାତା ଚଣ୍ଡିକା ବାରମ୍ବାର ଉତ୍ତମ ମଧୁକୁ ପାନ କଲେ ଏବଂ ରକ୍ତବର୍ଣ୍ଣ ଚକ୍ଷୁ କରି ହସିଲେ ॥ ୩୪ ॥ ତେଣେ ବଳ ଏବଂ ପରାକ୍ରମ ଗର୍ବରେ ଉନ୍ମତ୍ତ ହୋଇ ରାକ୍ଷସ ଗର୍ଜନ କରିବାକୁ ଲାଗିଲା ଏବଂ ନିଜ ଶୃଙ୍ଗରେ ଚଣ୍ଡୀଙ୍କ ଉପରେ ପର୍ବତଗୁଡ଼ିକୁ ଫିଙ୍ଗିବାକୁ ଲାଗିଲା ॥ ୩୫ ॥ ସେହି ସମୟରେ ଦେବୀ ବାଣ ବର୍ଷା କରି ସେହି ପର୍ବତଗୁଡ଼ିକୁ ଚୂର୍ଣ୍ଣ କରିଦେଲେ । ସେତେବେଳେ ତାଙ୍କର ମୁଖମଣ୍ଡଳ ମଧୁପାନ ପ୍ରଭାବରେ ଲାଲ ହୋଇ ଯାଇଥିଲା ଏବଂ କ୍ରୋଧରେ ତାଙ୍କ କଣ୍ଠର ସ୍ୱରଭଙ୍ଗ ହେଉଥିଲା । ସେ କମ୍ପିତ କଣ୍ଠରେ କହିଲେ ॥ ୩୬ ॥

**ଦେବୀ କହିଲେ**—॥ ୩୭ ॥ ରେ ମୂଢ଼ ! ମୁଁ ଯେପର୍ଯ୍ୟନ୍ତ ମଧୁ ପାନ

*ଋଷିରୁବାଚ ॥ ୩୯ ॥*

**ଏବମୁକ୍ତ୍ୱା ସମୁତ୍ପତ୍ୟ ସାଽଽରୂଢା ତଂ ମହାସୁରମ୍ ।**
**ପାଦେନାକ୍ରମ୍ୟ କଣ୍ଠେ ଚ ଶୂଲେନୈନମତାଡୟତ୍ ॥ ୪୦ ॥**

**ତତଃ ସୋଽପି ପଦାଽଽକ୍ରାନ୍ତସ୍ତୟା ନିଜମୁଖାତ୍ତତଃ ।**
**ଅର୍ଧନିଷ୍କ୍ରାନ୍ତ ଏବାସୀଦ୍ ଦେବ୍ୟା ବୀର୍ୟେଣ ସଂବୃତଃ ॥ ୪୧ ॥**

**ଅର୍ଧନିଷ୍କ୍ରାନ୍ତ ଏବାସୌ ଯୁଧ୍ୟମାନୋ ମହାସୁରଃ ।**
**ତୟା ମହାସିନା ଦେବ୍ୟା ଶିରଶ୍ଛିତ୍ତ୍ୱା ନିପାତିତଃ[୨] ॥ ୪୨ ॥**

**ତତୋ ହାହାକୃତଂ ସର୍ବଂ ଦୈତ୍ୟସୈନ୍ୟଂ ନନାଶ ତତ୍ ।**
**ପ୍ରହର୍ଷଂ ଚ ପରଂ ଜଗ୍ମୁଃ ସକଳା ଦେବତାଗଣାଃ ॥ ୪୩ ॥**

---

କରୁଥିବି, ସେପର୍ଯ୍ୟନ୍ତ ତୁ ଯାହା କ୍ଷଣକ ପାଇଁ ମନ ଇଚ୍ଛା ଗର୍ଜନ କରୁଛୁ, କରିଯା' । ମୋ ହସ୍ତରେ ଏଠାରେ ତୋର ମୃତ୍ୟୁ ହେବା ପରେ ଦେବତାମାନେ ମଧ୍ୟ ଶୀଘ୍ର ଗର୍ଜନ କରିବେ ॥ ୩୮ ॥

**ଋଷି କହିଲେ**—॥ ୩୯ ॥ ଏହିପରି କହି ଦେବୀ ଡେଇଁ ପଡ଼ି ସେହି ମହାଦୈତ୍ୟ ଉପରେ ଚଢ଼ିଗଲେ ଏବଂ ନିଜ ପାଦଦ୍ୱାରା ତାକୁ ଦାବି ଧରି ଶୂଳରେ ତାହାର କଣ୍ଠଦେଶକୁ ଆଘାତ କଲେ ॥ ୪୦ ॥ ତାଙ୍କ ପାଦରେ ଦବିଯାଇଥିଲେ ମଧ୍ୟ ମହିଷାସୁର ନିଜ ମୁଖରୁ ଅନ୍ୟରୂପରେ ବାହାରିବାକୁ ଲାଗିଲା । ତାର ଅଧା ଶରୀର ବାହାରୁ ବାହାରୁ ଦେବୀ ତାକୁ ନିଜ ପ୍ରଭାବଦ୍ୱାରା ସେତିକିରେ ଅବରୁଦ୍ଧ କରିଦେଲେ ॥ ୪୧ ॥ ଅର୍ଦ୍ଧମୁକ୍ତ ହୋଇ ମଧ୍ୟ ସେହି ମହାଦୈତ୍ୟ ଦେବୀଙ୍କ ସହ ଯୁଦ୍ଧ କଲା । ସେତେବେଳେ ଦେବୀ ବହୁତ ଲମ୍ବା ଖଡ଼୍ଗରେ ତାହାର ମସ୍ତକକୁ କାଟି ତଳେ ପକାଇ ଦେଲେ ॥ ୪୨ ॥ ତାପରେ ହାୟ ହାୟ କରି

---

୧. ପା.—ଏବାତି ଦେବ୍ୟା । ୨. କେତେକ ପାଣ୍ଡୁଲିପିରେ ଏହାପରେ—'ଏବଂ ସ ମହିଷୋ ନାମ ସସୈନ୍ୟଃ ସସୁହୃଦ୍‌ଗଣଃ । ତ୍ରୈଲୋକ୍ୟଂ ମୋହୟିତ୍ୱା ତୁ ତୟା ଦେବ୍ୟା ବିନାଶିତଃ ॥ ତ୍ରୈଲୋକ୍ୟସ୍ଥୈସ୍ତଦା ଭୂତୈର୍ମହିଷେ ବିନିପାତିତେ । ଜୟେତ୍ୟୁକ୍ତଂ ତତଃ ସର୍ବୈଃ ସଦେବାସୁରମାନବୈଃ ॥' ଏତିକି ଅଧିକ ପାଠ ଅଛି ।

**ତୁଷ୍ଟୁବୁସ୍ତାଂ ସୁରା ଦେବୀଂ ସହ ଦିବ୍ୟୈର୍ମହର୍ଷିଭିଃ ।**
**ଜଗୁର୍ଗନ୍ଧର୍ବପତୟୋ ନନୃତୁଶ୍ଚାପ୍‌ସରୋଗଣାଃ ॥ ଓଁ ॥ ୪୪ ॥**

*ଇତି ଶ୍ରୀମାର୍କଣ୍ଡେୟପୁରାଣେ ସାବର୍ଣ୍ଣିକେ ମନ୍ୱନ୍ତରେ ଦେବୀମାହାତ୍ମ୍ୟେ*
*ମହିଷାସୁରବଧୋ ନାମ ତୃତୀୟୋଽଧ୍ୟାୟଃ ॥ ୩ ॥*

*ଉବାଚ ୩, ଶ୍ଳୋକାଃ ୪୧, ଏବମ୍ ୪୪, ଏବମାଦିତଃ ୨୧୭ ॥*



ଦୈତ୍ୟମାନଙ୍କ ସମସ୍ତ ସେନା ଛତ୍ରଭଙ୍ଗ ଦେଇ ପଳାଇଗଲେ ଏବଂ ସମସ୍ତ ଦେବତା ଅତ୍ୟନ୍ତ ପ୍ରସନ୍ନ ହେଲେ ॥ ୪୩ ॥

ଦେବତାମାନେ ଦିବ୍ୟ ମହର୍ଷିମାନଙ୍କ ସହିତ ଦୁର୍ଗାଦେବୀଙ୍କୁ ସ୍ତବ କଲେ। ଗନ୍ଧର୍ବରାଜମାନେ ସଂଗୀତ ଗାନ କଲେ ଏବଂ ଅପ୍‌ସରାମାନେ ନୃତ୍ୟ କରିବାକୁ ଲାଗିଲେ ॥ ୪୪ ॥

*ଏହିପ୍ରକାର ମାର୍କଣ୍ଡେୟପୁରାଣରେ ସାବର୍ଣ୍ଣିକ ମନ୍ୱନ୍ତରର*
*କଥାନ୍ତର୍ଗତ ଦେବୀମାହାତ୍ମ୍ୟରେ 'ମହିଷାସୁରବଧ'*
*ନାମକ ତୃତୀୟ ଅଧ୍ୟାୟ ସମ୍ପୂର୍ଣ୍ଣ ହେଲା ॥ ୩ ॥*





# ଚତୁର୍ଥୋଽଧ୍ୟାୟଃ

## [ଇନ୍ଦ୍ରାଦି ଦେବତାମାନଙ୍କଦ୍ୱାରା ଦେବୀଙ୍କ ସ୍ତୁତି]

## ଧ୍ୟାନମ୍

ଓଁ କାଲାଭ୍ରାଭାଂ କଟାକ୍ଷୈରରିକୁଲଭୟଦାଂ ମୌଳିବଦ୍ଧେନ୍ଦୁରେଖାଂ
ଶଙ୍ଖଂ ଚକ୍ରଂ କୃପାଣଂ ତ୍ରିଶିଖମପି କରୈରୁଦ୍‌ବହନ୍ତୀଂ ତ୍ରିନେତ୍ରାମ୍ ।
ସିଂହସ୍କନ୍ଧାଧିରୂଢାଂ ତ୍ରିଭୁବନମଖିଳଂ ତେଜସା ପୂରୟନ୍ତୀଂ
ଧ୍ୟାୟେଦ୍ ଦୁର୍ଗାଂ ଜୟାଖ୍ୟାଂ ତ୍ରିଦଶପରିବୃତାଂ ସେବିତାଂ ସିଦ୍ଧିକାମୈଃ ॥

*'ଓଁ ଋଷିରୁବାଚ'* ॥ ୧ ॥

ଶକ୍ରାଦୟଃ ସୁରଗଣା ନିହତେଽତିବୀର୍ଯ୍ୟେ
ତସ୍ମିନ୍‌ଦୁରାତ୍ମନି ସୁରାରିବଲେ ଚ ଦେବ୍ୟା ।
ତାଂ ତୁଷ୍ଟୁବୁଃ ପ୍ରଣତିନମ୍ରଶିରୋଧରାଂସା
ବାଗ୍‌ଭିଃ ପ୍ରହର୍ଷପୁଲକୋଦ୍‌ଗମଚାରୁଦେହାଃ ॥ ୨ ॥

ସିଦ୍ଧି କାମନା କରୁଥିବା ପୁରୁଷ ଯାହାଙ୍କର ସେବା କରନ୍ତି ତଥା ଦେବତାମାନେ ଯାହାଙ୍କୁ ସଦାସର୍ବଦା ଘେରି ରହିଛନ୍ତି, ସେହି 'ଜୟା' ନାମ ଧାରଣ କରିଥିବା ଦୁର୍ଗାଦେବୀଙ୍କୁ ଧ୍ୟାନ କରିବା ଉଚିତ । ତାଙ୍କ ଶ୍ରୀଅଙ୍ଗର ଶୋଭା କୃଷ୍ଣରଙ୍ଗର ମେଘ ସମାନ ଶ୍ୟାମ ଅଟେ । ସେ ସ୍ୱକୀୟ କଟାକ୍ଷଦ୍ୱାରା ଶତ୍ରୁଗଣଙ୍କୁ ଭୟ ପ୍ରଦାନ କରନ୍ତି । ତାଙ୍କ ମସ୍ତକ ଉପରେ ଆବଦ୍ଧ ଚନ୍ଦ୍ରମାର ରେଖା ଶୋଭା ପାଏ । ସେ ନିଜ ହସ୍ତରେ ଶଙ୍ଖ, ଚକ୍ର, କୃପାଣ ଏବଂ ତ୍ରିଶୂଳ ଧାରଣ କରିଛନ୍ତି । ତାଙ୍କର ତିନୋଟି ନେତ୍ର ରହିଛି । ସେ ସିଂହର କାନ୍ଧ ଉପରେ ଆରୋହଣ କରିଛନ୍ତି ଓ ନିଜ ତେଜରେ ତ୍ରିଭୁବନକୁ ପରିପୂର୍ଣ୍ଣ କରୁଛନ୍ତି ।

**ଋଷି କହିଲେ**—॥ ୧ ॥ ଅତ୍ୟନ୍ତ ପରାକ୍ରମୀ ଦୁରାତ୍ମା ମହିଷାସୁର ତଥା ତାହାର ଦୈତ୍ୟସେନା ଦେବୀଙ୍କ ହସ୍ତରେ ମରିବା ପରେ ଇନ୍ଦ୍ର ଆଦି ଦେବତାଗଣ

୧. କେତେକ ପୋଥିରେ 'ଋଷିରୁବାଚ' ପରେ 'ତତଃ ସୁରଗଣାଃ ସର୍ବେ ଦେବ୍ୟା ଇନ୍ଦ୍ରପୁରୋଗମାଃ । ସ୍ତୁତିମାରେଭିରେ କର୍ତ୍ତୁଂ ନିହତେ ମହିଷାସୁରେ ॥' ଏତିକି ପାଠ ଅଧିକ ଅଛି ।

ଦେବ୍ୟା ଯୟା ତତମିଦଂ ଜଗଦାତ୍ମଶକ୍ତ୍ୟା
ନିଶ୍‌ଶେଷଦେବଗଣଶକ୍ତିସମୂହମୂର୍ତ୍ତ୍ୟା ।
ତାମମ୍ବିକାମଖିଳଦେବମହର୍ଷିପୂଜ୍ୟାଂ
ଭକ୍ତ୍ୟା ନତାଃ ସ୍ମ ବିଦଧାତୁ ଶୁଭାନି ସା ନଃ ॥ ୩ ॥
ଯସ୍ୟାଃ ପ୍ରଭାବମତୁଳଂ ଭଗବାନନନ୍ତୋ
ବ୍ରହ୍ମା ହରଶ୍ଚ ନ ହି ବକ୍ତୁମଲଂ ବଳଂ ଚ ।
ସା ଚଣ୍ଡିକାଖିଳଜଗତ୍‌ପରିପାଳନାୟ
ନାଶାୟ ଚାଶୁଭଭୟସ୍ୟ ମତିଂ କରୋତୁ ॥ ୪ ॥
ଯା ଶ୍ରୀଃ ସ୍ୱୟଂ ସୁକୃତିନାଂ ଭବନେଷ୍ୱଲକ୍ଷ୍ମୀଃ
ପାପାତ୍ମନାଂ କୃତଧିୟାଂ ହୃଦୟେଷୁ ବୁଦ୍ଧିଃ ।
ଶ୍ରଦ୍ଧା ସତାଂ କୁଳଜନପ୍ରଭବସ୍ୟ ଲଜ୍ଜା
ତାଂ ତ୍ୱାଂ ନତାଃ ସ୍ମ ପରିପାଳୟ ଦେବି ବିଶ୍ୱମ୍ ॥ ୫ ॥

---

ପ୍ରଣାମ କରିବା ନିମନ୍ତେ ମସ୍ତକ ଓ ସ୍କନ୍ଧ ଅବନତ କରି ସେହି ଭଗବତୀ ଦୁର୍ଗାଙ୍କୁ ସମ୍ୟଗ୍ ବଚନଦ୍ୱାରା ସ୍ତବନ କଲେ । ସେହି ସମୟରେ ସେମାନଙ୍କ ସୁନ୍ଦର ଅଙ୍ଗରେ ଅତ୍ୟନ୍ତ ହର୍ଷ ଯୋଗୁଁ ରୋମାଞ୍ଚ ସୃଷ୍ଟି ହୋଇଥିଲା ॥ ୨ ॥

**ଦେବତାମାନେ କହିଲେ**—ସକଳ ଦେବତାମାନଙ୍କ ଶକ୍ତିର ସମୁଦାୟ ଯାହାଙ୍କ ସ୍ୱରୂପ ତଥା ଯେଉଁ ଦେବୀ ନିଜ ଶକ୍ତିବଳରେ ସମଗ୍ର ଜଗତ୍‌କୁ ବ୍ୟାପ୍ତ କରିଛନ୍ତି, ସକଳ ଦେବତା ଏବଂ ମହର୍ଷିମାନଙ୍କ ଦ୍ୱାରା ପୂଜନୀୟା ସେହି ଜଗଦମ୍ବାଙ୍କୁ ଆମ୍ଭେ ଭକ୍ତିପୂର୍ବକ ନମସ୍କାର କରୁଛୁ । ସେ ଆମ୍ଭମାନଙ୍କର ମଙ୍ଗଳ କରନ୍ତୁ ॥ ୩ ॥ ଯାହାଙ୍କ ଅନୁପମ ପ୍ରଭାବ ଓ ବଳ ବର୍ଣ୍ଣନା କରିବା ପାଇଁ ଭଗବାନ୍ ଶେଷନାଗ, ବ୍ରହ୍ମା ଓ ମହାଦେବ ମଧ୍ୟ ସମର୍ଥ ନୁହନ୍ତି, ସେହି ଭଗବତୀ ଚଣ୍ଡିକା ସମସ୍ତ ଜଗତ୍‌କୁ ପାଳନ କରନ୍ତୁ ଏବଂ ଅଶୁଭ ଭୟକୁ ବିନାଶ କରିବା ପାଇଁ ନିର୍ଣ୍ଣୟ କରନ୍ତୁ ॥ ୪ ॥ ଯିଏ ପୁଣ୍ୟାତ୍ମାମାନଙ୍କ ଗୃହରେ ସ୍ୱୟଂ ଲକ୍ଷ୍ମୀରୂପରେ, ପାପୀମାନଙ୍କ ସମୀପରେ ଦରିଦ୍ରତାରୂପରେ, ଶୁଦ୍ଧ ଅନ୍ତଃକରଣଯୁକ୍ତ ପୁରୁଷମାନଙ୍କ ହୃଦୟରେ ବୁଦ୍ଧିରୂପରେ, ସତ୍‌ପୁରୁଷମାନଙ୍କଠାରେ ଶ୍ରଦ୍ଧାରୂପରେ ତଥା କୁଳୀନ

କିଂ ବର୍ଣ୍ଣୟାମ ତବ ରୂପମଚିନ୍ତ୍ୟମେତତ୍
କିଂ ଚାତିବୀର୍ଯ୍ୟମସୁରକ୍ଷୟକାରି ଭୂରି ।
କିଂ ଚାହବେଷୁ ଚରିତାନି ତବାଭୁତାନି
ସର୍ବେଷୁ ଦେବ୍ୟସୁରଦେବଗଣାଦିକେଷୁ ॥ ୬ ॥
ହେତୁଃ ସମସ୍ତଜଗତାଂ ତ୍ରିଗୁଣାପି ଦୋଷୈ-
ର୍ନ ଜ୍ଞାୟସେ ହରିହରାଦିଭିରପ୍ୟପାରା ।
ସର୍ବାଶ୍ରୟାଖିଳମିଦଂ ଜଗଦଂଶଭୂତ-
ମବ୍ୟାକୃତା ହି ପରମା ପ୍ରକୃତିସ୍ତ୍ୱମାଦ୍ୟା ॥ ୭ ॥
ଯସ୍ୟାଃ ସମସ୍ତସୁରତା ସମୁଦୀରଣେନ
ତୃପ୍ତିଂ ପ୍ରୟାତି ସକଲେଷୁ ମଖେଷୁ ଦେବି ।
ସ୍ୱାହାସି ବୈ ପିତୃଗଣସ୍ୟ ଚ ତୃପ୍ତିହେତୁ-
ରୁଚ୍ଚାର୍ଯ୍ୟସେ ତ୍ୱମତ ଏବ ଜନୈଃ ସ୍ୱଧା ଚ ॥ ୮ ॥

---

ମନୁଷ୍ୟଙ୍କଠାରେ ଲଜ୍ଜାରୂପରେ ନିବାସ କରନ୍ତି, ସେହି ଭଗବତୀ ଦୁର୍ଗାଙ୍କୁ ଆମ୍ଭେ ନମସ୍କାର କରୁଛୁ । ହେ ଦେବି ! ଆପଣ ସମଗ୍ର ବିଶ୍ୱକୁ ପାଳନ କରନ୍ତୁ ॥ ୫ ॥ ହେ ଦେବି ! ତୁମର ଏହି ଅଚିନ୍ତ୍ୟ ରୂପ, ଅସୁରଙ୍କୁ ବିନାଶ କରୁଥିବା ଅମିତ ପରାକ୍ରମ ତଥା ସମସ୍ତ ଦେବତା ଓ ଦୈତ୍ୟମାନଙ୍କ ସମକ୍ଷରେ ଯୁଦ୍ଧରେ ପ୍ରକଟ କରିଥିବା ତୁମର ଅଦ୍ଭୁତ ଚରିତ୍ରକୁ ଆମ୍ଭେ କିପରି ବର୍ଣ୍ଣନା କରିବୁ? ॥ ୬ ॥ ତୁମେ ସମଗ୍ର ଜଗତ୍‌ର ଉତ୍ପତ୍ତିର କାରଣ ଅଟ । ତୁମଠାରେ ସତ୍ତ୍ୱଗୁଣ, ରଜୋଗୁଣ ତଥା ତମୋଗୁଣ—ଏହି ତିନୋଟି ଗୁଣ ରହିଛି; ତଥାପି ଦୋଷ ସହିତ ତୁମର ସଂସର୍ଗ ଜଣା ଯାଏ ନାହିଁ । ଭଗବାନ୍ ବିଷ୍ଣୁ ଓ ମହାଦେବ ଆଦି ଦେବତା ମଧ୍ୟ ତୁମକୁ କଳନା କରି ପାରନ୍ତି ନାହିଁ । ତୁମେ ସମସ୍ତଙ୍କ ଆଶ୍ରୟ ଅଟ । ଏହି ସମସ୍ତ ଜଗତ୍ ତୁମର ଅଂଶଭୂତ, କାରଣ ତୁମେ ସମସ୍ତଙ୍କର ଆଦିଭୂତ ଅବ୍ୟାକୃତା ପରା ପ୍ରକୃତି ଅଟ ॥ ୭ ॥ ହେ ଦେବି ! ସକଳ ଯଜ୍ଞରେ ଯାହାକୁ ଉଚ୍ଚାରଣ କଲେ ସବୁ ଦେବତା ତୃପ୍ତି ଲାଭ କରନ୍ତି, ସେହି ସ୍ୱାହା ତୁମେ ହିଁ ଅଟ ।

ଯା ମୁକ୍ତିହେତୁରବିଚିନ୍ତ୍ୟମହାବ୍ରତା ତ୍ୱ-[୧]
ମଭ୍ୟସ୍ୟସେ ସୁନିୟତେନ୍ଦ୍ରିୟତତ୍ତ୍ୱସାରୈଃ ।
ମୋକ୍ଷାର୍ଥିଭିର୍ମୁନିଭିରସ୍ତସମସ୍ତଦୋଷୈ-
ର୍ବିଦ୍ୟାସି ସା ଭଗବତୀ ପରମା ହି ଦେବି ॥ ୯ ॥
ଶବ୍ଦାତ୍ମିକା ସୁବିମଲର୍ଗ୍ୟଜୁଷାଂ ନିଧାନ-
ମୁଦ୍‌ଗୀଥରମ୍ୟପଦପାଠବତାଂ ଚ ସାମ୍ନାମ୍ ।
ଦେବୀ ତ୍ରୟୀ ଭଗବତୀ ଭବଭାବନାୟ
ବାର୍ତ୍ତା ଚ ସର୍ବଜଗତାଂ ପରମାର୍ତ୍ତିହନ୍ତ୍ରୀ ॥ ୧୦ ॥
ମେଧାସି ଦେବି ବିଦିତାଖିଳଶାସ୍ତ୍ରସାରା
ଦୁର୍ଗାସି ଦୁର୍ଗଭବସାଗରନୌରସଙ୍ଗା ।
ଶ୍ରୀଃ କୈଟଭାରିହୃଦୟୈକକୃତାଧିବାସା
ଗୌରୀ ତ୍ୱମେବ ଶଶିମୌଳିକୃତପ୍ରତିଷ୍ଠା ॥ ୧୧ ॥

ଏତଦ୍‌ବ୍ୟତୀତ ତୁମେ ପିତୃଗଣଙ୍କ ତୃପ୍ତିର କାରଣ ମଧ୍ୟ ଅଟ । ଅତଏବ ସମସ୍ତ ଲୋକ ତୁମକୁ ସ୍ୱଧା ମଧ୍ୟ କହନ୍ତି ॥ ୮ ॥ ହେ ଦେବି ! ଯେଉଁ ପରା ବିଦ୍ୟା ମୋକ୍ଷପ୍ରାପ୍ତିର ସାଧନ, ଅଚିନ୍ତ୍ୟ ମହାବ୍ରତସ୍ୱରୂପା ତଥା ସକଳ ଦୋଷରହିତ, ଜିତେନ୍ଦ୍ରିୟ ଓ ତତ୍ତ୍ୱକୁ ସାରବସ୍ତୁରୂପେ ସ୍ୱୀକାର କରୁଥିବା ମୋକ୍ଷ ଅଭିଳାଷୀ ମୁନିଜନ ଯାହାକୁ ଅଭ୍ୟାସ କରନ୍ତି, ସେହି ଭଗବତୀ ପରା ବିଦ୍ୟା ତୁମେ ହିଁ ଅଟ ॥ ୯ ॥ ତୁମେ ଶବ୍ଦସ୍ୱରୂପା, ଅତ୍ୟନ୍ତ ନିର୍ମଳ ଋଗ୍‌ବେଦ, ଯଜୁର୍ବେଦ ତଥା ଉଦ୍‌ଗୀଥର ମନୋହର ପଦ ପାଠଯୁକ୍ତ ସାମବେଦର ଆଧାର ମଧ୍ୟ ତୁମେ ଅଟ । ତୁମେ ଦେବୀ, ତ୍ରୟୀ (ତିନୋଟି ବେଦ) ଏବଂ ଭଗବତୀ (ଷଡ୍ ଐଶ୍ୱର୍ଯ୍ୟଯୁକ୍ତ) ଅଟ । ଏହି ବିଶ୍ୱର ଉତ୍ପତ୍ତି ଏବଂ ପାଳନ ନିମନ୍ତେ ତୁମେ ହିଁ ବାର୍ତ୍ତା (କ୍ଷେତ୍ର ଓ ଆଜୀବିକା) ରୂପେ ପ୍ରକଟ ହୋଇଛ । ତୁମେ ସମଗ୍ର ଜଗତ୍‌ର ଘୋର ଦୁଃଖକୁ ନାଶ କରିପାର ॥ ୧୦ ॥ ହେ ଦେବି ! ଯାହାଦ୍ୱାରା ସମସ୍ତ ଶାସ୍ତ୍ର-ସାର ଜ୍ଞାନ

୧. ପା.—ଚ ଅଭ୍ୟ. ।

ଈଷତ୍‌ସହାସମମଲଂ ପରିପୂର୍ଣ୍ଣଚନ୍ଦ୍ର-
ବିମ୍ବାନୁକାରି କନକୋତ୍ତମକାନ୍ତିକାନ୍ତମ୍ ।
ଅତ୍ୟଦ୍ଭୁତଂ ପ୍ରହୃତମାତ୍ତରୁଷା ତଥାପି
ବକ୍ତ୍ରଂ ବିଲୋକ୍ୟ ସହସା ମହିଷାସୁରେଣ ॥ ୧୨ ॥
ଦୃଷ୍ଟ୍ୱା ତୁ ଦେବି କୁପିତଂ ଭ୍ରୁକୁଟୀକରାଳ-
ମୁଦ୍ୟଚ୍ଛଶାଙ୍କସଦୃଶଚ୍ଛବି ଯନ୍ନ ସଦ୍ୟଃ ।
ପ୍ରାଣାନ୍ମୁମୋଚ ମହିଷସ୍ତଦତୀବ ଚିତ୍ରଂ
କୈର୍ଜୀବ୍ୟତେ ହି କୁପିତାନ୍ତକଦର୍ଶନେନ ॥ ୧୩ ॥
ଦେବି ପ୍ରସୀଦ ପରମା ଭବତୀ ଭବାୟ
ସଦ୍ୟୋ ବିନାଶୟସି କୋପବତୀ କୁଲାନି ।
ବିଜ୍ଞାତମେତଦଧୁନୈବ ଯଦସ୍ତମେତ-
ନ୍ନୀତଂ ବଲଂ ସୁବିପୁଲଂ ମହିଷାସୁରସ୍ୟ ॥ ୧୪ ॥

---

ହୁଏ, ସେହି ମେଧାଶକ୍ତି ତୁମେ ଅଟ । ଦୁର୍ଗମ ଭବସାଗରରୁ ପାର ହେବାକୁ ନୌକାରୂପୀ ଦୁର୍ଗାଦେବୀ ମଧ୍ୟ ତୁମେ ଅଟ । ତୁମର କେଉଁଠିହେଲେ ଆସକ୍ତି ନାହିଁ । କୈଟଭର ଶତ୍ରୁ ଭଗବାନ୍ ବିଷ୍ଣୁଙ୍କ ବକ୍ଷଃସ୍ଥଳରେ ଏକମାତ୍ର ନିବାସ କରୁଥିବା ଭଗବତୀ ଲକ୍ଷ୍ମୀ ତଥା ଭଗବାନ୍ ଚନ୍ଦ୍ରଶେଖରଙ୍କଦ୍ୱାରା ସମ୍ମାନିତା ଗୌରୀ ଦେବୀ ମଧ୍ୟ ତୁମେ ଅଟ ॥ ୧୧ ॥ ତୁମର ମୁଖ ମନ୍ଦ ହାସ୍ୟଦ୍ୱାରା ସୁଶୋଭିତ, ନିର୍ମଳ, ପୂର୍ଣ୍ଣ ଚନ୍ଦ୍ରମାର ବିମ୍ବକୁ ଅନୁକରଣ କରୁଥିବା ଏବଂ ଉତ୍ତମ ସୁବର୍ଣ୍ଣର ମନୋହର କାନ୍ତିଦ୍ୱାରା କମନୀୟ ଅଟେ । ତଥାପି ତାକୁ ଦେଖି ମହିଷାସୁରକୁ କ୍ରୋଧ ଲାଗିଲା ଏବଂ ସହସା ସେ ତାହା ଉପରେ ପ୍ରହାର କଲା; ଏହା ଅତି ଆଶ୍ଚର୍ଯ୍ୟକର କଥା ॥ ୧୨ ॥ ହେ ଦେବି ! ସେହି ମୁଖ କ୍ରୋଧଯୁକ୍ତ ହୋଇ ଯେତେବେଳେ ଉଦୟକାଳର ଚନ୍ଦ୍ରମା ସଦୃଶ ରକ୍ତ ଓ କ୍ରୋଧଭରା ଭ୍ରୁକୁଟି ଯୋଗୁଁ ବିକରାଳ ହୋଇ ଉଠିଲା, ସେତେବେଳେ ତାହାକୁ ଦେଖି ମହିଷାସୁରର ପ୍ରାଣ ଯାହା ଶୀଘ୍ର ବାହାରି ନ ଗଲା । ଏହା ତାହାଠାରୁ ବଳି ଆଶ୍ଚର୍ଯ୍ୟକର କଥା; କାରଣ କ୍ରୋଧଭରା ହୋଇଥିବା ଯମରାଜଙ୍କୁ ଦେଖି କିଏ ବା ଜୀବିତ ରହିପାରିବ? ॥ ୧୩ ॥ ହେ ଦେବି ! ତୁମେ ପ୍ରସନ୍ନ ହୁଅ ।

ତେ ସମ୍ମତା ଜନପଦେଷୁ ଧନାନି ତେଷାଂ
ତେଷାଂ ଯଶାଂସି ନ ଚ ସୀଦତି ଧର୍ମବର୍ଗଃ ।
ଧନ୍ୟାସ୍ତ ଏବ ନିଭୃତାତ୍ମଜଭୃତ୍ୟଦାରା
ଯେଷାଂ ସଦାଭ୍ୟୁଦୟଦା ଭବତୀ ପ୍ରସନ୍ନା ॥ ୧୫ ॥
ଧର୍ମ୍ୟାଣି ଦେବି ସକଳାନି ସଦୈବ କର୍ମା-
ଣ୍ୟତ୍ୟାଦୃତଃ ପ୍ରତିଦିନଂ ସୁକୃତୀ କରୋତି ।
ସ୍ୱର୍ଗଂ ପ୍ରୟାତି ଚ ତତୋ ଭବତୀପ୍ରସାଦା-
ଲ୍ଲୋକତ୍ରୟେଽପି ଫଳଦା ନନୁ ଦେବି ତେନ ॥ ୧୬ ॥
ଦୁର୍ଗେ ସ୍ମୃତା ହରସି ଭୀତିମଶେଷଜନ୍ତୋଃ
ସ୍ୱସ୍ଥୈଃ ସ୍ମୃତା ମତିମତୀବ ଶୁଭାଂ ଦଦାସି ।
ଦାରିଦ୍ର୍ୟଦୁଃଖଭୟହାରିଣି କା ତ୍ୱଦନ୍ୟା
ସର୍ବୋପକାରକରଣାୟ ସଦାଽଽର୍ଦ୍ରଚିତ୍ତା ॥ ୧୭ ॥

---

ପରମାତ୍ମସ୍ୱରୂପା ତୁମେ ପ୍ରସନ୍ନ ହେଲେ ଜଗତ୍‌ର ଅଭ୍ୟୁଦୟ ହୁଏ ଓ କ୍ରୋଧଭରା ହେଲେ ତୁମେ ତତ୍କାଳ କେତେ ଯେ ବଂଶର ସର୍ବନାଶ କରିଦିଅ—ଏହି କଥା ବର୍ତ୍ତମାନ ଅନୁଭବରେ ଆସିଛି; କାରଣ ମହିଷାସୁରର ଏହି ବିଶାଳ ସେନା କ୍ଷଣକ ମଧ୍ୟରେ ତୁମ କୋପରେ ନଷ୍ଟ ହୋଇଛି ॥ ୧୪ ॥ ସଦା ଅଭ୍ୟୁଦୟ ପ୍ରଦାନ କରୁଥିବା ଦେବି ! ତୁମେ ଯାହା ଉପରେ ପ୍ରସନ୍ନ ହୁଅ; ସେମାନେ ଦେଶରେ ସମ୍ମାନିତ ହୁଅନ୍ତି । ସେମାନଙ୍କୁ ଧନ ଏବଂ ଯଶ ପ୍ରାପ୍ତ ହୁଏ । ସେମାନଙ୍କର ଧର୍ମ କେବେହେଲେ ଶିଥିଳ ହୁଏ ନାହିଁ ତଥା ସେମାନେ ହିଁ ନିଜର ହୃଷ୍ଟପୁଷ୍ଟ ସ୍ତ୍ରୀ, ପୁତ୍ର ଓ ଭୃତ୍ୟଙ୍କ ସହ ଧନ୍ୟ ବୋଲି ଅନ୍ୟମାନେ ସ୍ୱୀକାର କରନ୍ତି ॥ ୧୫ ॥ ହେ ଦେବି ! ତୁମର କୃପାବଳରୁ ପୁଣ୍ୟାତ୍ମା ପୁରୁଷ ପ୍ରତିଦିନ ଅତ୍ୟନ୍ତ ଶ୍ରଦ୍ଧାପୂର୍ବକ ସର୍ବଦା ସମସ୍ତ ପ୍ରକାରର ଧର୍ମାନୁକୂଳ କର୍ମ କରେ ଏବଂ ତାହାର ପ୍ରଭାବରେ ସ୍ୱର୍ଗଲୋକ ଗମନ କରେ । ତେଣୁ ତୁମେ ତ୍ରିଭୁବନରେ ନିଶ୍ଚିତଭାବରେ ମନୋବାଞ୍ଛିତ ଫଳ ପ୍ରଦାନ କର ॥ ୧୬ ॥ ହେ ମା ଦୁର୍ଗେ ! ତୁମ୍ଭଙ୍କୁ ସ୍ମରଣ କରିବା ମାତ୍ରକେ

ଏଭିର୍ହତୈର୍ଜଗଦୁପୈତି ସୁଖଂ ତଥୈତେ
କୁର୍ବନ୍ତୁ ନାମ ନରକାୟ ଚିରାୟ ପାପମ୍ ।
ସଂଗ୍ରାମମୃତ୍ୟୁମଧିଗମ୍ୟ ଦିବଂ ପ୍ରୟାନ୍ତୁ
ମତ୍ୱେତି ନୂନମହିତାନ୍ ବିନିହଂସି ଦେବି ॥ ୧୮ ॥
ଦୃଷ୍ଟ୍ୱୈବ କିଂ ନ ଭବତୀ ପ୍ରକରୋତି ଭସ୍ମ
ସର୍ବାସୁରାନରିଷୁ ଯତ୍ପ୍ରହିଣୋଷି ଶସ୍ତ୍ରମ୍ ।
ଲୋକାନ୍ ପ୍ରୟାନ୍ତୁ ରିପବୋଽପି ହି ଶସ୍ତ୍ରପୂତା
ଇତ୍ଥଂ ମତିର୍ଭବତି ତେଷ୍ୱପି ତେଽତିସାଧ୍ୱୀ ॥ ୧୯ ॥
ଖଡ୍ଗପ୍ରଭାନିକରବିସ୍ଫୁରଣୈସ୍ତଥୋଗ୍ରୈଃ
ଶୂଳାଗ୍ରକାନ୍ତିନିବହେନ ଦୃଶୋଽସୁରାଣାମ୍ ।

---

ସମସ୍ତ ପ୍ରାଣୀଙ୍କର ଭୟ ଦୂର ହୋଇଯାଏ ଏବଂ ସ୍ୱସ୍ଥ ପୁରୁଷ ତୁମର ଚିନ୍ତନ କଲେ ତାହାଙ୍କୁ ପରମ କଲ୍ୟାଣମୟୀ ବୁଦ୍ଧି ପ୍ରଦାନ କର। ଦୁଃଖ, ଦାରିଦ୍ର୍ୟ ଏବଂ ଭୟ ହରଣକାରୀ ହେ ଦେବି ! ତୁମ ବିନା ଅନ୍ୟ ଆଉ କିଏ ବା ଅଛି; ଯାହାର ଚିତ୍ତ ସମସ୍ତଙ୍କ ଉପକାର କରିବା ନିମନ୍ତେ ସଦା ଦୟାର୍ଦ୍ର ରହେ? ॥ ୧୭ ॥ ହେ ଦେବି ! "ଏହି ରାକ୍ଷସମାନଙ୍କୁ ହତ୍ୟା କରିବାଦ୍ୱାରା ସଂସାରକୁ ସୁଖ ପ୍ରାପ୍ତି ହେବ ଏବଂ ଏହି ରାକ୍ଷସମାନେ ଚିରକାଳ ପର୍ଯ୍ୟନ୍ତ ନରକରେ ବାସ କରିବା ପାଇଁ ପଛେ ପାପ କରିଥାନ୍ତୁ; କିନ୍ତୁ ଏହି ସମୟରେ ସଂଗ୍ରାମରେ ମୃତ୍ୟୁପ୍ରାପ୍ତ ହୋଇ ସ୍ୱର୍ଗଲୋକକୁ ଯାଆନ୍ତୁ"—ନିଶ୍ଚିତଭାବରେ ଏହି ଚିନ୍ତା କରି ହିଁ ଆପଣ ଶତ୍ରୁମାନଙ୍କୁ ବଧ କରୁଛନ୍ତି ॥ ୧୮ ॥ ଆପଣ ଶତ୍ରୁମାନଙ୍କ ଉପରେ ଶସ୍ତ୍ର ପ୍ରହାର କାହିଁକି କରୁଛନ୍ତି? ସମସ୍ତ ଅସୁରମାନଙ୍କୁ ଆପଣଙ୍କ ଦୃଷ୍ଟିପାତମାତ୍ରକେ କାହିଁକି ଭସ୍ମ କରୁନାହାଁନ୍ତି ? ଏଥିରେ ଗୋଟିଏ ରହସ୍ୟ ଅଛି। "ଏହି ଶତ୍ରୁମାନେ ମଧ୍ୟ ଆମ୍ଭର ଶସ୍ତ୍ରଦ୍ୱାରା ପବିତ୍ର ହୋଇ ଉତ୍ତମଲୋକରେ ବାସ କରନ୍ତୁ"—ଏହିପରି ଭାବରେ ସେମାନଙ୍କ ପ୍ରତି ମଧ୍ୟ ଆପଣଙ୍କର ଏପରି ବିଗ୍ଭର ଅତ୍ୟନ୍ତ ଉତ୍ତମ ଅଟେ ॥ ୧୯ ॥ ଖଡ୍ଗଜନିତ ତେଜଃପୁଞ୍ଜର ଭୟଙ୍କର ଦୀପ୍ତିରେ ତଥା

ଯନ୍ନାଗତା ବିଲୟମଂଶୁମଦିନ୍ଦୁଖଣ୍ଡ-
ଯୋଗ୍ୟାନନଂ ତବ ବିଲୋକୟତାଂ ତଦେତତ୍ ॥ ୨୦ ॥
ଦୁର୍ବୃତ୍ତବୃତ୍ତଶମନଂ ତବ ଦେବି ଶୀଳଂ
ରୂପଂ ତଥୈତଦବିଚିନ୍ତ୍ୟମତୁଲ୍ୟମନ୍ୟୈଃ ।
ବୀର୍ଯ୍ୟଂ ଚ ହନ୍ତୃ ହୃତଦେବପରାକ୍ରମାଣାଂ
ବୈରିଷ୍ୱପି ପ୍ରକଟିତୈବ ଦୟା ତ୍ୱୟେତ୍ଥମ୍ ॥ ୨୧ ॥
କେନୋପମା ଭବତୁ ତେଽସ୍ୟ ପରାକ୍ରମସ୍ୟ
ରୂପଂ ଚ ଶତ୍ରୁଭୟକାର୍ଯ୍ୟତିହାରି କୁତ୍ର ।
ଚିତ୍ତେ କୃପା ସମରନିଷ୍ଠୁରତା ଚ ଦୃଷ୍ଟା
ତ୍ୱୟ୍ୟେବ ଦେବି ବରଦେ ଭୁବନତ୍ରୟେଽପି ॥ ୨୨ ॥
ତ୍ରୈଲୋକ୍ୟମେତଦଖିଳଂ ରିପୁନାଶନେନ
ତ୍ରାତଂ ତ୍ୱୟା ସମରମୂର୍ଧନି ତେଽପି ହତ୍ୱା ।

ଆପଣଙ୍କ ତ୍ରିଶୂଳର ଅଗ୍ରଭାଗର ଘନୀଭୂତ ପ୍ରଭାରେ ଝଲସି ଯାଇ ଯେଉଁ ଅସୁରମାନଙ୍କର ଚକ୍ଷୁ ଫୁଟି ଯାଇ ନ ଥିଲା; ତାହାର କାରଣ ଏହା ଥିଲା ଯେ ସେମାନେ ମନୋହର ରଶ୍ମିଯୁକ୍ତ ଚନ୍ଦ୍ରମାସଦୃଶ ଆନନ୍ଦ ପ୍ରଦାନ କରୁଥିବା ତୁମର ଏହି ସୁନ୍ଦର ମୁଖକୁ ଦର୍ଶନ କରୁଥିଲେ ॥ ୨୦ ॥ ହେ ଦେବି ! ତୁମର ଶୁଦ୍ଧ ସ୍ୱଭାବ ଦୁରାଗ୍ରହୀମାନଙ୍କର ମନ୍ଦ ଆଚରଣକୁ ଦୂରୀଭୂତ କରେ । ତୁମର ରୂପ ଅଚିନ୍ତନୀୟ ଏବଂ ଅତୁଳନୀୟ । ତୁମର ବଳ ଓ ପରାକ୍ରମ ସେହି ଦୈତ୍ୟମାନଙ୍କୁ ମଧ୍ୟ ବିନାଶ କରେ, ଯେଉଁମାନେ କେବେ ଦେବତାମାନଙ୍କ ପରାକ୍ରମକୁ ନଷ୍ଟ କରିଥିଲେ । ଏହିପ୍ରକାର ତୁମେ ଶତ୍ରୁମାନଙ୍କ ଉପରେ ମଧ୍ୟ ନିଜର ଦୟା ପ୍ରକଟ କରିଛ ॥ ୨୧ ॥ ହେ ବରଦାୟିନୀ ଦେବି ! ତୁମର ଏହି ପରାକ୍ରମ କାହା ସହିତ ତୁଳନା କରାଯାଇପାରିବ ? ଶତ୍ରୁମାନଙ୍କୁ ଭୟପ୍ରଦାନ କରୁଥିବା ଏବଂ ଅତ୍ୟନ୍ତ ମନୋହର ରୂପ ତୁମ ବ୍ୟତୀତ ଆଉ କାହାର ଅଛି ? ହୃଦୟରେ କୃପା ଏବଂ ଯୁଦ୍ଧରେ ନିଷ୍ଠୁରତା—ଏହି ଉଭୟ କଥା ତ୍ରିଭୁବନ ମଧ୍ୟରେ କେବଳ ତୁମ ପାଖରେ ଦେଖାଯାଇଛି ॥ ୨୨ ॥ ହେ ମାତଃ ! ତୁମେ

ନୀତା ଦିବଂ ରିପୁଗଣା ଭୟମପ୍ୟପାସ୍ତ-
ମସ୍ମାକମୁନ୍ମଦସୁରାରିଭବଂ ନମସ୍ତେ ॥ ୨୩ ॥
ଶୂଳେନ ପାହି ନୋ ଦେବି ପାହି ଖଡ୍‌ଗେନ ଚାମ୍ବିକେ ।
ଘଣ୍ଟାସ୍ୱନେନ ନଃ ପାହି ଚାପଜ୍ୟାନିଃସ୍ୱନେନ ଚ ॥ ୨୪ ॥
ପ୍ରାଚ୍ୟାଂ ରକ୍ଷ ପ୍ରତୀଚ୍ୟାଂ ଚ ଚଣ୍ଡିକେ ରକ୍ଷ ଦକ୍ଷିଣେ ।
ଭ୍ରାମଣେନାତ୍ମଶୂଳସ୍ୟ ଉତ୍ତରସ୍ୟାଂ ତଥେଶ୍ୱରି ॥ ୨୫ ॥
ସୌମ୍ୟାନି ଯାନି ରୂପାଣି ତ୍ରୈଲୋକ୍ୟେ ବିଚରନ୍ତି ତେ ।
ଯାନି ଚାତ୍ୟର୍ଥଘୋରାଣି ତୈ ରକ୍ଷାସ୍ମାଂସ୍ତଥା ଭୁବମ୍ ॥ ୨୬ ॥
ଖଡ୍‌ଗଶୂଳଗଦାଦୀନି ଯାନି ଚାସ୍ତ୍ରାଣି ତେଽମ୍ବିକେ ।
କରପଲ୍ଲବସଙ୍ଗୀନି ତୈରସ୍ମାନ୍ ରକ୍ଷ ସର୍ବତଃ ॥ ୨୭ ॥

---

ଶତ୍ରୁମାନଙ୍କୁ ନାଶ କରି ସମଗ୍ର ତ୍ରିଲୋକକୁ ରକ୍ଷା କରିଛ । ସେହି ଶତ୍ରୁମାନଙ୍କୁ ଯୁଦ୍ଧକ୍ଷେତ୍ରରେ ନିହତ କରି ସ୍ୱର୍ଗଲୋକକୁ ପ୍ରେରଣ କରିଛ ଏବଂ ଉନ୍ମତ୍ତ ଦୈତ୍ୟମାନେ ଆମକୁ ଯେଉଁ ଭୟଭୀତ କରି ରଖିଥିଲେ, ସେହି ଭୟକୁ ମଧ୍ୟ ଦୂର କରି ଦେଇଛ । ତୁମକୁ ଆମ୍ଭର ପ୍ରଣାମ ॥ ୨୩ ॥ ହେ ଦେବି ! ତୁମେ ଶୂଳଦ୍ୱାରା ଆମକୁ ରକ୍ଷା କର । ହେ ଅମ୍ବିକେ ! ତୁମେ ଖଡ୍‌ଗଦ୍ୱାରା ଆମ୍ଭମାନଙ୍କୁ ରକ୍ଷା କର ଏବଂ ଘଣ୍ଟାଧ୍ୱନି ଏବଂ ଧନୁର ଟଙ୍କାରଦ୍ୱାରା ମଧ୍ୟ ଆମ୍ଭମାନଙ୍କୁ ରକ୍ଷା କର ॥ ୨୪ ॥ ହେ ଚଣ୍ଡିକେ ! ପୂର୍ବ, ପଶ୍ଚିମ ଓ ଦକ୍ଷିଣ ଦିଗରୁ ଆମ୍ଭଙ୍କୁ ରକ୍ଷା କର । ହେ ଈଶ୍ୱରି ! ନିଜ ତ୍ରିଶୂଳକୁ ଘୂରାଇ ତୁମେ ଉତ୍ତର ଦିଗରେ ଆମ୍ଭଙ୍କୁ ରକ୍ଷା କର ॥ ୨୫ ॥ ତ୍ରିଲୋକରେ ତୁମର ଯେଉଁ ପରମ ସୁନ୍ଦର ଏବଂ ଅତ୍ୟନ୍ତ ଭୟଙ୍କର ରୂପ ବିଚରଣ କରୁଛନ୍ତି; ସେମାନଙ୍କଦ୍ୱାରା ତୁମେ ଆମ୍ଭଙ୍କୁ ତଥା ଏହି ଭୂଲୋକକୁ ରକ୍ଷା କର ॥ ୨୬ ॥ ହେ ଅମ୍ବିକେ ! ତୁମର କରପଲ୍ଲବରେ ଶୋଭା ପାଉଥିବା ଖଡ୍‌ଗ, ଶୂଳ ଏବଂ ଗଦା ଆଦି ଯେଉଁ ସବୁ ଅସ୍ତ୍ର ଅଛି; ସେସବୁଦ୍ୱାରା ତୁମେ ସବୁଦିଗରୁ ଆମ୍ଭମାନଙ୍କୁ ରକ୍ଷା କର ॥ ୨୭ ॥

*ଋଷିରୁବାଚ ॥ ୨୮ ॥*

**ଏବଂ ସ୍ତୁତା ସୁରୈର୍ଦିବ୍ୟୈଃ କୁସୁମୈର୍ନନ୍ଦନୋଦ୍ଭବୈଃ ।**
**ଅର୍ଚ୍ଚିତା ଜଗତାଂ ଧାତ୍ରୀ ତଥା ଗନ୍ଧାନୁଲେପନୈଃ ॥ ୨୯ ॥**
**ଭକ୍ତ୍ୟା ସମସ୍ତୈସ୍ତ୍ରିଦଶୈର୍ଦିବ୍ୟୈର୍ଧୂପୈସ୍ତୁ[୧] ଧୂପିତା ।**
**ପ୍ରାହ ପ୍ରସାଦସୁମୁଖୀ ସମସ୍ତାନ୍ ପ୍ରଣତାନ୍ ସୁରାନ୍ ॥ ୩୦ ॥**

*ଦେବ୍ୟୁବାଚ ॥ ୩୧ ॥*

**ବ୍ରିୟତାଂ ତ୍ରିଦଶାଃ ସର୍ବେ ଯଦସ୍ମତ୍ତୋଽଭିବାଞ୍ଛିତମ୍[୨] ॥ ୩୨ ॥**

*ଦେବା ଊଚୁଃ ॥ ୩୩ ॥*

**ଭଗବତ୍ୟା କୃତଂ ସର୍ବଂ ନ କିଞ୍ଚିଦବଶିଷ୍ୟତେ ॥ ୩୪ ॥**

---

**ଋଷି କହିଲେ—**॥ ୨୮ ॥ ଯେତେବେଳେ ଦେବଗଣ ଏହିପରି ଭାବରେ ଜଗନ୍ମାତା ଦୁର୍ଗାଙ୍କୁ ସ୍ତୁତି କଲେ ଏବଂ ନନ୍ଦନ-ବନର ଦିବ୍ୟ ପୁଷ୍ପ ଏବଂ ଗନ୍ଧ-ଚନ୍ଦନ ଆଦିଦ୍ୱାରା ତାଙ୍କୁ ପୂଜା କଲେ; ପୁଣି ସମସ୍ତେ ମିଳିମିଶି ଯେତେବେଳେ ଭକ୍ତିପୂର୍ବକ ଦିବ୍ୟ ଧୂପର ସୁଗନ୍ଧଦ୍ୱାରା ଅର୍ଚ୍ଚନା କଲେ; ସେତେବେଳେ ଦେବୀ ପ୍ରସନ୍ନବଦନ ହୋଇ ପ୍ରଣାମ କରି ସମସ୍ତ ଦେବତାଙ୍କୁ କହିଲେ—॥ ୨୯-୩୦ ॥

**ଦେବୀ କହିଲେ—**॥ ୩୧ ॥ ହେ ଦେବଗଣ ! ତୁମେ ସମସ୍ତେ ମୋଠାରୁ ଯେଉଁ ଅଭିଳଷିତ ବର ଆଶା କରୁଛ; ତାହା ବ୍ୟକ୍ତ କର ॥ ୩୨ ॥

**ଦେବତାମାନେ କହିଲେ—**॥ ୩୩ ॥ ଭଗବତୀ ଆମର ସମସ୍ତ ଇଚ୍ଛା ପୂରଣ କଲେ । ବର୍ତ୍ତମାନ ଆମର ଆଉ କିଛି ବାକି ନାହିଁ ॥ ୩୪ ॥

---

୧. ପା.—ପୈଃ ସୁଧୂପିତା ।

୨. ମାର୍କଣ୍ଡେୟପୁରାଣର ଆଧୁନିକ ପ୍ରତିରେ—'ଦଦାମ୍ୟହମତିପ୍ରୀତ୍ୟା ସ୍ତବୈରେଭିଃ ସୁପୂଜିତା ।' ଏତିକି ପାଠ ଅଧିକ ଅଛି । କେତେକ ପାଣ୍ଡୁଲିପିରେ—'କର୍ତ୍ତବ୍ୟମପରଂ ଯଚ୍ଚ ଦୁଷ୍କରଂ ତନ୍ନ ବିଦ୍ମହେ । ଇତ୍ୟାକର୍ଣ୍ଣ୍ୟ ବଚୋ ଦେବ୍ୟାଃ ପ୍ରତ୍ୟୂଚୁସ୍ତେ ଦିବୌକସଃ ॥' ଏତିକି ପାଠ ଅଧିକ ଅଛି ।

ଯଦୟଂ ନିହତଃ ଶତ୍ରୁରସ୍ମାକଂ ମହିଷାସୁରଃ ।
ଯଦି ଚାପି ବରୋ ଦେୟସ୍ତ୍ୱୟାସ୍ମାକଂ ମହେଶ୍ୱରି ॥ ୩୫ ॥
ସଂସ୍ମୃତା ସଂସ୍ମୃତା ତ୍ୱଂ ନୋ ହିଂସେଥାଃ ପରମାପଦଃ ।
ଯଶ୍ଚ ମର୍ତ୍ତ୍ୟଃ ସ୍ତବୈରେଭିସ୍ତ୍ୱାଂ ସ୍ତୋଷ୍ୟତ୍ୟମଳାନନେ ॥ ୩୬ ॥
ତସ୍ୟ ବିତ୍ତର୍ଦ୍ଧିବିଭବୈର୍ଧନଦାରାଦିସମ୍ପଦାମ୍ ।
ବୃଦ୍ଧୟେଽସ୍ମତ୍ପ୍ରସନ୍ନା ତ୍ୱଂ ଭବେଥାଃ ସର୍ବଦାମ୍ବିକେ ॥ ୩୭ ॥

*ଋଷିରୁବାଚ ॥ ୩୮ ॥*

ଇତି ପ୍ରସାଦିତା ଦେବୈର୍ଜଗତୋଽର୍ଥେ ତଥାଽଽତ୍ମନଃ ।
ତଥେତ୍ୟୁକ୍ତ୍ୱା ଭଦ୍ରକାଳୀ ବଭୂବାନ୍ତର୍ହିତା ନୃପ ॥ ୩୯ ॥
ଇତ୍ୟେତତ୍କଥିତଂ ଭୂପ ସମ୍ଭୂତା ସା ଯଥା ପୁରା ।
ଦେବୀ ଦେବଶରୀରେଭ୍ୟୋ ଜଗତ୍ତ୍ରୟହିତୈଷିଣୀ ॥ ୪୦ ॥

---

କାରଣ ଆମ୍ଭର ଏହି ଶତ୍ରୁ ମହିଷାସୁର ନିହତ ହେଲା । ହେ ମହେଶ୍ୱରି ! ଏତେ କାର୍ଯ୍ୟ କଲା ପରେ ମଧ୍ୟ ତୁମେ ଆମ୍ଭଙ୍କୁ ବର ପ୍ରଦାନ କରିବାକୁ ଚାହୁଁଛ କି ? ॥ ୩୫ ॥ ତେବେ ଯେତେବେଳେ ଆମେ ତୁମକୁ ସ୍ମରଣ କରିବୁ; ସେତେବେଳେ ତୁମେ ଆମକୁ ଦର୍ଶନ ଦେଇ ମହାନ୍ ବିପଦରୁ ରକ୍ଷା କରିବ । ହେ ପ୍ରସନ୍ନମୁଖୀ ଅମ୍ବିକେ ! ଯେଉଁ ମନୁଷ୍ୟ ଏହି ସ୍ତୋତ୍ରଦ୍ୱାରା ତୁମକୁ ସ୍ତୁତି କରନ୍ତି; ତାଙ୍କୁ ଧନ, ସମୃଦ୍ଧି ଓ ବୈଭବ ପ୍ରଦାନ କରିବା ସହ ଧନ ଓ ସ୍ତ୍ରୀ ଆଦି ସମ୍ପତ୍ତି ବୃଦ୍ଧି କରିବା ନିମନ୍ତେ ତୁମେ ଆମ୍ଭ ଉପରେ ସର୍ବଦା ପ୍ରସନ୍ନ ହୁଅ ॥ ୩୬, ୩୭ ॥

**ଋଷି କହିଲେ**—॥ ୩୮ ॥ ହେ ରାଜନ୍ ! ଦେବତାମାନେ ଯେତେବେଳେ ନିଜର ତଥା ଜଗତ୍‌ର କଲ୍ୟାଣ ପାଇଁ ଭଦ୍ରକାଳୀ ଦେବୀଙ୍କୁ ଏହିପ୍ରକାରେ ପ୍ରସନ୍ନ କଲେ; ସେତେବେଳେ ସେ 'ତଥାସ୍ତୁ' ବୋଲି କହି ଅନ୍ତର୍ଦ୍ଧାନ ହୋଇଗଲେ ॥ ୩୯ ॥ ହେ ଭୂପାଳ ! ଏହିପ୍ରକାର ପୂର୍ବକାଳରେ ତ୍ରିଭୁବନର ହିତ କାମନା କରୁଥିବା ଦେବୀ ଯେଉଁପରି ଭାବରେ ଦେବତାମାନଙ୍କର ଶରୀରରୁ ପ୍ରକଟ ହୋଇଥିଲେ; ସେସବୁ କଥା ମୁଁ କହି ଶୁଣାଇଲି ॥ ୪୦ ॥

**ପୁନଶ୍ଚ ଗୌରୀଦେହାତ୍ ସା[1] ସମୁଦ୍ଭୂତା ଯଥାଭବତ୍ ।**
**ବଧାୟ ଦୁଷ୍ଟଦୈତ୍ୟାନାଂ ତଥା ଶୁମ୍ଭନିଶୁମ୍ଭୟୋଃ ॥ ୪୧ ॥**
**ରକ୍ଷଣାୟ ଚ ଲୋକାନାଂ ଦେବାନାମୁପକାରିଣୀ ।**
**ତଚ୍ଛୃଣୁଷ୍ୱ ମୟାଽଽଖ୍ୟାତଂ ଯଥାବତ୍କଥୟାମି ତେ ॥ ହ୍ରୀଂ ଓଁ ॥ ୪୨ ॥**

*ଇତି ଶ୍ରୀମାର୍କଣ୍ଡେୟପୁରାଣେ ସାବର୍ଣ୍ଣିକେ ମନ୍ୱନ୍ତରେ ଦେବୀମାହାତ୍ମ୍ୟେ ଶକ୍ରାଦିସ୍ତୁତିର୍ନାମ ଚତୁର୍ଥୋଽଧ୍ୟାୟଃ ॥ ୪ ॥*

*ଉବାଚ ୫, ଅର୍ଧଶ୍ଳୋକୌ ୨, ଶ୍ଳୋକାଃ ୩୫, ଏବମ୍ ୪୨, ଏବମାଦିତଃ ୨୫୯ ॥*



ବର୍ତ୍ତମାନ ପୁନଃ ଦେବତାମାନଙ୍କ ଉପକାର କରୁଥିବା ସେହି ଦେବୀ ଦୁଷ୍ଟ ଦୈତ୍ୟ ତଥା ଶୁମ୍ଭ-ନିଶୁମ୍ଭଙ୍କୁ ବଧ କରିବା ନିମନ୍ତେ ଏବଂ ସମସ୍ତ ସଂସାରକୁ ରକ୍ଷା କରିବା ପାଇଁ ଗୌରୀଦେବୀଙ୍କ ଶରୀରରୁ ଯେଉଁପରି ଭାବରେ ପ୍ରକଟ ହୋଇଥିଲେ; ସେସବୁ ପ୍ରସଙ୍ଗ ମୋଠାରୁ ଶୁଣ । ମୁଁ ସେସବୁ ତୁମ୍ଭ ପାଖରେ ଯଥାବତ୍ ବର୍ଣ୍ଣନା କରୁଛି ॥ ୪୧-୪୨ ॥

*ଏହିପରି ଶ୍ରୀମାର୍କଣ୍ଡେୟପୁରାଣରେ ସାବର୍ଣ୍ଣିକ ମନ୍ୱନ୍ତର କଥାନ୍ତର୍ଗତ ଦେବୀମାହାତ୍ମ୍ୟରେ 'ଶକ୍ରାଦିସ୍ତୁତି' ନାମକ ଚତୁର୍ଥ ଅଧ୍ୟାୟ ସମାପ୍ତ ହେଲା ॥ ୪ ॥*



୧. କେତେକ ସ୍ଥାନରେ 'ଗୌରୀଦେହା ସା', 'ଗୌରୀ ଦେହା ସା' ଇତ୍ୟାଦି ପାଠ ମଧ୍ୟ ଉପଲବ୍ଧ ହୁଏ ।

## ପଞ୍ଚମୋଽଧ୍ୟାୟଃ

[ଦେବତାମାନଙ୍କଦ୍ୱାରା ଦେବୀଙ୍କ ସ୍ତୁତି, ଚଣ୍ଡ-ମୁଣ୍ଡଙ୍କ ମୁଖରୁ ଅମ୍ବିକାଙ୍କ ରୂପର ପ୍ରଶଂସା ଶୁଣି ତାଙ୍କ ନିକଟକୁ ଶୁମ୍ଭ ଦୈତ୍ୟର ଦୂତ ପ୍ରେରଣ ଏବଂ ନିରାଶ ହୋଇ ଦୂତର ପ୍ରତ୍ୟାବର୍ତ୍ତନ]

### ବିନିଯୋଗଃ

ଓଁ ଅସ୍ୟ ଶ୍ରୀଉତ୍ତରଚରିତ୍ରସ୍ୟ ରୁଦ୍ର ଋଷିଃ, ମହାସରସ୍ୱତୀ ଦେବତା, ଅନୁଷ୍ଟୁପ୍ ଛନ୍ଦଃ, ଭୀମା ଶକ୍ତିଃ, ଭ୍ରାମରୀ ବୀଜମ୍, ସୂର୍ଯ୍ୟସ୍ତତ୍ତ୍ୱମ୍, ସାମବେଦଃ ସ୍ୱରୂପମ୍, ମହାସରସ୍ୱତୀପ୍ରୀତ୍ୟର୍ଥେ ଉତ୍ତରଚରିତ୍ରପାଠେ ବିନିଯୋଗଃ ।

### ଧ୍ୟାନମ୍

**ଓଁ ଘଣ୍ଟାଶୂଳହଲାନି ଶଙ୍ଖମୁସଲେ ଚକ୍ରଂ ଧନୁଃ ସାୟକଂ**
**ହସ୍ତାବ୍ଜୈର୍ଦଧତୀଂ ଘନାନ୍ତବିଲସଚ୍ଛୀତାଂଶୁତୁଲ୍ୟପ୍ରଭାମ୍ ।**
**ଗୌରୀଦେହସମୁଦ୍ଭବାଂ ତ୍ରିଜଗତାମାଧାରଭୂତାଂ ମହା-**
**ପୂର୍ବାମତ୍ର ସରସ୍ୱତୀମନୁଭଜେ ଶୁମ୍ଭାଦିଦୈତ୍ୟାର୍ଦିନୀମ୍ ॥**

*'ଓଁ କ୍ଲୀଂ' ଋଷିରୁବାଚ ॥ ୧ ॥*

**ପୁରା ଶୁମ୍ଭନିଶୁମ୍ଭାଭ୍ୟାମସୁରାଭ୍ୟାଂ ଶଚୀପତେଃ ।**
**ତ୍ରୈଲୋକ୍ୟଂ ଯଜ୍ଞଭାଗାଶ୍ଚ ହୃତା ମଦବଲାଶ୍ରୟାତ୍ ॥ ୨ ॥**

---

ଏହି ଉତ୍ତର ଚରିତ୍ରର ରୁଦ୍ର ଋଷି, ମହାସରସ୍ୱତୀ ଦେବତା, ଅନୁଷ୍ଟୁପ୍ ଛନ୍ଦ, ଭୀମା ଶକ୍ତି, ଭ୍ରାମରୀ ବୀଜ, ସୂର୍ଯ୍ୟ ତତ୍ତ୍ୱ ଏବଂ ସାମବେଦ ସ୍ୱରୂପ ଅଟନ୍ତି । ମହାସରସ୍ୱତୀଙ୍କୁ ପ୍ରସନ୍ନ କରିବା ନିମନ୍ତେ ଉତ୍ତର ଚରିତ୍ରପାଠରେ ଏହାର ବିନିଯୋଗ କରାଯାଏ ।

ଯିଏ ନିଜ କରକମଳରେ ଘଣ୍ଟା, ଶୂଳ, ହଳ, ଶଙ୍ଖ, ମୂସଳ, ଚକ୍ର, ଧନୁ ଏବଂ ତୀର ଧାରଣ କରିଛନ୍ତି; ଶରଦ୍‌ଋତୁର ଶୋଭାସମ୍ପନ୍ନ ଚନ୍ଦ୍ରମା ସମାନ ଯାହାଙ୍କର ମନୋହର କାନ୍ତି ଅଟେ; ଯିଏ ତ୍ରିଭୁବନର ଆଧାରଭୂତା ଓ ଶୁମ୍ଭ ଆଦି ଦୈତ୍ୟମାନଙ୍କ ବିନାଶକର୍ତ୍ତ୍ରୀ ତଥା ଗୌରୀଙ୍କ ଶରୀରରୁ ଯିଏ ପ୍ରକଟିତ ହୋଇଛନ୍ତି; ସେହି ମହାସରସ୍ୱତୀ ଦେବୀଙ୍କୁ ମୁଁ ନିରନ୍ତର ଭଜନ କରୁଛି ।

**ଋଷି କହିଲେ**—॥ ୧ ॥ ପୂର୍ବକାଳରେ ଶୁମ୍ଭ ଓ ନିଶୁମ୍ଭ ନାମକ ଅସୁରମାନେ

ତାବେବ ସୂର୍ଯ୍ୟତାଂ ତଦ୍‌ବଦଧିକାରଂ ତଥୈନ୍ଦବମ୍ ।
କୌବେରମଥ ଯାମ୍ୟଂ ଚ ଚକ୍ରାତେ ବରୁଣସ୍ୟ ଚ ॥ ୩ ॥
ତାବେବ ପବନର୍ଦ୍ଧିଂ ଚ ଚକ୍ରତୁର୍ବହ୍ନିକର୍ମ ଚ[୧] ।
ତତୋ ଦେବା ବିନିର୍ଦ୍ଧୂତା ଭ୍ରଷ୍ଟରାଜ୍ୟାଃ ପରାଜିତାଃ ॥ ୪ ॥
ହୃତାଧିକାରାସ୍ତ୍ରିଦଶାସ୍ତାଭ୍ୟାଂ ସର୍ବେ ନିରାକୃତାଃ ।
ମହାସୁରାଭ୍ୟାଂ ତାଂ ଦେବୀଂ ସଂସ୍ମରନ୍ତ୍ୟପରାଜିତାମ୍ ॥ ୫ ॥
ତୟାସ୍ମାକଂ ବରୋ ଦତ୍ତୋ ଯଥାଽଽପସ୍ସୁ ସ୍ମୃତାଖିଳାଃ ।
ଭବତାଂ ନାଶୟିଷ୍ୟାମି ତତ୍‌କ୍ଷଣାତ୍‌ପରମାପଦଃ ॥ ୬ ॥
ଇତି କୃତ୍ୱା ମତିଂ ଦେବା ହିମବନ୍ତଂ ନଗେଶ୍ୱରମ୍ ।
ଜଗ୍ମୁସ୍ତତ୍ର ତତୋ ଦେବୀଂ ବିଷ୍ଣୁମାୟାଂ ପ୍ରତୁଷ୍ଟୁବୁଃ ॥ ୭ ॥

*ଦେବା ଊଚୁଃ ॥ ୮ ॥*

ନମୋ ଦେବ୍ୟୈ ମହାଦେବ୍ୟୈ ଶିବାୟୈ ସତତଂ ନମଃ ।
ନମଃ ପ୍ରକୃତ୍ୟୈ ଭଦ୍ରାୟୈ ନିୟତାଃ ପ୍ରଣତାଃ ସ୍ମ ତାମ୍ ॥ ୯ ॥

---

ନିଜ ଶକ୍ତିବଳରେ ଶଚୀପତି ଇନ୍ଦ୍ରଙ୍କ ହସ୍ତରୁ ତ୍ରିଭୁବନର ରାଜ୍ୟ ଏବଂ ଯଜ୍ଞଭାଗ ଛଡ଼ାଇ ନେଇଥିଲେ ॥ ୨ ॥ ସେ ଦୁହେଁ ସୂର୍ଯ୍ୟ, ଚନ୍ଦ୍ର, କୁବେର, ଯମ ଏବଂ ବରୁଣଙ୍କ ଅଧିକାରକୁ ମଧ୍ୟ ଉପଯୋଗ କରିବାକୁ ଲାଗିଲେ । ବାୟୁ ଓ ଅଗ୍ନିଙ୍କ କାର୍ଯ୍ୟ ମଧ୍ୟ ସେମାନେ କଲେ । ସେହି ଦୁହେଁ ସମସ୍ତ ଦେବତାଙ୍କୁ ଅପମାନିତ, ରାଜ୍ୟଭ୍ରଷ୍ଟ, ପରାଜିତ ତଥା ଅଧିକାରହୀନ କରି ସ୍ୱର୍ଗରୁ ବାହାର କରିଥିଲେ । ସେହି ଦୁଇ ମହାନ୍ ଅସୁରଙ୍କ ଦ୍ୱାରା ତିରସ୍କୃତ ହୋଇଥିବା ଦେବତାମାନେ ଅପରାଜିତା ଦେବୀଙ୍କୁ ସ୍ମରଣ କଲେ ଏବଂ ଚିନ୍ତା କଲେ—'ଜଗଦମ୍ବା ଆମ୍ଭମାନଙ୍କୁ ବର ପ୍ରଦାନ କରିଥିଲେ ଯେ ବିପତ୍ତିକାଳରେ ସ୍ମରଣ କଲାମାତ୍ରକେ ମୁଁ ତୁମ୍ଭର ସବୁ ବିପତ୍ତିକୁ ସହସା ବିନାଶ କରିବି' ॥ ୩—୬ ॥ ଏହି ବିଗ୍ଚର କରି ଦେବତାମାନେ ଗିରିରାଜ ହିମାଳୟକୁ ଗଲେ ଏବଂ ସେଠାରେ ଭଗବତୀ ବିଷ୍ଣୁମାୟାଙ୍କୁ ସ୍ତୁତି କଲେ ॥ ୭ ॥

**ଦେବତାମାନେ କହିଲେ**—॥ ୮ ॥ ଦେବୀଙ୍କୁ ନମସ୍କାର । ମହାଦେବୀ

---

୧. କେତେକ ପୋଥିରେ ଏହାପରେ 'ଅନ୍ୟେଷାଂ ଚାଧିକାରାନ୍ ସ ସ୍ୱୟମେବାଧିତିଷ୍ଠତି'—ଏତିକି ଅଧିକ ପାଠ ରହିଛି ।

ରୌଦ୍ରାୟୈ ନମୋ ନିତ୍ୟାୟୈ ଗୌର୍ଯ୍ୟୈ ଧାତ୍ର୍ୟୈ ନମୋ ନମଃ ।
ଜ୍ୟୋତ୍ସ୍ନାୟୈ ଚେନ୍ଦୁରୂପିଣ୍ୟୈ ସୁଖାୟୈ ସତତଂ ନମଃ ॥ ୧୦ ॥
କଲ୍ୟାଣ୍ୟୈ ପ୍ରଣତାଂ[୧] ବୃଦ୍ଧ୍ୟୈ ସିଦ୍ଧ୍ୟୈ କୁର୍ମୋ ନମୋ ନମଃ ।
ନୈର୍ଋତ୍ୟୈ ଭୂଭୃତାଂ ଲକ୍ଷ୍ମ୍ୟୈ ଶର୍ବାଣ୍ୟୈ ତେ ନମୋ ନମଃ ॥ ୧୧ ॥
ଦୁର୍ଗାୟୈ ଦୁର୍ଗପାରାୟୈ ସାରାୟୈ ସର୍ବକାରିଣ୍ୟୈ ।
ଖ୍ୟାତ୍ୟୈ ତଥୈବ କୃଷ୍ଣାୟୈ ଧୂମ୍ରାୟୈ ସତତଂ ନମଃ ॥ ୧୨ ॥
ଅତିସୌମ୍ୟାତିରୌଦ୍ରାୟୈ ନତାସ୍ତସ୍ୟୈ ନମୋ ନମଃ ।
ନମୋ ଜଗତ୍ପ୍ରତିଷ୍ଠାୟୈ ଦେବ୍ୟୈ କୃତ୍ୟୈ ନମୋ ନମଃ ॥ ୧୩ ॥
ଯା ଦେବୀ ସର୍ବଭୂତେଷୁ ବିଷ୍ଣୁମାୟେତି ଶବ୍ଦିତା ।
ନମସ୍ତସ୍ୟୈ ॥ ୧୪ ॥ ନମସ୍ତସ୍ୟୈ ॥ ୧୫ ॥ ନମସ୍ତସ୍ୟୈ ନମୋ ନମଃ ॥ ୧୬ ॥

ଶିବାଙ୍କୁ ସର୍ବଦା ନମସ୍କାର । ପ୍ରକୃତି ଏବଂ ଭଦ୍ରାଙ୍କୁ ପ୍ରଣାମ କରୁଛୁ । ଆମ୍ଭେମାନେ ନିୟମପୂର୍ବକ ଜଗଦମ୍ବାଙ୍କୁ ନମସ୍କାର କରୁଛୁ ॥ ୯ ॥ ରୌଦ୍ରାଙ୍କୁ ନମସ୍କାର । ନିତ୍ୟା, ଗୌରୀ ଏବଂ ଧାତ୍ରୀଙ୍କୁ ବାରମ୍ବାର ନମସ୍କାର କରୁଛୁ । ଜ୍ୟୋତ୍ସ୍ନାମୟୀ, ଚନ୍ଦ୍ରରୂପିଣୀ ଏବଂ ସୁଖସ୍ୱରୂପା ଦେବୀଙ୍କୁ ସତତ ପ୍ରଣାମ କରୁଛୁ ॥ ୧୦ ॥ ଶରଣାଗତଙ୍କ କଲ୍ୟାଣ କରୁଥିବା, ବୃଦ୍ଧି ଓ ସିଦ୍ଧିରୂପା ଦେବୀଙ୍କୁ ଆମ୍ଭେ ବାରମ୍ବାର ନମସ୍କାର କରୁଛୁ । ନୈର୍ଋତୀ (ରାକ୍ଷସମାନଙ୍କ ଲକ୍ଷ୍ମୀ), ରାଜାମାନଙ୍କ ଲକ୍ଷ୍ମୀ ତଥା ଶର୍ବାଣୀ (ଶିବପତ୍ନୀ) ସ୍ୱରୂପା ଜଗଦମ୍ବାଙ୍କୁ ଆମ୍ଭେ ବାରମ୍ବାର ନମସ୍କାର କରୁଛୁ ॥ ୧୧ ॥ ଦୁର୍ଗା, ଦୁର୍ଗପାରା (ଦୁର୍ଗମ ସଙ୍କଟରୁ ପାର କରୁଥିବା), ସାରା (ସମସ୍ତଙ୍କ ସାରଭୂତା), ସର୍ବକାରିଣୀ, ଖ୍ୟାତି, କୃଷ୍ଣା ଓ ଧୂମ୍ରାଦେବୀଙ୍କୁ ସର୍ବଦା ନମସ୍କାର କରୁଛୁ ॥ ୧୨ ॥ ଅତ୍ୟନ୍ତ ସୌମ୍ୟ ତଥା ଅତି ରୌଦ୍ରରୂପା ଦେବୀଙ୍କୁ ଆମ୍ଭେ ନମସ୍କାର କରୁଛୁ । ତାଙ୍କୁ ଆମ୍ଭେ ବାରମ୍ବାର ପ୍ରଣାମ କରୁଛୁ । ଜଗତ୍‌ର ଆଧାରଭୂତା କୃତି ଦେବୀଙ୍କୁ ଆମ୍ଭେ ବାରମ୍ବାର ନମସ୍କାର କରୁଛୁ ॥ ୧୩ ॥ ଯେଉଁ ଦେବୀ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ବିଷ୍ଣୁମାୟା ନାମରେ କଥିତ ହୁଅନ୍ତି; ତାଙ୍କୁ ନମସ୍କାର, ତାଙ୍କୁ ନମସ୍କାର, ତାଙ୍କୁ ବାରମ୍ବାର ନମସ୍କାର କରୁଛୁ ॥ ୧୪—୧୬ ॥

୧. ବୃଦ୍ଧ୍ୟୈ ସିଦ୍ଧ୍ୟୈ ଚ ପ୍ରଣତାଂ ଦେବୀଂ ପ୍ରତି ନମଃ ନତିଂ କୁର୍ମ ଇତ୍ୟନ୍ୱୟଃ । ଯଦ୍ ବା ପ୍ରଣମନ୍ତୀତି ପ୍ରଣନ୍ତଃ, ତେଷାଂ ପ୍ରଣତାମିତି ଷଷ୍ଠୀବହୁବଚନାନ୍ତଂ ବୋଧ୍ୟମ୍ । ଇତି ଶାନ୍ତନବ୍ୟାଂ ଟୀକାୟାଂ ସ୍ପଷ୍ଟମ୍, 'ପ୍ରଣତାଃ' ଇତି ପାଠାନ୍ତରମ୍ ।

ଯା ଦେବୀ ସର୍ବଭୂତେଷୁ ଚେତନେତ୍ୟଭିଧୀୟତେ ।
ନମସ୍ତସ୍ୟୈ ॥ ୧୭ ॥ ନମସ୍ତସ୍ୟୈ ॥ ୧୮ ॥ ନମସ୍ତସ୍ୟୈ ନମୋ ନମଃ ॥ ୧୯ ॥
ଯା ଦେବୀ ସର୍ବଭୂତେଷୁ ବୁଦ୍ଧିରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ॥ ୨୦ ॥ ନମସ୍ତସ୍ୟୈ ॥ ୨୧ ॥ ନମସ୍ତସ୍ୟୈ ନମୋ ନମଃ ॥ ୨୨ ॥
ଯା ଦେବୀ ସର୍ବଭୂତେଷୁ ନିଦ୍ରାରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ॥ ୨୩ ॥ ନମସ୍ତସ୍ୟୈ ॥ ୨୪ ॥ ନମସ୍ତସ୍ୟୈ ନମୋ ନମଃ ॥ ୨୫ ॥
ଯା ଦେବୀ ସର୍ବଭୂତେଷୁ କ୍ଷୁଧାରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ॥ ୨୬ ॥ ନମସ୍ତସ୍ୟୈ ॥ ୨୭ ॥ ନମସ୍ତସ୍ୟୈ ନମୋ ନମଃ ॥ ୨୮ ॥
ଯା ଦେବୀ ସର୍ବଭୂତେଷୁଚ୍ଛାୟାରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ॥ ୨୯ ॥ ନମସ୍ତସ୍ୟୈ ॥ ୩୦ ॥ ନମସ୍ତସ୍ୟୈ ନମୋ ନମଃ ॥ ୩୧ ॥
ଯା ଦେବୀ ସର୍ବଭୂତେଷୁ ଶକ୍ତିରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ॥ ୩୨ ॥ ନମସ୍ତସ୍ୟୈ ॥ ୩୩ ॥ ନମସ୍ତସ୍ୟୈ ନମୋ ନମଃ ॥ ୩୪ ॥
ଯା ଦେବୀ ସର୍ବଭୂତେଷୁ ତୃଷ୍ଣାରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ॥ ୩୫ ॥ ନମସ୍ତସ୍ୟୈ ॥ ୩୬ ॥ ନମସ୍ତସ୍ୟୈ ନମୋ ନମଃ ॥ ୩୭ ॥

---

ଯେଉଁ ଦେବୀଙ୍କୁ ସମସ୍ତ ପ୍ରାଣୀଙ୍କର ଚେତନା ବୋଲି କୁହାଯାଏ; ତାହାଙ୍କୁ ନମସ୍କାର । ତାହାଙ୍କୁ ନମସ୍କାର । ତାହାଙ୍କୁ ଆମ୍ଭର ବାରମ୍ବାର ନମସ୍କାର ॥ ୧୭—୧୯ ॥ ଯେଉଁ ଦେବୀ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ବୁଦ୍ଧିରୂପରେ ଅବସ୍ଥାନ କରିଛନ୍ତି; ତାହାଙ୍କୁ ନମସ୍କାର । ତାହାଙ୍କୁ ନମସ୍କାର । ତାହାଙ୍କୁ ବାରମ୍ବାର ନମସ୍କାର କରୁଛୁ ॥ ୨୦—୨୨ ॥ ଯେଉଁ ଦେବୀ ସବୁ ପ୍ରାଣୀଙ୍କଠାରେ ନିଦ୍ରାରୂପରେ ଅବସ୍ଥାନ କରିଛନ୍ତି; ତାହାଙ୍କୁ ନମସ୍କାର । ତାହାଙ୍କୁ ନମସ୍କାର । ତାହାଙ୍କୁ ବାରମ୍ବାର ନମସ୍କାର ॥ ୨୩—୨୫ ॥ ଯେଉଁ ଦେବୀ ସମସ୍ତ ପ୍ରାଣୀଙ୍କ ମଧ୍ୟରେ କ୍ଷୁଧାରୂପରେ ଅବସ୍ଥାନ କରିଛନ୍ତି; ତାହାଙ୍କୁ ନମସ୍କାର । ତାହାଙ୍କୁ ନମସ୍କାର । ତାହାଙ୍କୁ ବାରମ୍ବାର ନମସ୍କାର ॥ ୨୬—୨୮ ॥ ଯେଉଁ ଦେବୀ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଛାୟାରୂପରେ ଅବସ୍ଥାନ କରିଛନ୍ତି; ତାହାଙ୍କୁ ନମସ୍କାର । ତାହାଙ୍କୁ ନମସ୍କାର । ତାହାଙ୍କୁ ବାରମ୍ବାର ନମସ୍କାର ॥ ୨୯—୩୧ ॥ ଯେଉଁ ଦେବୀ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଶକ୍ତିରୂପରେ ଅବସ୍ଥାନ କରିଛନ୍ତି; ତାହାଙ୍କୁ ନମସ୍କାର । ତାହାଙ୍କୁ ନମସ୍କାର । ତାହାଙ୍କୁ ବାରମ୍ବାର ନମସ୍କାର ॥ ୩୨—୩୪ ॥ ଯେଉଁ ଦେବୀ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ତୃଷ୍ଣାରୂପରେ ଅବସ୍ଥାନ କରିଛନ୍ତି; ତାହାଙ୍କୁ ନମସ୍କାର । ତାହାଙ୍କୁ ନମସ୍କାର । ତାହାଙ୍କୁ ବାରମ୍ବାର ନମସ୍କାର ॥ ୩୫—୩୭ ॥

**ଯା ଦେବୀ ସର୍ବଭୂତେଷୁ କ୍ଷାନ୍ତିରୂପେଣ ସଂସ୍ଥିତା ।**
**ନମସ୍ତସ୍ୟୈ ॥ ୩୮ ॥ ନମସ୍ତସ୍ୟୈ ॥ ୩୯ ॥ ନମସ୍ତସ୍ୟୈ ନମୋ ନମଃ ॥ ୪୦ ॥**
**ଯା ଦେବୀ ସର୍ବଭୂତେଷୁ ଜାତିରୂପେଣ ସଂସ୍ଥିତା ।**
**ନମସ୍ତସ୍ୟୈ ॥ ୪୧ ॥ ନମସ୍ତସ୍ୟୈ ॥ ୪୨ ॥ ନମସ୍ତସ୍ୟୈ ନମୋ ନମଃ ॥ ୪୩ ॥**
**ଯା ଦେବୀ ସର୍ବଭୂତେଷୁ ଲଜ୍ଜାରୂପେଣ ସଂସ୍ଥିତା ।**
**ନମସ୍ତସ୍ୟୈ ॥ ୪୪ ॥ ନମସ୍ତସ୍ୟୈ ॥ ୪୫ ॥ ନମସ୍ତସ୍ୟୈ ନମୋ ନମଃ ॥ ୪୬ ॥**
**ଯା ଦେବୀ ସର୍ବଭୂତେଷୁ ଶାନ୍ତିରୂପେଣ ସଂସ୍ଥିତା ।**
**ନମସ୍ତସ୍ୟୈ ॥ ୪୭ ॥ ନମସ୍ତସ୍ୟୈ ॥ ୪୮ ॥ ନମସ୍ତସ୍ୟୈ ନମୋ ନମଃ ॥ ୪୯ ॥**
**ଯା ଦେବୀ ସର୍ବଭୂତେଷୁ ଶ୍ରଦ୍ଧାରୂପେଣ ସଂସ୍ଥିତା ।**
**ନମସ୍ତସ୍ୟୈ ॥ ୫୦ ॥ ନମସ୍ତସ୍ୟୈ ॥ ୫୧ ॥ ନମସ୍ତସ୍ୟୈ ନମୋ ନମଃ ॥ ୫୨ ॥**
**ଯା ଦେବୀ ସର୍ବଭୂତେଷୁ କାନ୍ତିରୂପେଣ ସଂସ୍ଥିତା ।**
**ନମସ୍ତସ୍ୟୈ ॥ ୫୩ ॥ ନମସ୍ତସ୍ୟୈ ॥ ୫୪ ॥ ନମସ୍ତସ୍ୟୈ ନମୋ ନମଃ ॥ ୫୫ ॥**
**ଯା ଦେବୀ ସର୍ବଭୂତେଷୁ ଲକ୍ଷ୍ମୀରୂପେଣ ସଂସ୍ଥିତା ।**
**ନମସ୍ତସ୍ୟୈ ॥ ୫୬ ॥ ନମସ୍ତସ୍ୟୈ ॥ ୫୭ ॥ ନମସ୍ତସ୍ୟୈ ନମୋ ନମଃ ॥ ୫୮ ॥**

---

ଯେଉଁ ଦେବୀ ସମସ୍ତ ପ୍ରାଣୀଙ୍କ ମଧ୍ୟରେ କ୍ଷାନ୍ତି (କ୍ଷମା)ରୂପରେ ଅବସ୍ଥାନ କରିଛନ୍ତି; ତାହାଙ୍କୁ ନମସ୍କାର । ତାହାଙ୍କୁ ନମସ୍କାର । ତାହାଙ୍କୁ ବାରମ୍ବାର ନମସ୍କାର ॥ ୩୮—୪୦ ॥ ଯେଉଁ ଦେବୀ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଜାତିରୂପରେ ଅବସ୍ଥାନ କରିଛନ୍ତି; ତାହାଙ୍କୁ ନମସ୍କାର । ତାହାଙ୍କୁ ନମସ୍କାର । ତାହାଙ୍କୁ ବାରମ୍ବାର ନମସ୍କାର ॥ ୪୧—୪୩ ॥ ଯେଉଁ ଦେବୀ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଲଜ୍ଜାରୂପରେ ଅବସ୍ଥାନ କରିଛନ୍ତି; ତାହାଙ୍କୁ ନମସ୍କାର । ତାହାଙ୍କୁ ନମସ୍କାର । ତାହାଙ୍କୁ ବାରମ୍ବାର ନମସ୍କାର ॥ ୪୪—୪୬ ॥ ଯେଉଁ ଦେବୀ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଶାନ୍ତିରୂପରେ ଅବସ୍ଥାନ କରିଛନ୍ତି; ତାହାଙ୍କୁ ନମସ୍କାର । ତାହାଙ୍କୁ ନମସ୍କାର । ତାହାଙ୍କୁ ବାରମ୍ବାର ନମସ୍କାର ॥ ୪୭—୪୯ ॥ ଯେଉଁ ଦେବୀ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଶ୍ରଦ୍ଧାରୂପରେ ଅବସ୍ଥାନ କରିଛନ୍ତି; ତାହାଙ୍କୁ ନମସ୍କାର । ତାହାଙ୍କୁ ନମସ୍କାର । ତାହାଙ୍କୁ ବାରମ୍ବାର ନମସ୍କାର ॥ ୫୦—୫୨ ॥ ଯେଉଁ ଦେବୀ ସମସ୍ତ ପ୍ରାଣୀଙ୍କ ମଧ୍ୟରେ କାନ୍ତିରୂପରେ ଅବସ୍ଥାନ କରିଛନ୍ତି; ତାହାଙ୍କୁ ନମସ୍କାର । ତାହାଙ୍କୁ ନମସ୍କାର । ତାହାଙ୍କୁ ବାରମ୍ବାର ନମସ୍କାର ॥ ୫୩—୫୫ ॥ ଯେଉଁ ଦେବୀ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଲକ୍ଷ୍ମୀରୂପରେ ଅବସ୍ଥାନ କରିଛନ୍ତି; ତାହାଙ୍କୁ ନମସ୍କାର । ତାହାଙ୍କୁ ନମସ୍କାର । ତାହାଙ୍କୁ ବାରମ୍ବାର ନମସ୍କାର ॥ ୫୬—୫୮ ॥

ଯା ଦେବୀ ସର୍ବଭୂତେଷୁ ବୃତ୍ତିରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ॥ ୫୯ ॥ ନମସ୍ତସ୍ୟୈ ॥ ୬୦ ॥ ନମସ୍ତସ୍ୟୈ ନମୋ ନମଃ ॥ ୬୧ ॥
ଯା ଦେବୀ ସର୍ବଭୂତେଷୁ ସ୍ମୃତିରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ॥ ୬୨ ॥ ନମସ୍ତସ୍ୟୈ ॥ ୬୩ ॥ ନମସ୍ତସ୍ୟୈ ନମୋ ନମଃ ॥ ୬୪ ॥
ଯା ଦେବୀ ସର୍ବଭୂତେଷୁ ଦୟାରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ॥ ୬୫ ॥ ନମସ୍ତସ୍ୟୈ ॥ ୬୬ ॥ ନମସ୍ତସ୍ୟୈ ନମୋ ନମଃ ॥ ୬୭ ॥
ଯା ଦେବୀ ସର୍ବଭୂତେଷୁ ତୁଷ୍ଟିରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ॥ ୬୮ ॥ ନମସ୍ତସ୍ୟୈ ॥ ୬୯ ॥ ନମସ୍ତସ୍ୟୈ ନମୋ ନମଃ ॥ ୭୦ ॥
ଯା ଦେବୀ ସର୍ବଭୂତେଷୁ ମାତୃରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ॥ ୭୧ ॥ ନମସ୍ତସ୍ୟୈ ॥ ୭୨ ॥ ନମସ୍ତସ୍ୟୈ ନମୋ ନମଃ ॥ ୭୩ ॥
ଯା ଦେବୀ ସର୍ବଭୂତେଷୁ ଭ୍ରାନ୍ତିରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ॥ ୭୪ ॥ ନମସ୍ତସ୍ୟୈ ॥ ୭୫ ॥ ନମସ୍ତସ୍ୟୈ ନମୋ ନମଃ ॥ ୭୬ ॥
ଇନ୍ଦ୍ରିୟାଣାମଧିଷ୍ଠାତ୍ରୀ ଭୂତାନାଂ ଚାଖିଳେଷୁ ଯା ।
ଭୂତେଷୁ ସତତଂ ତସ୍ୟୈ ବ୍ୟାପ୍ତିଦେବ୍ୟୈ ନମୋ ନମଃ ॥ ୭୭ ॥

---

ଯେଉଁ ଦେବୀ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ବୃତ୍ତିରୂପରେ ଅବସ୍ଥାନ କରିଛନ୍ତି; ତାହାଙ୍କୁ ନମସ୍କାର । ତାହାଙ୍କୁ ନମସ୍କାର । ତାହାଙ୍କୁ ବାରମ୍ବାର ନମସ୍କାର ॥ ୫୯—୬୧ ॥ ଯେଉଁ ଦେବୀ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ସ୍ମୃତିରୂପରେ ଅବସ୍ଥାନ କରିଛନ୍ତି; ତାହାଙ୍କୁ ନମସ୍କାର । ତାହାଙ୍କୁ ନମସ୍କାର । ତାହାଙ୍କୁ ବାରମ୍ବାର ନମସ୍କାର ॥ ୬୨—୬୪ ॥ ଯେଉଁ ଦେବୀ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଦୟାରୂପରେ ଅବସ୍ଥାନ କରିଛନ୍ତି; ତାହାଙ୍କୁ ନମସ୍କାର । ତାହାଙ୍କୁ ନମସ୍କାର । ତାହାଙ୍କୁ ବାରମ୍ବାର ନମସ୍କାର ॥ ୬୫—୬୭ ॥ ଯେଉଁ ଦେବୀ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ତୁଷ୍ଟିରୂପରେ ଅବସ୍ଥାନ କରିଛନ୍ତି; ତାହାଙ୍କୁ ନମସ୍କାର । ତାହାଙ୍କୁ ନମସ୍କାର । ତାହାଙ୍କୁ ବାରମ୍ବାର ନମସ୍କାର ॥ ୬୮—୭୦ ॥ ଯେଉଁ ଦେବୀ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ମାତାରୂପରେ ଅବସ୍ଥାନ କରିଛନ୍ତି; ତାହାଙ୍କୁ ନମସ୍କାର । ତାହାଙ୍କୁ ନମସ୍କାର । ତାହାଙ୍କୁ ବାରମ୍ବାର ନମସ୍କାର ॥ ୭୧—୭୩ ॥ ଯେଉଁ ଦେବୀ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଭ୍ରାନ୍ତିରୂପରେ ଅବସ୍ଥାନ କରିଛନ୍ତି; ତାହାଙ୍କୁ ନମସ୍କାର । ତାହାଙ୍କୁ ନମସ୍କାର । ତାହାଙ୍କୁ ବାରମ୍ବାର ନମସ୍କାର ॥ ୭୪—୭୬ ॥ ଯିଏ ଜୀବମାନଙ୍କର ଇନ୍ଦ୍ରିୟବର୍ଗଙ୍କ ଅଧିଷ୍ଠାତ୍ରୀ ଦେବୀ ଏବଂ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ସର୍ବଦା ବ୍ୟାପ୍ତ ହୋଇ

ଚିତିରୂପେଣ ଯା କୃତ୍ସ୍ନମେତଦ୍ ବ୍ୟାପ୍ୟ ସ୍ଥିତା ଜଗତ୍ ।
ନମସ୍ତସ୍ୟୈ ॥ ୭୮ ॥ ନମସ୍ତସ୍ୟୈ ॥ ୭୯ ॥ ନମସ୍ତସ୍ୟୈ ନମୋ ନମଃ ॥ ୮୦ ॥

ସ୍ତୁତା ସୁରୈଃ ପୂର୍ବମଭୀଷ୍ଟସଂଶ୍ରୟା-
ତ୍ତଥା ସୁରେନ୍ଦ୍ରେଣ ଦିନେଷୁ ସେବିତା ।
କରୋତୁ ସା ନଃ ଶୁଭହେତୁରୀଶ୍ୱରୀ
ଶୁଭାନି ଭଦ୍ରାଣ୍ୟଭିହନ୍ତୁ ଚାପଦଃ ॥ ୮୧ ॥
ଯା ସାମ୍ପ୍ରତଂ ଚୋଦ୍ଧତଦୈତ୍ୟତାପିତୈ-
ରସ୍ମାଭିରୀଶା ଚ ସୁରୈର୍ନମସ୍ୟତେ ।
ଯା ଚ ସ୍ମୃତା ତତ୍କ୍ଷଣମେବ ହନ୍ତି ନଃ
ସର୍ବାପଦୋ ଭକ୍ତିବିନମ୍ରମୂର୍ତ୍ତିଭିଃ ॥ ୮୨ ॥

*ଋଷିରୁବାଚ ॥ ୮୩ ॥*

ଏବଂ ସ୍ତବାଦିଯୁକ୍ତାନାଂ ଦେବାନାଂ ତତ୍ର ପାର୍ବତୀ ।
ସ୍ନାତୁମଭ୍ୟାଯଯୌ ତୋୟେ ଜାହ୍ନବ୍ୟା ନୃପନନ୍ଦନ ॥ ୮୪ ॥

---

ରହନ୍ତି; ସେହି ବ୍ୟାପ୍ତିଦେବୀଙ୍କୁ ବାରମ୍ବାର ନମସ୍କାର ॥ ୭୭ ॥ ଯେଉଁ ଦେବୀ ଚୈତନ୍ୟରୂପରେ ଏହି ସମଗ୍ର ବିଶ୍ୱକୁ ବ୍ୟାପ୍ତ କରି ଅବସ୍ଥାନ କରିଛନ୍ତି; ତାହାଙ୍କୁ ନମସ୍କାର । ତାହାଙ୍କୁ ନମସ୍କାର । ତାହାଙ୍କୁ ବାରମ୍ବାର ନମସ୍କାର ॥ ୭୮—୮୦ ॥ ପୂର୍ବକାଳରେ ନିଜ ଅଭୀଷ୍ଟର ପ୍ରାପ୍ତି ହେବାରୁ ଦେବତାମାନେ ଯାହାଙ୍କର ସ୍ତୁତି କରିଛନ୍ତି ତଥା ଦେବରାଜ ଇନ୍ଦ୍ର ବହୁତ ଦିନପର୍ଯ୍ୟନ୍ତ ଯାହାଙ୍କର ସେବା କରିଛନ୍ତି; ସେହି କଲ୍ୟାଣର ସାଧନଭୂତା ଈଶ୍ୱରୀ ଆମ୍ଭମାନଙ୍କର କଲ୍ୟାଣ ଓ ମଙ୍ଗଳ କରନ୍ତୁ ତଥା ସେ ସାରା ବିପଦକୁ ନାଶ କରନ୍ତୁ ॥ ୮୧ ॥ ଉଦ୍ଦଣ୍ଡ ଦୈତ୍ୟମାନଙ୍କଦ୍ୱାରା ଦୁଃଖିତ ହେଉଥିବା ଆମ୍ଭେ ସମସ୍ତ ଦେବତା ଯେଉଁ ପରମେଶ୍ୱରୀଙ୍କୁ ଏହି ସମୟରେ ନମସ୍କାର କରୁଛୁ ତଥା ବିନମ୍ର ପୁରୁଷମାନେ ଭକ୍ତିପୂର୍ବକ ସ୍ମରଣ କଲେ ଯିଏ ତତ୍କାଳ ହିଁ ସମସ୍ତ ବିପତ୍ତିକୁ ନାଶ କରି ଦିଅନ୍ତି; ସେହି ଜଗଦମ୍ବା ଆମ୍ଭର ସଙ୍କଟ ଦୂର କରନ୍ତୁ ॥ ୮୨ ॥

**ଋଷି କହିଲେ**—॥ ୮୩ ॥ ହେ ରାଜନ୍ ! ଯେତେବେଳେ ଦେବତାମାନେ ଏହିପରି ସ୍ତୁତି କରୁଥିଲେ; ସେହିସମୟରେ ପାର୍ବତୀ ଦେବୀ ଗଙ୍ଗାନଦୀରେ ସ୍ନାନ କରିବା ପାଇଁ ସେଠାକୁ ଆସିଲେ ॥ ୮୪ ॥

ସାବ୍ରବୀତ୍ତାନ୍ ସୁରାନ୍ ସୁଭ୍ରୂର୍ଭବଦ୍ଭିଃ ସ୍ତୂୟତେଽତ୍ର କା ।
ଶରୀରକୋଶତଶ୍ଚାସ୍ୟାଃ ସମୁଦ୍ଭୂତାବ୍ରବୀଚ୍ଛିବା ॥ ୮୫ ॥
ସ୍ତୋତ୍ରଂ ମମୈତତ୍ କ୍ରିୟତେ ଶୁମ୍ଭଦୈତ୍ୟନିରାକୃତୈଃ ।
ଦେବୈଃ ସମେତୈଃ[୧] ସମରେ ନିଶୁମ୍ଭେନ ପରାଜିତୈଃ ॥ ୮୬ ॥
ଶରୀରକୋଶା[୨]ଦ୍ୟତ୍ତସ୍ୟାଃ ପାର୍ବତ୍ୟା ନିଃସୃତାମ୍ବିକା ।
କୌଶି[୩]କୀତି ସମସ୍ତେଷୁ ତତୋ ଲୋକେଷୁ ଗୀୟତେ ॥ ୮୭ ॥
ତସ୍ୟାଂ ବିନିର୍ଗତାୟାଂ ତୁ କୃଷ୍ଣାଭୂତ୍ସାପି ପାର୍ବତୀ ।
କାଳିକେତି ସମାଖ୍ୟାତା ହିମାଚଳକୃତାଶ୍ରୟା ॥ ୮୮ ॥
ତତୋଽମ୍ବିକାଂ ପରଂ ରୂପଂ ବିଭ୍ରାଣାଂ ସୁମନୋହରମ୍ ।
ଦଦର୍ଶ ଚଣ୍ଡୋ ମୁଣ୍ଡଶ୍ଚ ଭୃତ୍ୟୌ ଶୁମ୍ଭନିଶୁମ୍ଭୟୋଃ ॥ ୮୯ ॥
ତାଭ୍ୟାଂ ଶୁମ୍ଭାୟ ଚାଖ୍ୟାତା ଅତୀବ ସୁମନୋହରା ।
କାପ୍ୟାସ୍ତେ ସ୍ତ୍ରୀ ମହାରାଜ ଭାସୟନ୍ତୀ ହିମାଚଳମ୍ ॥ ୯୦ ॥

ସେହି ସୁନ୍ଦର ଭ୍ରୂଯୁକ୍ତା ଭଗବତୀ ଦେବତାମାନଙ୍କୁ ପଚାରିଲେ—'ଆପଣମାନେ ଏଠାରେ କାହାକୁ ସ୍ତୁତି କରୁଛନ୍ତି ?' ସେତେବେଳେ ସେହି ପାର୍ବତୀଙ୍କ ଶରୀରକୋଷରୁ ପ୍ରକଟ ହୋଇଥିବା ଶିବାଦେବୀ କହିଲେ—॥ ୮୫ ॥ 'ଶୁମ୍ଭ ଦୈତ୍ୟଦ୍ୱାରା ତିରସ୍କୃତ ଓ ଯୁଦ୍ଧରେ ନିଶୁମ୍ଭଦ୍ୱାରା ପରାଜିତ ହୋଇ ଏଠାରେ ଏକତ୍ରିତ ହୋଇଥିବା ଏହି ଦେବଗଣ ଏଠାରେ ମୋର ସ୍ତୁତି କରୁଛନ୍ତି' ॥ ୮୬ ॥ ପାର୍ବତୀଙ୍କ ଶରୀରକୋଷରୁ ଅମ୍ବିକାଙ୍କ ପ୍ରାଦୁର୍ଭାବ ହୋଇଥିଲା; ତେଣୁ ତାଙ୍କୁ ସମସ୍ତ ଲୋକରେ 'କୌଶିକୀ' (କୌଷିକୀ) ବୋଲି କୁହାଯାଏ ॥ ୮୭ ॥ କୌଶିକୀ ପ୍ରକଟ ହେବା ପରେ ପାର୍ବତୀ-ଦେବୀଙ୍କ ଶରୀର କୃଷ୍ଣରଙ୍ଗ ହୋଇଗଲା । ତେଣୁ ସେ ହିମାଳୟରେ ବାସ କରୁଥିବା କାଳିକାଦେବୀଙ୍କ ନାମରେ ବିଖ୍ୟାତ ହୋଇଛନ୍ତି ॥ ୮୮ ॥ ତାପରେ ଶୁମ୍ଭ-ନିଶୁମ୍ଭଙ୍କ ଭୃତ୍ୟ ଚଣ୍ଡ-ମୁଣ୍ଡ ସେଠାରେ ଆସି ପହଞ୍ଚିଲେ ଏବଂ ସେମାନେ ପରମ ମନୋହର ରୂପ ଧାରଣ କରିଥିବା ଅମ୍ବିକାଦେବୀଙ୍କୁ ଦେଖିଲେ ॥ ୮୯ ॥ ପୁନଶ୍ଚ ସେମାନେ ଶୁମ୍ଭ ନିକଟକୁ ଯାଇ କହିଲେ—'ହେ ମହାରାଜ ! ଗୋଟିଏ ଅତ୍ୟନ୍ତ ମନୋହାରିଣୀ ନାରୀ ଅଛି । ସେ ଦିବ୍ୟ କାନ୍ତିଦ୍ୱାରା ସାରା ହିମାଳୟକୁ ପ୍ରକାଶିତ କରୁଛି ॥ ୯୦ ॥

୧. ପା.—ସମସ୍ତୈଃ । ୨. ପା.—କୋଷା । ୩. ପା.—କୌଷିକୀ ।

ନୈବ ତାଦୃକ୍ କ୍ୱଚିଦ୍ରୂପଂ ଦୃଷ୍ଟଂ କେନଚିଦୁତ୍ତମମ୍ ।
ଜ୍ଞାୟତାଂ କାପ୍ୟସୌ ଦେବୀ ଗୃହ୍ୟତାଂ ଚାସୁରେଶ୍ୱର ॥ ୯୧ ॥
ସ୍ତ୍ରୀରତ୍ନମତିଚାର୍ୱଙ୍ଗୀ ଦ୍ୟୋତୟନ୍ତୀ ଦିଶସ୍ତ୍ୱିଷା ।
ସା ତୁ ତିଷ୍ଠତି ଦୈତ୍ୟେନ୍ଦ୍ର ତାଂ ଭବାନ୍ ଦ୍ରଷ୍ଟୁମର୍ହତି ॥ ୯୨ ॥
ଯାନି ରତ୍ନାନି ମଣୟୋ ଗଜାଶ୍ୱାଦୀନି ବୈ ପ୍ରଭୋ ।
ତ୍ରୈଲୋକ୍ୟେ ତୁ ସମସ୍ତାନି ସାମ୍ପ୍ରତଂ ଭାନ୍ତି ତେ ଗୃହେ ॥ ୯୩ ॥
ଐରାବତଃ ସମାନୀତୋ ଗଜରତ୍ନଂ ପୁରନ୍ଦରାତ୍ ।
ପାରିଜାତତରୁଶ୍ଚାୟଂ ତଥୈବୋଚ୍ଚୈଃଶ୍ରବା ହୟଃ ॥ ୯୪ ॥
ବିମାନଂ ହଂସସଂଯୁକ୍ତମେତତ୍ତିଷ୍ଠତି ତେଽଙ୍ଗଣେ ।
ରତ୍ନଭୂତମିହାନୀତଂ ଯଦାସୀଦ୍ବେଧସୋଽଦ୍ଭୁତମ୍ ॥ ୯୫ ॥
ନିଧିରେଷ ମହାପଦ୍ମଃ ସମାନୀତୋ ଧନେଶ୍ୱରାତ୍ ।
କିଞ୍ଜଲ୍କିନୀଂ ଦଦୌ ଚାବ୍ଧିର୍ମାଲାମମ୍ଳାନପଙ୍କଜାମ୍ ॥ ୯୬ ॥
ଛତ୍ରଂ ତେ ବାରୁଣଂ ଗେହେ କାଞ୍ଚନସ୍ରାବି ତିଷ୍ଠତି ।

ସେପରି ଉତ୍ତମ ରୂପ କେହି କେଉଁଠି ବି ଦେଖି ନ ଥିବେ । ହେ ଅସୁରେଶ୍ୱର ! ଖବର ନିଅନ୍ତୁ ଯେ ସେ ଦେବୀ କିଏ ଏବଂ ତାହାକୁ ଗ୍ରହଣ କରନ୍ତୁ ॥ ୯୧ ॥ ସ୍ତ୍ରୀମାନଙ୍କ ମଧ୍ୟରେ ସେ ରତ୍ନ ଅଟେ । ତାହାର ପ୍ରତ୍ୟେକ ଅଙ୍ଗ ଅତି ସୁନ୍ଦର ତଥା ସେ ନିଜ ଶ୍ରୀଅଙ୍ଗର ପ୍ରଭାଦ୍ୱାରା ସମସ୍ତ ଦିଗକୁ ପ୍ରକାଶିତ କରୁଛି । ହେ ଦୈତ୍ୟରାଜ ! ବର୍ତ୍ତମାନ ସେ ଏଠାରେ ଅବସ୍ଥାନ କରୁଛି; ଆପଣ ତାହାକୁ ଦେଖିପାରିବେ ॥ ୯୨ ॥ ହେ ପ୍ରଭୋ ! ତ୍ରିଭୁବନରେ ମଣି, ହସ୍ତୀ ଓ ଅଶ୍ୱ ଆଦି ଯେତେ ସବୁ ରତ୍ନ ରହିଛି; ସେ ସବୁ ଏହି ସମୟରେ ଆପଣଙ୍କ ଗୃହରେ ଶୋଭା ପାଉଛି ॥ ୯୩ ॥ ହସ୍ତୀମାନଙ୍କ ମଧ୍ୟରେ ଐରାବତ, ପାରିଜାତବୃକ୍ଷ ଏବଂ ଉଚ୍ଚୈଃଶ୍ରବା ଅଶ୍ୱ—ଏ ସବୁ ଆପଣ ଇନ୍ଦ୍ରଠାରୁ ନେଇ ଆସିଛନ୍ତି ॥ ୯୪ ॥ ହଂସମାନଙ୍କଦ୍ୱାରା ସଂଯୋଜିତ ଏହି ବିମାନ ମଧ୍ୟ ଆପଣଙ୍କ ଅଗଣାରେ ଶୋଭା ପାଉଛି । ଏହି ରତ୍ନଭୂତ ଅଦ୍ଭୁତ ବିମାନ, ଯାହାକି ପ୍ରଥମେ ବ୍ରହ୍ମାଙ୍କ ପାଖରେ ଥିଲା; ବର୍ତ୍ତମାନ ଆପଣଙ୍କ ପାଖକୁ ଅଣାଯାଇଛି ॥ ୯୫ ॥ ଏହି ମହାପଦ୍ମ ନାମକ ନିଧି ଆପଣ କୁବେରଠାରୁ ଛଡ଼ାଇ ଆଣିଛନ୍ତି । ସମୁଦ୍ର ମଧ୍ୟ ଆପଣଙ୍କୁ କିଞ୍ଜଲ୍କିନୀ ନାମକ ମାଳା ଉପହାର ଦେଇଛନ୍ତି; ଯାହା କେସରଦ୍ୱାରା ସୁଶୋଭିତ ହେଉଛି ଏବଂ ଯାହାର ପଦ୍ମଗୁଡ଼ିକ କେବେହେଲେ ମଳିନ ପଡ଼େ ନାହିଁ ॥ ୯୬ ॥ ସୁବର୍ଣ୍ଣ ବର୍ଷା କରୁଥିବା ବରୁଣର

ତଥାୟଂ ସ୍ୟନ୍ଦନବରୋ ଯଃ ପୁରାଽଽସୀତ୍ପ୍ରଜାପତେଃ ॥ ୯୭ ॥
ମୃତ୍ୟୋରୁତ୍କ୍ରାନ୍ତିଦା ନାମ ଶକ୍ତିରୀଶ ତ୍ୱୟା ହୃତା ।
ପାଶଃ ସଲିଲରାଜସ୍ୟ ଭ୍ରାତୁସ୍ତବ ପରିଗ୍ରହେ ॥ ୯୮ ॥
ନିଶୁମ୍ଭସ୍ୟାବ୍ଧିଜାତାଶ୍ଚ ସମସ୍ତା ରତ୍ନଜାତୟଃ ।
ବହ୍ନିରପି[୧] ଦଦୌ ତୁଭ୍ୟମଗ୍ନିଶୌଚେ ଚ ବାସସୀ ॥ ୯୯ ॥
ଏବଂ ଦୈତ୍ୟେନ୍ଦ୍ର ରତ୍ନାନି ସମସ୍ତାନ୍ୟାହୃତାନି ତେ ।
ସ୍ତ୍ରୀରତ୍ନମେଷା କଲ୍ୟାଣୀ ତ୍ୱୟା କସ୍ମାନ୍ନ ଗୃହ୍ୟତେ ॥ ୧୦୦ ॥

*ଋଷିରୁବାଚ ॥ ୧୦୧ ॥*

ନିଶମ୍ୟେତି ବଚଃ ଶୁମ୍ଭଃ ସ ତଦା ଚଣ୍ଡମୁଣ୍ଡୟୋଃ ।
ପ୍ରେଷୟାମାସ ସୁଗ୍ରୀବଂ ଦୂତଂ ଦେବ୍ୟା ମହାସୁରମ୍[୨] ॥ ୧୦୨ ॥
ଇତି ଚେତି ଚ ବକ୍ତବ୍ୟା ସା ଗତ୍ୱା ବଚନାନ୍ମମ ।
ଯଥା ଚାଭ୍ୟେତି ସମ୍ପ୍ରୀତ୍ୟା ତଥା କାର୍ଯ୍ୟଂ ତ୍ୱୟା ଲଘୁ ॥ ୧୦୩ ॥

---

ଛତ୍ର ମଧ୍ୟ ଆପଣଙ୍କ ଗୃହରେ ଶୋଭା ପାଉଛି । ଏହି ଶ୍ରେଷ୍ଠ ରଥ, ଯାହାକି ପ୍ରଥମେ ପ୍ରଜାପତିଙ୍କ ଅଧିକାରରେ ଥିଲା; ବର୍ତ୍ତମାନ ଆପଣଙ୍କ ପାଖରେ ରହିଛି ॥ ୯୭ ॥ ହେ ଦୈତ୍ୟେଶ୍ୱର ! ମୃତ୍ୟୁର ଉତ୍କ୍ରାନ୍ତିଦା ନାମକ ଶକ୍ତି ମଧ୍ୟ ଆପଣ ଛଡ଼ାଇ ନେଇଛନ୍ତି । ବରୁଣଙ୍କ ପାଶ ଓ ସମୁଦ୍ରରେ ରହିଥିବା ସମସ୍ତ ରତ୍ନ ଆପଣଙ୍କ ଭାଇ ନିଶୁମ୍ଭଙ୍କ ଅଧିକାରରେ ରହିଛି । ଅଗ୍ନି ମଧ୍ୟ ସ୍ୱତଃ ଶୁଦ୍ଧ କରିଥିବା ଦୁଇଟି ବସ୍ତ୍ର ଆପଣଙ୍କ ସେବା ଉଦ୍ଦେଶ୍ୟରେ ଅର୍ପଣ କରିଛନ୍ତି ॥ ୯୮-୯୯ ॥ ହେ ଦୈତ୍ୟରାଜ ! ଏହିପରି ସମସ୍ତ ରତ୍ନ ଆପଣ ଏକତ୍ର କରିଛନ୍ତି । ପୁନଶ୍ଚ ଯିଏ ଏହି ସ୍ତ୍ରୀମାନଙ୍କ ମଧ୍ୟରେ ରତ୍ନରୂପ କଲ୍ୟାଣମୟୀ ଦେବୀ ଅଟନ୍ତି; ତାହାଙ୍କୁ ଆପଣ ନିଜର ଅଧୀନକୁ କାହିଁକି ଆଣୁ ନାହାଁନ୍ତି ॥ ୧୦୦ ॥

**ଋଷି କହନ୍ତି**—॥ ୧୦୧ ॥ ଚଣ୍ଡ-ମୁଣ୍ଡର ଏହି କଥା ଶୁଣି ଶୁମ୍ଭ ମହାଦୈତ୍ୟ ସୁଗ୍ରୀବକୁ ଦୂତରୂପେ ଦେବୀଙ୍କ ପାଖକୁ ପଠାଇଲା ଏବଂ କହିଲା—'ତୁମେ ମୋ ଆଜ୍ଞାରେ ତାଙ୍କ ସମ୍ମୁଖରେ ଏହି ସବୁ କଥା କହିବ ଏବଂ ଏପରି ଉପାୟ କରିବ; ଯଦ୍ଦ୍ୱାରା ପ୍ରସନ୍ନ ହୋଇ ସେ ଶୀଘ୍ର ଏଠାକୁ ଆସିବ' ॥ ୧୦୨-୧୦୩ ॥

---

୧. ପା.—ଶ୍ଚାପି. । ୨. ପା.—ଏହାପରେ କେଉଁଠି କେଉଁଠି 'ଶୁମ୍ଭ ଉବାଚ' ଏତିକି ଅଧିକ ପାଠ ଅଛି ।

ସ ତତ୍ର ଗତ୍ୱା ଯତ୍ରାସ୍ତେ ଶୈଳୋଦ୍ଦେଶେଽତିଶୋଭନେ ।
ସାଂ[1] ଦେବୀ ତାଂ ତତଃ ପ୍ରାହ ଶ୍ଳକ୍ଷ୍ଣଂ ମଧୁରୟା ଗିରା ॥ ୧୦୪ ॥

*ଦୂତ ଉବାଚ ॥ ୧୦୫ ॥*

ଦେବି ଦୈତ୍ୟେଶ୍ୱରଃ ଶୁମ୍ଭସ୍ତ୍ରୈଲୋକ୍ୟେ ପରମେଶ୍ୱରଃ ।
ଦୂତୋଽହଂ ପ୍ରେଷିତସ୍ତେନ ତ୍ୱତ୍ସକାଶମିହାଗତଃ ॥ ୧୦୬ ॥
ଅବ୍ୟାହତାଜ୍ଞଃ ସର୍ବାସୁ ଯଃ ସଦା ଦେବଯୋନିଷୁ ।
ନିର୍ଜିତାଖିଳଦୈତ୍ୟାରିଃ ସ ଯଦାହ ଶୃଣୁଷ୍ୱ ତତ୍ ॥ ୧୦୭ ॥
ମମ ତ୍ରୈଲୋକ୍ୟମଖିଳଂ ମମ ଦେବା ବଶାନୁଗାଃ ।
ଯଜ୍ଞଭାଗାନହଂ ସର୍ବାନୁପାଶ୍ନାମି ପୃଥକ୍ ପୃଥକ୍ ॥ ୧୦୮ ॥
ତ୍ରୈଲୋକ୍ୟେ ବରରତ୍ନାନି ମମ ବଶ୍ୟାନ୍ୟଶେଷତଃ ।
ତଥୈବ ଗଜରତ୍ନଂ[2] ଚ ହୃତ୍ୱା[3] ଦେବେନ୍ଦ୍ରବାହନମ୍ ॥ ୧୦୯ ॥
କ୍ଷୀରୋଦମଥନୋଦ୍ଭୂତମଶ୍ୱରତ୍ନଂ ମମାମରୈଃ ।
ଉଚ୍ଚୈଃଶ୍ରବସସଂଜ୍ଞଂ ତତ୍ପ୍ରଣିପତ୍ୟ ସମର୍ପିତମ୍ ॥ ୧୧୦ ॥

ସେ ଦୂତ ପର୍ବତର ଅତ୍ୟନ୍ତ ରମଣୀୟ ପ୍ରଦେଶରେ ଯେଉଁଠାରେ ଦେବୀ ଉପସ୍ଥିତ ଥିଲେ; ସେଠାକୁ ଯାଇ ମଧୁର ବାଣୀରେ କୋମଳ ବଚନ କହିଲା ॥ ୧୦୪ ॥

**ଦୂତ କହିଲା**—॥ ୧୦୫ ॥ ହେ ଦେବି ! ଦୈତ୍ୟରାଜ ଶୁମ୍ଭ ବର୍ତ୍ତମାନ ତ୍ରିଭୁବନର ପରମେଶ୍ୱର ଅଟନ୍ତି । ମୁଁ ତାଙ୍କଦ୍ୱାରା ପ୍ରେରିତ ଦୂତ ଅଟେ ଏବଂ ଏଠାରେ ତୁମ୍ଭ ପାଖରେ ଉପସ୍ଥିତ ହୋଇଛି ॥ ୧୦୬ ॥ ତାଙ୍କ ଆଜ୍ଞାକୁ ସର୍ବଦା ସବୁ ଦେବତା ଏକସ୍ୱରରେ ଅଙ୍ଗୀକାର କରନ୍ତି । କେହି ତାହାକୁ ଉଲ୍ଲଙ୍ଘନ କରି ପାରିବେ ନାହିଁ । ସେ ସମସ୍ତ ଦେବତାଙ୍କୁ ପରାସ୍ତ କରିଛନ୍ତି । ସେ ତୁମ୍ଭ ନିମନ୍ତେ ଯେଉଁ ସନ୍ଦେଶ ପଠାଇଛନ୍ତି; ତାହା ଶୁଣ ॥ ୧୦୭ ॥ 'ସମଗ୍ର ତ୍ରିଭୁବନ ମୋ ଅଧିକାରରେ ରହିଛି । ଦେବଗଣ ମଧ୍ୟ ମୋ ଆଜ୍ଞାର ଅଧୀନ ଅଟନ୍ତି । ସମଗ୍ର ଯଜ୍ଞଭାଗକୁ ମୁଁ ପୃଥକ୍-ପୃଥକ୍ ଭାବରେ ଉପଭୋଗ କରୁଛି ॥ ୧୦୮ ॥ ତ୍ରିଭୁବନରେ ଯେତେକ ଶ୍ରେଷ୍ଠ ରତ୍ନ ରହିଛି; ସେସବୁ ମୋ ଅଧିକାରରେ ରହିଛି । ଦେବରାଜ ଇନ୍ଦ୍ରଙ୍କ ବାହନ ଐରାବତ; ଯିଏ ହସ୍ତୀମଧ୍ୟରେ ରତ୍ନ ସଦୃଶ ଅଟେ; ତାହାକୁ ମୁଁ ଛଡ଼ାଇ ନେଇଛି ॥ ୧୦୯ ॥ କ୍ଷୀରସାଗରର ମନ୍ଥନ କରିବାଦ୍ୱାରା ଯେଉଁ ଉଚ୍ଚୈଃଶ୍ରବା ନାମକ ଅଶ୍ୱରତ୍ନ ପ୍ରକଟ ହୋଇଥିଲା; ତାହା ଦେବତାମାନେ ମୋ ପାଦତଳେ ପଡ଼ି ସମର୍ପଣ

୧. ପା.—ତାଂ ଚ ଦେବୀଂ ତତଃ । ୨. ପା.—ଗଜରତ୍ନାନି । ୩. ପା.—ହୃତଂ ।

ଯାନି ଗ୍ରନ୍ୟାନି ଦେବେଷୁ ଗନ୍ଧର୍ବେଷୂରଗେଷୁ ଚ ।
ରତ୍ନଭୂତାନି ଭୂତାନି ତାନି ମଯ୍ୟେବ ଶୋଭନେ ॥ ୧୧୧ ॥
ସ୍ତ୍ରୀରତ୍ନଭୂତାଂ ତ୍ୱାଂ ଦେବି ଲୋକେ ମନ୍ୟାମହେ ବୟମ୍ ।
ସା ତ୍ୱମସ୍ମାନୁପାଗଚ୍ଛ ଯତୋ ରତ୍ନଭୁଜୋ ବୟମ୍ ॥ ୧୧୨ ॥
ମାଂ ବା ମମାନୁଜଂ ବାପି ନିଶୁମ୍ଭମୁରୁବିକ୍ରମମ୍ ।
ଭଜ ତ୍ୱଂ ଚଞ୍ଚଳାପାଙ୍ଗି ରତ୍ନଭୂତାସି ବୈ ଯତଃ ॥ ୧୧୩ ॥
ପରମୈଶ୍ୱର୍ଯ୍ୟମତୁଳଂ ପ୍ରାପ୍ସ୍ୟସେ ମତ୍ପରିଗ୍ରହାତ୍ ।
ଏତଦ୍ ବୁଦ୍ଧ୍ୟା ସମାଲୋଚ୍ୟ ମତ୍ପରିଗ୍ରହତାଂ ବ୍ରଜ ॥ ୧୧୪ ॥

*ଋଷିରୁବାଚ ॥ ୧୧୫ ॥*

ଇତ୍ୟୁକ୍ତା ସା ତଦା ଦେବୀ ଗମ୍ଭୀରାନ୍ତଃସ୍ମିତା ଜଗୌ ।
ଦୁର୍ଗା ଭଗବତୀ ଭଦ୍ରା ଯୟେଦଂ ଧାର୍ଯ୍ୟତେ ଜଗତ୍ ॥ ୧୧୬ ॥

*ଦେବ୍ୟୁବାଚ ॥ ୧୧୭ ॥*

ସତ୍ୟମୁକ୍ତଂ ତ୍ୱୟା ନାତ୍ର ମିଥ୍ୟା କିଂଚିତ୍ତ୍ୱୟୋଦିତମ୍ ।
ତ୍ରୈଲୋକ୍ୟାଧିପତିଃ ଶୁମ୍ଭୋ ନିଶୁମ୍ଭଶ୍ଚାପି ତାଦୃଶଃ ॥ ୧୧୮ ॥

---

କରିଛନ୍ତି ॥ ୧୧୦ ॥ ହେ ସୁନ୍ଦରୀ ! ତାହା ବ୍ୟତୀତ ଆଉ ଯେତେକ ରତ୍ନଭୂତ ପଦାର୍ଥ ଦେବଗଣ, ଗନ୍ଧର୍ବଗଣ ଓ ନାଗଗଣଙ୍କ ନିକଟରେ ରହିଥିଲା; ସେସବୁ ବର୍ତ୍ତମାନ ମୋ ପାଖରେ ରହିଛି ॥ ୧୧୧ ॥ ହେ ଦେବି ! ଆମେ ତୁମ୍ଭଙ୍କୁ ସଂସାରର ସ୍ତ୍ରୀମାନଙ୍କ ମଧ୍ୟରେ ରତ୍ନରୂପେ ସ୍ୱୀକାର କରୁଛୁ । ଏଣୁ ତୁମେ ମୋ ପାଖକୁ ଆସ; କାରଣ ରତ୍ନଗୁଡ଼ିକୁ ଉପଭୋଗ କରିବା ନିମନ୍ତେ କେବଳ ମୁଁ ଅଛି ॥ ୧୧୨ ॥ ଚଞ୍ଚଳ କଟାକ୍ଷଯୁକ୍ତା ହେ ସୁନ୍ଦରୀ ! ତୁମେ ମୋର ବା ମୋ ଭାଇ ମହାପରାକ୍ରମୀ ନିଶୁମ୍ଭର ସେବାରେ ନିଯୁକ୍ତ ହୁଅ; କାରଣ ତୁମେ ରତ୍ନସ୍ୱରୂପା ଅଟ ॥ ୧୧୩ ॥ ମୋତେ ବରଣ କଲେ ତୁମେ ଅତୁଳନୀୟ ମହାନ୍ ଐଶ୍ୱର୍ଯ୍ୟ ପାଇବ । ନିଜ ବୁଦ୍ଧିରେ ଏହି ବିଚାର କରି ତୁମେ ମୋର ପତ୍ନୀ ହୋଇଯାଅ' ॥ ୧୧୪ ॥

**ଋଷି କହିଲେ**—॥ ୧୧୫ ॥ ଦୂତଙ୍କ ଏହି କଥନ ପରେ କଲ୍ୟାଣମୟୀ ଭଗବତୀ ଦୁର୍ଗାଦେବୀ, ଯେ ଏହି ସଂସାରକୁ ଧାରଣ କରିଛନ୍ତି; ମନେ ମନେ ଗମ୍ଭୀର ଭାବରେ ସ୍ମିତହାସ୍ୟ କରି କହିଲେ—॥ ୧୧୬ ॥

**ଦେବୀ କହିଲେ**—॥ ୧୧୭ ॥ ହେ ଦୂତ ! ତୁମେ ସତ୍ୟ କହିଲ । ଏଥିରେ

କିଂ ତ୍ୱତ୍ର ଯତ୍ପ୍ରତିଜ୍ଞାତଂ ମିଥ୍ୟା ତତ୍କ୍ରିୟତେ କଥମ୍ ।
ଶ୍ରୂୟତାମଳ୍ପବୁଦ୍ଧିତ୍ୱାତ୍ ପ୍ରତିଜ୍ଞା ଯା କୃତା ପୁରା ॥ ୧୧୯ ॥
ଯୋ ମାଂ ଜୟତି ସଂଗ୍ରାମେ ଯୋ ମେ ଦର୍ପଂ ବ୍ୟପୋହତି ।
ଯୋ ମେ ପ୍ରତିବଳୋ ଲୋକେ ସ ମେ ଭର୍ତ୍ତା ଭବିଷ୍ୟତି ॥ ୧୨୦ ॥
ତଦାଗଚ୍ଛତୁ ଶୁମ୍ଭୋଽତ୍ର ନିଶୁମ୍ଭୋ ବା ମହାସୁରଃ ।
ମାଂ ଜିତ୍ୱା କିଂ ଚିରେଣାତ୍ର ପାଣିଂ ଗୃହ୍ଣାତୁ ମେ ଲଘୁ ॥ ୧୨୧ ॥

*ଦୂତ ଉବାଚ ॥ ୧୨୨ ॥*

ଅବଲିପ୍ତାସି ମୈବଂ ତ୍ୱଂ ଦେବି ବ୍ରୂହି ମମାଗ୍ରତଃ ।
ତ୍ରୈଲୋକ୍ୟେ କଃ ପୁମାଂସ୍ତିଷ୍ଠେଦଗ୍ରେ ଶୁମ୍ଭନିଶୁମ୍ଭୟୋଃ ॥ ୧୨୩ ॥
ଅନ୍ୟେଷାମପି ଦୈତ୍ୟାନାଂ ସର୍ବେ ଦେବା ନ ବୈ ଯୁଧି ।
ତିଷ୍ଠନ୍ତି ସମ୍ମୁଖେ ଦେବି କିଂ ପୁନଃ ସ୍ତ୍ରୀ ତ୍ୱମେକିକା ॥ ୧୨୪ ॥
ଇନ୍ଦ୍ରାଦ୍ୟାଃ ସକଳା ଦେବାସ୍ତସ୍ଥୁର୍ଯେଷାଂ ନ ସଂଯୁଗେ ।

---

ଟିକିଏ ହେଲେ ମିଥ୍ୟା ନାହିଁ। ଶୁମ୍ଭ ତ୍ରିଭୁବନର ସ୍ୱାମୀ ଅଟେ ଓ ନିଶୁମ୍ଭ ମଧ୍ୟ ତାହାରି ପରି ପରାକ୍ରମୀ ଅଟେ ॥ ୧୧୮ ॥ କିନ୍ତୁ ଏ ବିଷୟରେ ମୁଁ ଯେଉଁ ପ୍ରତିଜ୍ଞା କରିଛି; ତାହାକୁ ମିଥ୍ୟା କିପରି କରିବି ? ମୁଁ ନିଜର ଅଳ୍ପବୁଦ୍ଧି ଯୋଗୁଁ ପ୍ରଥମରୁ ଯେଉଁ ପ୍ରତିଜ୍ଞା କରିଛି; ତାହା ଶୁଣ—॥ ୧୧୯ ॥ 'ଯିଏ ମୋତେ ସଂଗ୍ରାମରେ ପରାସ୍ତ କରିବ; ଯିଏ ମୋର ଅଭିମାନକୁ ଚୂର୍ଣ୍ଣ କରିବ ଓ ସଂସାରରେ ଯିଏ ମୋ ସମାନ ବଳବାନ୍ ହେବ; ସେ ହିଁ ମୋର ସ୍ୱାମୀ ହେବ' ॥ ୧୨୦ ॥ ତେଣୁ ଶୁମ୍ଭ ଅଥବା ମହାଦୈତ୍ୟ ନିଶୁମ୍ଭ ସ୍ୱୟଂ ହିଁ ଏଠାକୁ ପଦାର୍ପଣ କରନ୍ତୁ ଏବଂ ମୋତେ ଜୟ କରି ଶୀଘ୍ର ମୋର ପାଣିଗ୍ରହଣ କରନ୍ତୁ। ଏଥିରେ ବିଳମ୍ବର କ'ଣ ଆବଶ୍ୟକତା ଅଛି ? ॥ ୧୨୧ ॥

**ଦୂତ କହିଲା**—॥ ୧୨୨ ॥ ହେ ଦେବି ! ତୁମେ ଗର୍ବରେ ପରିପୂର୍ଣ୍ଣ ଅଟ। ମୋ ସମ୍ମୁଖରେ ଏତାଦୃଶ କଥାବାର୍ତ୍ତା କର ନାହିଁ; କାରଣ ଶୁମ୍ଭ-ନିଶୁମ୍ଭ ପାଖରେ ଦଣ୍ଡାୟମାନ ହେବାକୁ ସଂସାରରେ କୌଣସି ବୀର ନାହାଁନ୍ତି ॥ ୧୨୩ ॥ ହେ ଦେବି ! ଅନ୍ୟ ଦୈତ୍ୟମାନଙ୍କ ସମ୍ମୁଖରେ ମଧ୍ୟ ସବୁ ଦେବତା ଏକତ୍ର ହୋଇ ଯୁଦ୍ଧରେ ଠିଆ ହେବାକୁ ସାହସ କରନ୍ତି ନାହିଁ। କିନ୍ତୁ ତୁମେ ଜଣେ ନାରୀ ହୋଇ କିପରି ଠିଆ ହେବାକୁ ସାହସ କରୁଛ? ॥ ୧୨୪ ॥ ଯେଉଁ ଶୁମ୍ଭ ଆଦି ଦୈତ୍ୟଙ୍କ

**ଶୁମ୍ଭାଦୀନାଂ କଥଂ ତେଷାଂ ସ୍ତ୍ରୀ ପ୍ରୟାସ୍ୟସି ସମ୍ମୁଖମ୍ ॥ ୧୨୫ ॥**
**ସା ତ୍ୱଂ ଗଚ୍ଛ ମୟୈବୋକ୍ତା ପାର୍ଶ୍ୱଂ ଶୁମ୍ଭନିଶୁମ୍ଭୟୋଃ ।**
**କେଶାକର୍ଷଣନିର୍ଧୂତଗୌରବା ମା ଗମିଷ୍ୟସି ॥୧୨୬ ॥**

*ଦେବ୍ୟୁବାଚ ॥ ୧୨୭ ॥*

**ଏବମେତଦ୍ ବଲୀ ଶୁମ୍ଭୋ ନିଶୁମ୍ଭଶ୍ଚାତିବୀର୍ଯ୍ୟବାନ୍ ।**
**କିଂ କରୋମି ପ୍ରତିଜ୍ଞା ମେ ଯଦନାଲୋଚିତା ପୁରା ॥ ୧୨୮ ॥**
**ସ ତ୍ୱଂ ଗଚ୍ଛ ମୟୋକ୍ତଂ ତେ ଯଦେତତ୍ସର୍ବମାଦୃତଃ ।**
**ତଦାଚକ୍ଷ୍ୱାସୁରେନ୍ଦ୍ରାୟ ସ ଚ ଯୁକ୍ତଂ କରୋତୁ ତତ୍[୧] ॥ ଓଁ ॥ ୧୨୯ ॥**

*ଇତି ଶ୍ରୀମାର୍କଣ୍ଡେୟପୁରାଣେ ସାବର୍ଣ୍ଣିକେ ମନ୍ୱନ୍ତରେ ଦେବୀମାହାତ୍ମ୍ୟେ*
*ଦେବ୍ୟା ଦୂତସଂବାଦୋ ନାମ ପଞ୍ଚମୋଽଧ୍ୟାୟଃ ॥ ୫ ॥*
*ଉବାଚ ୯, ତ୍ରିପାନ୍ମନ୍ତ୍ରାଃ ୬୬, ଶ୍ଳୋକାଃ ୫୪, ଏବମ୍ ୧୨୯,*
*ଏବମାଦିତଃ ୩୮୮ ॥*



ଆଗରେ ଇନ୍ଦ୍ର ଆଦି ସମସ୍ତ ଦେବତା ଯୁଦ୍ଧରେ ଠିଆ ହୋଇ ପାରି ନାହାଁନ୍ତି; ତାଙ୍କ ଆଗରେ ତୁମେ ଜଣେ ନାରୀ ହୋଇ କିପରି ଠିଆ ହେବ ॥ ୧୨୫ ॥ ତେଣୁ ତୁମେ ମୋ କଥା ଅନୁସାରେ ଶୁମ୍ଭ-ନିଶୁମ୍ଭଙ୍କ ପାଖକୁ ଚାଲ । ଏହା କରିବାଦ୍ୱାରା ତୁମ୍ଭର ଗୌରବ ରକ୍ଷା ହେବ । ଅନ୍ୟଥା ଯେତେବେଳେ ସେମାନେ କେଶ ଧରି ଘୋଷାଡ଼ିବେ; ସେତେବେଳେ ତୁମକୁ ନିଜର ପ୍ରତିଷ୍ଠା ହରାଇବାକୁ ପଡ଼ିବ ॥ ୧୨୬ ॥

**ଦେବୀ କହିଲେ**—॥ ୧୨୭ ॥ ତୁମେ ଠିକ୍ କଥା କହିଛ । ଶୁମ୍ଭ ବଳବାନ୍ ଏବଂ ନିଶୁମ୍ଭ ମଧ୍ୟ ବଡ଼ ପରାକ୍ରମୀ; କିନ୍ତୁ କ'ଣ କରିବି ? ମୁଁ ତ ପ୍ରଥମେ କିଛି ବିଚାର ନ କରି ପ୍ରତିଜ୍ଞା କରିସାରିଛି ॥ ୧୨୮ ॥ ଅତଃ ବର୍ତ୍ତମାନ ତୁମେ ଯାଅ । ମୁଁ ତୁମ୍ଭଙ୍କୁ ଯାହା କିଛି କହିଛି; ସେସବୁ ଦୈତ୍ୟରାଜଙ୍କୁ ଆଦରପୂର୍ବକ କହିବ । ତାପରେ ସେ ଯାହା ଉଚିତ ମନେ କରିବେ; ତାହା କରିବେ ॥ ୧୨୯ ॥

*ଏହିପରି ଶ୍ରୀମାର୍କଣ୍ଡେୟପୁରାଣରେ ସାବର୍ଣ୍ଣିକ ମନ୍ୱନ୍ତର କଥାନ୍ତର୍ଗତ*
*ଦେବୀମାହାତ୍ମ୍ୟରେ 'ଦେବୀ-ଦୂତ-ସଂବାଦ' ନାମକ*
*ପଞ୍ଚମ ଅଧ୍ୟାୟ ସମାପ୍ତ ହେଲା ॥ ୫ ॥*



୧. ପା.—ଯତ୍ ।

# ଷଷ୍ଠୋଽଧ୍ୟାୟଃ

## [ଧୂମ୍ରଲୋଚନ ବଧ]

### ଧ୍ୟାନମ୍

**ଓଁ ନାଗାଧୀଶ୍ୱରବିଷ୍ଟରାଂ ଫଣିଫଣୋତ୍ତଂସୋରୁରତ୍ନାବଲୀ-**
**ଭାସ୍ୱଦ୍ଦେହଲତାଂ ଦିବାକରନିଭାଂ ନେତ୍ରତ୍ରୟୋଦ୍ଭାସିତାମ୍ ।**
**ମାଲାକୁମ୍ଭକପାଲନୀରଜକରାଂ ଚନ୍ଦ୍ରାର୍ଧଚୂଡ଼ାଂ ପରାଂ**
**ସର୍ବଜ୍ଞେଶ୍ୱରଭୈରବାଙ୍କନିଲୟାଂ ପଦ୍ମାବତୀଂ ଚିନ୍ତୟେ ॥**

*'ଓଁ' ଋଷିରୁବାଚ ॥ ୧ ॥*

**ଇତ୍ୟାକର୍ଣ୍ୟ ବଚୋ ଦେବ୍ୟାଃ ସ ଦୂତୋଽମର୍ଷପୂରିତଃ ।**
**ସମାଚଷ୍ଟ ସମାଗମ୍ୟ ଦୈତ୍ୟରାଜାୟ ବିସ୍ତରାତ୍ ॥ ୨ ॥**
**ତସ୍ୟ ଦୂତସ୍ୟ ତଦ୍‌ବାକ୍ୟମାକର୍ଣ୍ୟାସୁରରାଟ୍ ତତଃ ।**
**ସକ୍ରୋଧଃ ପ୍ରାହ ଦୈତ୍ୟାନାମଧିପଂ ଧୂମ୍ରଲୋଚନମ୍ ॥ ୩ ॥**

---

ମୁଁ ସର୍ବଜ୍ଞେଶ୍ୱର ଭୈରବଙ୍କ ଅଙ୍କରେ ନିବାସ କରୁଥିବା ପରମୋତ୍କୃଷ୍ଟ ପଦ୍ମାବତୀ ଦେବୀଙ୍କୁ ଚିନ୍ତନ କରୁଛି । ସେ ନାଗରାଜର ଆସନ ଉପରେ ବସିଛନ୍ତି; ନାଗମାନଙ୍କ ଫଣାରେ ସୁଶୋଭିତ ହେଉଥିବା ମଣିଗୁଡ଼ିକର ବିଶାଳ ମାଳାରେ ତାଙ୍କର ଦେହଲତା ଉଦ୍ଭାସିତ ହେଉଅଛି । ସୂର୍ଯ୍ୟସମାନ ତାଙ୍କର ତେଜ ଅଟେ । ତିନୋଟି ନେତ୍ର ତାଙ୍କର ଶୋଭା ବର୍ଦ୍ଧନ କରୁଛି । ସେ ହସ୍ତରେ ମାଳା, କୁମ୍ଭ, କପାଳ ଏବଂ କମଳ ଧାରଣ କରିଛନ୍ତି । ତାଙ୍କ ମସ୍ତକରେ ଅର୍ଦ୍ଧଚନ୍ଦ୍ରର ମୁକୁଟ ସୁଶୋଭିତ ହେଉଛି ।

**ଋଷି କହିଲେ**—॥ ୧ ॥ ଦେବୀଙ୍କ ଏହି କଥା ଶୁଣି ଦୂତ ଅତି ଅମର୍ଷ ଅନୁଭବ କଲା ଏବଂ ସେ ଦୈତ୍ୟରାଜଙ୍କ ପାଖକୁ ଯାଇ ସମସ୍ତ ସମାଗ୍ର ବିସ୍ତାରପୂର୍ବକ କହି ଶୁଣାଇଲା ॥ ୨ ॥ ଦୂତର ସେହି କଥା ଶୁଣି ଦୈତ୍ୟରାଜ କୁପିତ ହୋଇ ଉଠିଲା ଏବଂ ଦୈତ୍ୟସେନାପତି ଧୂମ୍ରଲୋଚନକୁ କହିଲା ॥ ୩ ॥

ହେ ଧୂମ୍ରଲୋଚନାଶୁ ତ୍ୱଂ ସ୍ୱସୈନ୍ୟପରିବାରିତଃ ।
ତାମାନୟ ବଳାଦ୍ ଦୁଷ୍ଟାଂ କେଶାକର୍ଷଣବିହ୍ୱଳାମ୍ ॥ ୪ ॥
ତତ୍ପରିତ୍ରାଣଦଃ କଶ୍ଚିଦ୍ୟଦି ବୋତ୍ତିଷ୍ଠତେଽପରଃ ।
ସ ହନ୍ତବ୍ୟୋଽମରୋ ବାପି ଯକ୍ଷୋ ଗନ୍ଧର୍ବ ଏବ ବା ॥ ୫ ॥

*ଋଷିରୁବାଚ ॥ ୬ ॥*

ତେନାଜ୍ଞପ୍ତସ୍ତତଃ ଶୀଘ୍ରଂ ସ ଦୈତ୍ୟୋ ଧୂମ୍ରଲୋଚନଃ ।
ବୃତଃ ଷଷ୍ଟ୍ୟା ସହସ୍ରାଣାମସୁରାଣାଂ ଦ୍ରୁତଂ ଯଯୌ ॥ ୭ ॥
ସ ଦୃଷ୍ଟ୍ୱା ତାଂ ତତୋ ଦେବୀଂ ତୁହିନାଚଳସଂସ୍ଥିତାମ୍ ।
ଜଗାଦୋଚ୍ଚୈଃ ପ୍ରୟାହୀତି ମୂଳଂ ଶୁମ୍ଭନିଶୁମ୍ଭୟୋଃ ॥ ୮ ॥
ନ ଚେତ୍ପ୍ରୀତ୍ୟାଦ୍ୟ ଭବତୀ ମଦ୍ଭର୍ତାରମୁପୈଷ୍ୟତି ।
ତତୋ ବଳାନ୍ନୟାମ୍ୟେଷ କେଶାକର୍ଷଣବିହ୍ୱଳାମ୍ ॥ ୯ ॥

---

'ହେ ଧୂମ୍ରଲୋଚନ ! ତୁମେ ଶୀଘ୍ର ନିଜ ସେନା ସହିତ ଯାଅ ଏବଂ ସେହି ଦୁଷ୍ଟାର କେଶ ଧରି ଘୋଷାଡ଼ି ଘୋଷାଡ଼ି ତାହାକୁ ବଳପୂର୍ବକ ଏଠାକୁ ନେଇ ଆସ ॥ ୪ ॥ ତାହାକୁ ରକ୍ଷା କରିବା ନିମନ୍ତେ ଯଦି କୌଣସି ଅନ୍ୟ ବ୍ୟକ୍ତି ଦଣ୍ଡାୟମାନ ହୁଏ; ସେ ଦେବତା, ଯକ୍ଷ ଅଥବା ଗନ୍ଧର୍ବ ହେଉ ନା କାହିଁକି; ତାହାକୁ ନିଶ୍ଚିତଭାବେ ହତ୍ୟା କର' ॥ ୫ ॥

**ଋଷି କହିଲେ**—॥ ୬ ॥ ଶୁମ୍ଭ ଏହିପ୍ରକାର ଆଜ୍ଞା ଦେବା ପରେ ସେହି ଧୂମ୍ରଲୋଚନ ଦୈତ୍ୟ ଷାଠିଏ ହଜାର ଅସୁରମାନଙ୍କ ସେନାକୁ ସଙ୍ଗରେ ନେଇ ସେଠାରୁ ଯଥାଶୀଘ୍ର ଗମନ କଲା ॥ ୭ ॥ ସେଠାରେ ପହଞ୍ଚି ସେ ହିମାଳୟ ଉପରେ ବାସ କରୁଥିବା ଦେବୀଙ୍କୁ ଦେଖିଲା ଏବଂ ଗର୍ବର ସହ ଆହ୍ୱାନ କରି କହିଲା—'ଆରେ ! ତୁ ଶୁମ୍ଭ-ନିଶୁମ୍ଭଙ୍କ ପାଖକୁ ଚାଲ । ଯଦି ଏବେ ପ୍ରସନ୍ନତାପୂର୍ବକ ମୋ ସ୍ୱାମୀଙ୍କ ସମୀପକୁ ନ ଯିବୁ; ତେବେ ମୁଁ ବଳପୂର୍ବକ କେଶକୁ ଧରି ଘୋଷାଡ଼ି ଘୋଷାଡ଼ି ତୋତେ ନେଇଯିବି' ॥ ୮-୯ ॥

*ଦେବ୍ୟୁବାଚ ॥ ୧୦ ॥*

**ଦୈତ୍ୟେଶ୍ୱରେଣ ପ୍ରହିତୋ ବଲବାନ୍ ବଲସଂବୃତଃ ।**
**ବଲାନ୍ନୟସି ମାମେବଂ ତତଃ କିଂ ତେ କରୋମ୍ୟହମ୍ ॥ ୧୧ ॥**

*ଋଷିରୁବାଚ ॥ ୧୨ ॥*

**ଇତ୍ୟୁକ୍ତଃ ସୋଽଭ୍ୟଧାବତ୍ତାମସୁରୋ ଧୂମ୍ରଲୋଚନଃ ।**
**ହୁଂକାରେଣୈବ ତଂ ଭସ୍ମ ସା ଚକାରାମ୍ବିକା ତତଃ ॥ ୧୩ ॥**
**ଅଥ କ୍ରୁଦ୍ଧଂ ମହାସୈନ୍ୟମସୁରାଣାଂ ତଥାମ୍ବିକା[୧] ।**
**ବବର୍ଷ ସାୟକୈସ୍ତୀକ୍ଷ୍ଣୈସ୍ତଥା ଶକ୍ତିପରଶ୍ୱଧୈଃ ॥ ୧୪ ॥**
**ତତୋ ଧୁତସଟଃ କୋପାତ୍କୃତ୍ୱା ନାଦଂ ସୁଭୈରବମ୍ ।**
**ପପାତାସୁରସେନାୟାଂ ସିଂହୋ ଦେବ୍ୟାଃ ସ୍ୱବାହନଃ ॥ ୧୫ ॥**
**କାଂଶ୍ଚିତ୍ କରପ୍ରହାରେଣ ଦୈତ୍ୟାନାସ୍ୟେନ ଚାପରାନ୍ ।**
**ଆକ୍ରମ୍ୟ[୨] ଚାଧରେଣାନ୍ୟାନ୍[୩] ସ ଜଘାନ[୪] ମହାସୁରାନ୍ ॥ ୧୬ ॥**

---

**ଦେବୀ କହିଲେ**—॥ ୧୦ ॥ ତୁମେ ଦୈତ୍ୟରାଜଙ୍କଦ୍ୱାରା ପ୍ରେରିତ ହୋଇଛ । ତୁମେ ସ୍ୱୟଂ ମଧ୍ୟ ବଳବାନ୍ ଅଟ ଏବଂ ତୁମ ସହିତ ବିଶାଳ ସେନା ମଧ୍ୟ ଅଛି । ଏପରି ସ୍ଥିତିରେ ଯଦି ତୁମେ ମୋତେ ବଳପୂର୍ବକ ନେବ; ତେବେ ମୁଁ ତୁମର କ'ଣ ବା କରିପାରିବି ? ॥ ୧୧ ॥

**ଋଷି କହିଲେ**—॥ ୧୨ ॥ ଦେବୀ ଏପରି କହିବା ପରେ ଅସୁର ଧୂମ୍ରଲୋଚନ ତାଙ୍କ ଆଡ଼କୁ ଦୌଡ଼ିଲା । ସେତେବେଳେ ଅମ୍ବିକା 'ହୁଂ' ଶବ୍ଦ ଉଚ୍ଚାରଣ କରି ତାକୁ ଭସ୍ମ କରିଦେଲେ ॥ ୧୩ ॥ ତାପରେ କ୍ରୋଧରେ ପରିପୂର୍ଣ୍ଣ ଦୈତ୍ୟମାନଙ୍କ ବିଶାଳ ସେନା ଓ ଅମ୍ବିକା ପରସ୍ପର ଉପରେ ତୀକ୍ଷ୍ଣ ଶର, ଶକ୍ତି ଓ ଫାର୍ଶା ବର୍ଷା କରିବାକୁ ଆରମ୍ଭ କଲେ ॥ ୧୪ ॥ ଇତି ମଧ୍ୟରେ ଦେବୀଙ୍କ ବାହନ ସିଂହ କ୍ରୋଧରେ ଭୟଙ୍କର ଗର୍ଜ୍ଜନ କରି କାନ୍ଧର କେଶକୁ ଝାଡ଼ି ଅସୁରସେନା ମଧ୍ୟକୁ କୁଦି ପଡ଼ିଲା ॥ ୧୫ ॥ ସେ କେତେକ ଦୈତ୍ୟଙ୍କୁ ପଞ୍ଝାରେ ଆଘାତ କରି,

---

୧. ପା.—ତଥାମ୍ବିକାମ୍ । ୨. ପା.—ଆକ୍ରାନ୍ତ୍ୟା । ୩. ପା.—ଚରଣେନାନ୍ୟାନ୍ ।
୪. ଏଠାରେ ତିନିପ୍ରକାରର ପାଠାନ୍ତର ମିଳେ—'ସଂଜଘାନ, ନିଜଘାନ, ଜଘାନ ସୁମହା. ।

କେଷାଞ୍ଚିତ୍ପାଟୟାମାସ ନଖୈଃ କୋଷ୍ଠାନି କେସରୀ[୧] ।
ତଥା ତଳପ୍ରହାରେଣ ଶିରାଂସି କୃତବାନ୍ ପୃଥକ୍ ॥ ୧୭ ॥
ବିଚ୍ଛିନ୍ନବାହୁଶିରସଃ କୃତାସ୍ତେନ ତଥାପରେ ।
ପପୌ ଚ ରୁଧିରଂ କୋଷ୍ଠାଦନ୍ୟେଷାଂ ଧୁତକେସରଃ ॥ ୧୮ ॥
କ୍ଷଣେନ ତଦ୍ବଳଂ ସର୍ବଂ କ୍ଷୟଂ ନୀତଂ ମହାତ୍ମନା ।
ତେନ କେସରିଣା ଦେବ୍ୟା ବାହନେନାତିକୋପିନା ॥ ୧୯ ॥
ଶ୍ରୁତ୍ୱା ତମସୁରଂ ଦେବ୍ୟା ନିହତଂ ଧୂମ୍ରଲୋଚନମ୍ ।
ବଳଂ ଚ କ୍ଷୟିତଂ କୃତ୍ସ୍ନଂ ଦେବୀକେସରିଣା ତତଃ ॥ ୨୦ ॥
ଚୁକୋପ ଦୈତ୍ୟାଧିପତିଃ ଶୁମ୍ଭଃ ପ୍ରସ୍ଫୁରିତାଧରଃ ।
ଆଜ୍ଞାପୟାମାସ ଚ ତୌ ଚଣ୍ଡମୁଣ୍ଡୌ ମହାସୁରୌ ॥ ୨୧ ॥

---

କେତେକଙ୍କୁ ଦାନ୍ତରେ କାମୁଡ଼ି ଏବଂ ଆଉ କେତେକ ମହାଦୈତ୍ୟଙ୍କୁ ତଳେ ପକାଇ ଓଠଦ୍ୱାରା ଆଘାତ କରି ମାରିଦେଲା ॥ ୧୬ ॥ ସେହି ସିଂହ ନିଜ ନଖଦ୍ୱାରା କେତେକଙ୍କ ପେଟ ଚିରିଦେଲା ଏବଂ ଚାପୁଡ଼ା ମାରି କେତେକଙ୍କ ମୁଣ୍ଡ ଗଣ୍ଡିରୁ ପୃଥକ୍ କରିଦେଲା ॥ ୧୭ ॥ କେତେକଙ୍କ ଭୁଜ ଓ ମସ୍ତକ କାଟି ତଳେ ପକାଇ ଦେଲା ତଥା ନିଜ କାନ୍ଧର ବାଳ ହଲାଇ ହଲାଇ ସେ ଅନ୍ୟ ଦୈତ୍ୟମାନଙ୍କ ପେଟକୁ ଫାଡ଼ି ସେମାନଙ୍କ ରକ୍ତକୁ ପାନ କଲା ॥ ୧୮ ॥ ଅତ୍ୟନ୍ତ କ୍ରୋଧଭରା ହୋଇଥିବା ଦେବୀଙ୍କ ବାହନ ସେହି ମହାବଳୀ ସିଂହ କ୍ଷଣକ ମଧ୍ୟରେ ସମସ୍ତ ଅସୁରସେନାକୁ ସଂହାର କଲା ॥ ୧୯ ॥

ଶୁମ୍ଭ ଯେତେବେଳେ ଶୁଣିଲା ଯେ ଦେବୀ ଧୂମ୍ରଲୋଚନ ଅସୁରକୁ ହତ୍ୟା କଲେ ଏବଂ ତାଙ୍କର ସିଂହ ସମସ୍ତ ସେନାକୁ ମାରିଦେଲା; ସେତେବେଳେ ସେହି ଦୈତ୍ୟରାଜ ଅତି କ୍ରୋଧାନ୍ୱିତ ହେଲା । ତାହାର ଓଷ୍ଠ କମ୍ପିଲା । ସେ ଚଣ୍ଡ ଓ ମୁଣ୍ଡ ନାମକ ଦୁଇଜଣ ମହାଦୈତ୍ୟଙ୍କୁ ଆଜ୍ଞା ଦେଲା ॥ ୨୦-୨୧ ॥

---

୧. ପା.—କେଶରୀ । ବଙ୍ଗଳା ପାଣ୍ଡୁଲିପିରେ ସବୁ ସ୍ଥାନରେ 'କେସରୀ' ଓ 'କେସର' ଶବ୍ଦରେ ତାଲବ୍ୟ 'ଶ'ର ପ୍ରୟୋଗ ଅଛି ।

ହେ ଚଣ୍ଡ ହେ ମୁଣ୍ଡ ବଲୈର୍ବହୁଂଭିଃ ପରିବାରିତୌ ।
ତତ୍ର ଗଚ୍ଛତ ଗତ୍ୱା ଚ ସା ସମାନୀୟତାଂ ଲଘୁ ॥ ୨୨ ॥
କେଶେଷ୍ୱାକୃଷ୍ୟ ବଦ୍ଧ୍ୱା ବା ଯଦି ବଃ ସଂଶୟୋ ଯୁଧି ।
ତଦାଶେଷାୟୁଧୈଃ ସର୍ବୈରସୁରୈର୍ବିନିହନ୍ୟତାମ୍ ॥ ୨୩ ॥
ତସ୍ୟାଂ ହତାୟାଂ ଦୁଷ୍ଟାୟାଂ ସିଂହେ ଚ ବିନିପାତିତେ ।
ଶୀଘ୍ରମାଗମ୍ୟତାଂ ବଦ୍ଧ୍ୱା ଗୃହୀତ୍ୱା ତାମଥାମ୍ବିକାମ୍ ॥ ଓଁ ॥ ୨୪ ॥

*ଇତି ଶ୍ରୀମାର୍କଣ୍ଡେୟପୁରାଣେ ସାବର୍ଣ୍ଣିକେ ମନ୍ୱନ୍ତରେ ଦେବୀମାହାତ୍ମ୍ୟେ ଶୁମ୍ଭନିଶୁମ୍ଭସେନାନୀଧୂମ୍ରଲୋଚନବଧୋ ନାମ ଷଷ୍ଠୋଽଧ୍ୟାୟଃ ॥ ୬ ॥*

*ଉବାଚ ୪, ଶ୍ଳୋକାଃ ୨୦, ଏବମ୍ ୨୪,*

*ଏବମାଦିତଃ ୪୧୨ ॥*



'ରେ ଚଣ୍ଡ ! ରେ ମୁଣ୍ଡ ! ତୁମେମାନେ ବହୁତ ବଡ଼ ସେନାବଳ ନେଇ ସେଠାକୁ ଯାଅ । ସେହି ଦେବୀର କେଶକୁ ଧରି ଅଥବା ତାହାକୁ ବାନ୍ଧି ଶୀଘ୍ର ଏଠାକୁ ନେଇ ଆସ । ଯଦି ଏହିପ୍ରକାରେ ତାହାକୁ ଆଣିବାକୁ ସନ୍ଦେହ ହୁଏ; ତେବେ ଯୁଦ୍ଧରେ ସବୁପ୍ରକାରର ଅସ୍ତ୍ର-ଶସ୍ତ୍ର ତଥା ସମସ୍ତ ଆସୁରୀସେନାକୁ ପ୍ରୟୋଗ କରି ତାହାକୁ ହତ୍ୟା କର ॥ ୨୨-୨୩ ॥ ସେହି ଦୁଷ୍ଟାକୁ ହତ୍ୟା କରି ତଥା ସିଂହକୁ ମାରିବାପରେ ଅମ୍ବିକାକୁ ବାନ୍ଧି ସଙ୍ଗରେ ଆଣି ଶୀଘ୍ର ପ୍ରତ୍ୟାବର୍ତ୍ତନ କର' ॥ ୨୪ ॥

*ଏହିପରି ଶ୍ରୀମାର୍କଣ୍ଡେୟପୁରାଣରେ ସାବର୍ଣ୍ଣିକ ମନ୍ୱନ୍ତର କଥାନ୍ତର୍ଗତ ଦେବୀମାହାତ୍ମ୍ୟରେ 'ଧୂମ୍ରଲୋଚନ-ବଧ' ନାମକ ଷଷ୍ଠ ଅଧ୍ୟାୟ ସମାପ୍ତ ହେଲା ॥ ୬ ॥*



୧. ପା.—ର୍ଲୈଃ ।

# ସପ୍ତମୋଽଧ୍ୟାୟଃ

## [ଚଣ୍ଡ ଓ ମୁଣ୍ଡ ବଧ]

### ଧ୍ୟାନମ୍

**ଓଁ ଧ୍ୟାୟେୟଂ ରତ୍ନପୀଠେ ଶୁକକଲପଠିତଂ ଶୃଣ୍ୱତୀଂ ଶ୍ୟାମଲାଙ୍ଗୀଂ**
**ନ୍ୟସ୍ତୈକାଂଘ୍ରିଂ ସରୋଜେ ଶଶିଶକଲଧରାଂ ବଲ୍ଲକୀଂ ବାଦୟନ୍ତୀମ୍ ।**
**କହ୍ଲାରାବଦ୍ଧମାଳାଂ ନିୟମିତବିଲସଚ୍ଚୋଳିକାଂ ରକ୍ତବସ୍ତ୍ରାଂ**
**ମାତଙ୍ଗୀଂ ଶଙ୍ଖପାତ୍ରାଂ ମଧୁରମଧୁମଦାଂ ଚିତ୍ରକୋଦ୍ଭାସିଭାଲାମ୍ ॥**

*'ଓଁ ଋଷିରୁବାଚ ॥ ୧ ॥*

**ଆଜ୍ଞପ୍ତାସ୍ତେ ତତୋ ଦୈତ୍ୟାଶ୍ଚଣ୍ଡମୁଣ୍ଡପୁରୋଗମାଃ ।**
**ଚତୁରଙ୍ଗବଲୋପେତା ୟୟୁରଭ୍ୟୁଦ୍ୟତାୟୁଧାଃ ॥ ୨ ॥**
**ଦଦୃଶୁସ୍ତେ ତତୋ ଦେବୀମୀଷଦ୍ଧାସାଂ ବ୍ୟବସ୍ଥିତାମ୍ ।**
**ସିଂହସ୍ୟୋପରି ଶୈଳେନ୍ଦ୍ରଶୃଙ୍ଗେ ମହତି କାଞ୍ଚନେ ॥ ୩ ॥**

---

ମୁଁ ମାତଙ୍ଗୀଦେବୀଙ୍କୁ ଧ୍ୟାନ କରୁଛି । ସେ ରତ୍ନମୟ ସିଂହାସନ ଉପରେ ବସି ଶୁଆ ପଢୁଥିବା ମଧୁର ଶବ୍ଦ ଶ୍ରବଣ କରୁଛନ୍ତି । ତାଙ୍କ ଶରୀରର ବର୍ଣ୍ଣ ଶ୍ୟାମ ଅଟେ । ସେ ନିଜର ଗୋଟିଏ ପାଦ କମଳ ଉପରେ ରଖିଛନ୍ତି । ମସ୍ତକ ଉପରେ ଅର୍ଦ୍ଧଚନ୍ଦ୍ର ଧାରଣ କରିଛନ୍ତି । ଶ୍ୱେତ କଇଁଫୁଲର ମାଳା ଧାରଣ କରି ବୀଣା ବାଦନ କରୁଛନ୍ତି । ତାଙ୍କ ଅଙ୍ଗରେ ବନ୍ଧା ହୋଇଥିବା ବକ୍ଷପରିଧାନ ଶୋଭା ପାଉଛି । ସେ ଲାଲ ରଙ୍ଗର ଶାଢୀ ପିନ୍ଧି ହସ୍ତରେ ଶଙ୍ଖମୟ ପାତ୍ର ଧାରଣ କରିଛନ୍ତି । ତାଙ୍କ ମୁହଁରେ ମଧୁପାନର ସାମାନ୍ୟ ପ୍ରଭାବ ବାରି ହେଉଛି ଏବଂ ଲଲାଟରେ ସିନ୍ଦୂରଟୋପା ଶୋଭା ଦେଉଛି ।

**ଋଷି କହିଲେ**—॥ ୧ ॥ ତାପରେ ଶୁମ୍ଭର ଆଜ୍ଞା ପାଇ ସେହି ଚଣ୍ଡ-ମୁଣ୍ଡ ଆଦି ଦୈତ୍ୟ ଚତୁରଙ୍ଗିଣୀ ସେନାଙ୍କ ସହ ଅସ୍ତ୍ର-ଶସ୍ତ୍ରଦ୍ୱାରା ସୁସଜ୍ଜିତ ହୋଇ ଗମନ କଲେ ॥ ୨ ॥ ପୁନଶ୍ଚ ଗିରିରାଜ ହିମାଳୟଙ୍କ ସୁବର୍ଣ୍ଣମୟ ଉଚ୍ଚ ଶିଖର ଉପରେ ଉପସ୍ଥିତ ହୋଇ ସେମାନେ ସିଂହାସନ ଉପରେ

ତେ ଦୃଷ୍ଟ୍ବା ତାଂ ସମାଦାତୁମୁଦ୍ୟମଂ ଚକ୍ରୁରୁଦ୍ୟତାଃ ।
ଆକୃଷ୍ଟଚାପାସିଧରାସ୍ତଥାନ୍ୟେ ତତ୍ସମୀପଗାଃ ॥ ୪ ॥
ତତଃ କୋପଂ ଚକାରୋଚ୍ଚୈରମ୍ବିକା ତାନରୀନ୍ ପ୍ରତି ।
କୋପେନ ଚାସ୍ୟା ବଦନଂ ମଷୀ[୧]ବର୍ଣ୍ଣମଭୂତ୍ତଦା ॥ ୫ ॥
ଭ୍ରୁକୁଟୀକୁଟିଲାତ୍ତସ୍ୟା ଲଲାଟଫଲକାଦ୍ଦ୍ରୁତମ୍ ।
କାଲୀ କରାଳବଦନା ବିନିଷ୍କ୍ରାନ୍ତାସିପାଶିନୀ ॥ ୬ ॥
ବିଚିତ୍ରଖଟ୍ୱାଙ୍ଗଧରା ନରମାଳାବିଭୂଷଣା ।
ଦ୍ୱୀପିଚର୍ମପରୀଧାନା ଶୁଷ୍କମାଂସାତିଭୈରବା ॥ ୭ ॥
ଅତିବିସ୍ତାରବଦନା ଜିହ୍ୱାଲଲନଭୀଷଣା ।
ନିମଗ୍ନାରକ୍ତନୟନା ନାଦାପୂରିତଦିଙ୍ମୁଖା ॥ ୮ ॥

---

ବସିଥିବା ଦେବୀଙ୍କୁ ଦେଖିଲେ । ସେ ମନ୍ଦ ମନ୍ଦ ହସୁଥିଲେ ॥ ୩ ॥ ତାଙ୍କୁ ଦେଖି ଦୈତ୍ୟମାନେ ତତ୍ପରତାର ସହିତ ଧରିବାକୁ ଉଦ୍ୟତ ହେଲେ । କେତେକ ଧନୁକୁ ଓଟାରି ଧରିଲେ । କେତେକ ଖଡ୍‌ଗ ଧାରଣ କରିଥିଲେ ଏବଂ କେତେକ ଦେବୀଙ୍କ ପାଖକୁ ଆସି ଛିଡ଼ା ହୋଇଗଲେ ॥ ୪ ॥ ସେତେବେଳେ ଅମ୍ବିକା ସେହି ଶତ୍ରୁମାନଙ୍କ ପ୍ରତି କ୍ରୋଧାନ୍ୱିତା ହେଲେ । ସେହିସମୟରେ କ୍ରୋଧ ହେତୁ ତାଙ୍କ ମୁଖମଣ୍ଡଳ କଳା ପଡ଼ିଗଲା ॥ ୫ ॥ ଲଲାଟରେ ଭ୍ରୁକୁଟି କୁଞ୍ଚିତ ହୋଇଗଲା ଏବଂ ସେଠାରୁ ଯଥାଶୀଘ୍ର ବିକରାଳମୁଖୀ କାଳୀ ପ୍ରକଟ ହେଲେ । ସେ ଖଡ୍‌ଗ ଓ ପାଶ ଧାରଣ କରିଥିଲେ ॥ ୬ ॥ ସେ ବିଚିତ୍ର ଖଟ୍ୱାଙ୍ଗ (ଶିବଙ୍କ ଅସ୍ତ୍ରବିଶେଷ) ଧାରଣ କରିଥିଲେ ଏବଂ ବ୍ୟାଘ୍ରଚର୍ମର ଶାଢୀ ପରିଧାନ କରି ନରମୁଣ୍ଡର ମାଳାଦ୍ୱାରା ବିଭୂଷିତ ହୋଇଥିଲେ । ତାଙ୍କ ଶରୀରର ମାଂସ ଶୁଷ୍କ ହୋଇଯାଇଥିଲା । କେବଳ ଅସ୍ଥିମୟ କଙ୍କାଳ ରହିଥିଲା । ଯଦ୍ଦ୍ୱାରା ସେ ଅତ୍ୟନ୍ତ ଭୟଙ୍କର ଜଣା ପଡୁଥିଲେ ॥ ୭ ॥ ତାଙ୍କର ମୁଖ ବହୁତ ବିଶାଳ ଥିଲା; ଜିହ୍ୱା ଲହଲହ ହେଉଥିବାରୁ ସେ ଆହୁରି ଭୟପ୍ରଦ ପ୍ରତୀତ ହେଉଥିଲେ । ତାଙ୍କର ନୟନ ଲାଲ ଥିଲା ଏବଂ ଭିତରକୁ

---

୧. ପା.—ମସୀ. ।

ସା ବେଗେନାଭିପତିତା ଘାତୟନ୍ତୀ ମହାସୁରାନ୍ ।
ସୈନ୍ୟେ ତତ୍ର ସୁରାରୀଣାମଭକ୍ଷୟତ ତଦ୍‌ବଳମ୍ ॥ ୯ ॥
ପାର୍ଷ୍ଣିଗ୍ରାହାଙ୍କୁଶଗ୍ରାହିଯୋଧଘଣ୍ଟାସମନ୍ୱିତାନ୍ ।
ସମାଦାୟୈକହସ୍ତେନ ମୁଖେ ଚିକ୍ଷେପ ବାରଣାନ୍ ॥ ୧୦ ॥
ତଥୈବ ଯୋଧଂ ତୁରଗୈ ରଥଂ ସାରଥିନା ସହ ।
ନିକ୍ଷିପ୍ୟ ବକ୍ତ୍ରେ ଦଶନୈଶ୍ଚର୍ବୟନ୍ତ୍ୟ[1]ତିଭୈରବମ୍ ॥ ୧୧ ॥
ଏକଂ ଜଗ୍ରାହ କେଶେଷୁ ଗ୍ରୀବାୟାମଥ ଚାପରମ୍ ।
ପାଦେନାକ୍ରମ୍ୟ ଚୈବାନ୍ୟମୁରସାନ୍ୟମପୋଥୟତ୍ ॥ ୧୨ ॥
ତୈର୍ମୁକ୍ତାନି ଚ ଶସ୍ତ୍ରାଣି ମହାସ୍ତ୍ରାଣି ତଥାସୁରୈଃ ।
ମୁଖେନ ଜଗ୍ରାହ ରୁଷା ଦଶନୈର୍ମଥିତାନ୍ୟପି ॥ ୧୩ ॥
ବଳିନାଂ ତଦ୍ ବଳଂ ସର୍ବମସୁରାଣାଂ ଦୁରାତ୍ମନାମ୍ ।
ମମର୍ଦାଭକ୍ଷୟଚ୍ଚାନ୍ୟାନନ୍ୟାଂଶ୍ଚାତାଡୟତ୍ତଥା ॥ ୧୪ ॥

ପଶିଯାଇଥିଲା । ସେ ଅତି ଭୟଙ୍କର ଗର୍ଜ୍ଜନରେ ସମସ୍ତ ଦିଗକୁ ଗୁଞ୍ଜରିତ କରୁଥିଲେ ॥ ୮ ॥ ବଡ଼ ବଡ଼ ଦୈତ୍ୟମାନଙ୍କୁ ହତ୍ୟା କରି ସେହି କାଳିକାଦେବୀ ଅତିବେଗରେ ଦୈତ୍ୟସେନାଙ୍କ ଉପରେ କୁଦି ପଡ଼ିଲେ ଏବଂ ସେମାନଙ୍କୁ ଭକ୍ଷଣ କରିବାକୁ ଲାଗିଲେ ॥ ୯ ॥ ସେ ପାର୍ଶ୍ୱରକ୍ଷକ, ଅଙ୍କୁଶଧାରୀ ମାହୁନ୍ତ, ମହାବଳବାନ୍ ଯୋଦ୍ଧା ଓ ଘଣ୍ଟସହିତ ଅନେକ ହସ୍ତୀଙ୍କୁ ଗୋଟିଏ ହାତରେ ଧରି ପାଟିରେ ପକାଇ ଦେଉଥିଲେ ॥ ୧୦ ॥ ଏହିପ୍ରକାର ଅଶ୍ୱ, ରଥ ଓ ସାରଥିଙ୍କ ସହିତ ରଥୀ ସୈନିକମାନଙ୍କୁ ପାଟିରେ ପକାଇ ସେ ସେମାନଙ୍କୁ ଅତି ଭୟଙ୍କର ରୂପରେ ଚୋବାଇ ଦେଉଥିଲେ ॥ ୧୧ ॥ କାହାର କେଶକୁ ଧରି ନେଉଥିଲେ ତ କାହାର ଗଳା ଚିପି ଦେଉଥିଲେ । କାହାକୁ ପାଦରେ ଦଳି ଦେଉଥିଲେ ତ କାହାକୁ ଛାତିର ଧକ୍କାରେ ମାରି ପକାଉଥିଲେ ॥ ୧୨ ॥ ଅସୁରମାନେ ନିକ୍ଷେପ କରିଥିବା ବଡ଼ ବଡ଼ ଅସ୍ତ୍ର-ଶସ୍ତ୍ରକୁ ସେ ପାଟିରେ ଧରି ନେଉଥିଲେ ଏବଂ ରୋଷଭରେ ହୋଇ ସେ ସବୁ ଦାନ୍ତରେ ପେଷି ଦେଉଥିଲେ ॥ ୧୩ ॥ କାଳୀ ବଳବାନ୍ ଓ ଦୁରାତ୍ମା ଦୈତ୍ୟମାନଙ୍କ ସମସ୍ତ

୧. ପା.—ୟତ୍ୟତି ।

ଅସିନା ନିହତାଃ କେଚିତ୍‌କେଚିତ୍‌ଖଟ୍ୱାଙ୍ଗତାଡିତାଃ[1] ।
ଜଗ୍ମୁର୍ବିନାଶମସୁରା ଦନ୍ତାଗ୍ରାଭିହତାସ୍ତଥା ॥ ୧୫ ॥
କ୍ଷଣେନ ତଦ୍ ବଲଂ ସର୍ବମସୁରାଣାଂ ନିପାତିତମ୍ ।
ଦୃଷ୍ଟ୍ୱା ଚଣ୍ଡୋଽଭିଦୁଦ୍ରାବ ତାଂ କାଳୀମତିଭୀଷଣାମ୍ ॥ ୧୬ ॥
ଶରବର୍ଷୈର୍ମହାଭୀମୈର୍ଭୀମାକ୍ଷୀଂ ତାଂ ମହାସୁରଃ ।
ଛାଦୟାମାସ ଚକ୍ରୈଶ୍ଚ ମୁଣ୍ଡଃ କ୍ଷିପ୍ତୈଃ ସହସ୍ରଶଃ ॥ ୧୭ ॥
ତାନି ଚକ୍ରାଣ୍ୟନେକାନି ବିଶମାନାନି ତନ୍ମୁଖମ୍ ।
ବଭୁର୍ଯଥାର୍କବିମ୍ବାନି ସୁବହୂନି ଘନୋଦରମ୍ ॥ ୧୮ ॥
ତତୋ ଜହାସାତିରୁଷା ଭୀମଂ ଭୈରବନାଦିନୀ ।
କାଳୀକରାଳବକ୍ତ୍ରାନ୍ତର୍ଦୁର୍ଦର୍ଶଦଶନୋଜ୍ଜ୍ୱଳା ॥ ୧୯ ॥

ସେନାଙ୍କୁ ମାରିଦେଲେ ଓ ଭକ୍ଷଣ କଲେ । ଆଉ କେତେକଙ୍କୁ ପ୍ରହାର କରି ବିଦା କରିଦେଲେ ॥ ୧୪ ॥ କେତେକ ଖଡ୍‌ଗରେ ମଲେ ଆଉ କେତେକ ଖଟ୍ୱାଙ୍ଗରେ ମାଡ଼ ଖାଇ ମଲେ । କେତେକ ଅସୁର ଦାନ୍ତର ଅଗ୍ରଭାଗରେ ଗ୍ଦପି ହୋଇ ମୃତ୍ୟୁ ବରଣ କଲେ ॥ ୧୫ ॥

ଏହିପ୍ରକାର ଦେବୀ ଅସୁରଙ୍କ ସମସ୍ତ ସେନାଙ୍କୁ କ୍ଷଣକ ମଧ୍ୟରେ ମାରିଦେଲେ । ଏହା ଦେଖି ଚଣ୍ଡ ଅତ୍ୟନ୍ତ ଭୟଙ୍କର କାଳୀଦେବୀଙ୍କ ଆଡ଼କୁ ଦଉଡ଼ିଲା ॥ ୧୬ ॥ ତଥା ମହାଦୈତ୍ୟ ମୁଣ୍ଡ ମଧ୍ୟ ଅତ୍ୟନ୍ତ ଭୟଙ୍କର ବାଣବର୍ଷା ଦ୍ୱାରା ତଥା ହଜାର ହଜାର ଥର ଚକ୍ର ଘୂରାଇ ସେହି ଭୟାନକ ନେତ୍ରଯୁକ୍ତା ଦେବୀଙ୍କୁ ଆଚ୍ଛାଦିତ କରିଦେଲା ॥ ୧୭ ॥ ସେହି ଚକ୍ରଗୁଡ଼ିକ ଦେବୀଙ୍କ ମୁଖରେ ପ୍ରବେଶ କଲାବେଳେ ଜଣାପଡୁଥିଲା ସତେଯେପରି ସୂର୍ଯ୍ୟଙ୍କ ବିମ୍ବମଣ୍ଡଳ ମେଘମାଳା ରୂପକ ଉଦରରେ ପ୍ରବେଶ କରୁଛି କି? ॥ ୧୮ ॥ ସେତେବେଳେ ଭୟଙ୍କର ଗର୍ଜନ କରୁଥିବା କାଳୀ ଅତ୍ୟନ୍ତ ରୋଷଭରେ ହୋଇ ବିକଟ ଅଟ୍ଟହାସ୍ୟ କଲେ । ସେତିକିବେଳେ ତାଙ୍କର ବିକରାଳ ମୁଖର ଦୁର୍ନିରୀକ୍ଷ ଦାନ୍ତର ପ୍ରଭାଦ୍ୱାରା ସେ ଅତ୍ୟନ୍ତ ଉଜ୍ଜ୍ୱଳ ଦେଖାଯାଉଥିଲେ ॥ ୧୯ ॥

୧. ପା.—ତା ରଣେ ।

**ଉତ୍ଥାଯ୍ୟ ଚ ମହାସିଂ ହଂ ଦେବୀ ଚଣ୍ଡମଧାବତ ।**
**ଗୃହୀତ୍ୱା ଗ୍ୱସ୍ୟ କେଶେଷୁ ଶିରସ୍ତେନାସିନାଚ୍ଛିନତ୍[୧] ॥ ୨୦ ॥**
**ଅଥ ମୁଣ୍ଡୋଽଭ୍ୟଧାବତ୍ତାଂ ଦୃଷ୍ଟ୍ୱା ଚଣ୍ଡଂ ନିପାତିତମ୍ ।**
**ତମପ୍ୟପାତୟଦ୍ଭୂମୌ ସା ଖଡ୍‌ଗାଭିହତଂ ରୁଷା ॥ ୨୧ ॥**
**ହତଶେଷଂ ତତଃ ସୈନ୍ୟଂ ଦୃଷ୍ଟ୍ୱା ଚଣ୍ଡଂ ନିପାତିତମ୍ ।**
**ମୁଣ୍ଡଂ ଚ ସୁମହାବୀର୍ଯ୍ୟଂ ଦିଶୋ ଭେଜେ ଭୟାତୁରମ୍ ॥ ୨୨ ॥**
**ଶିରଶ୍ଚଣ୍ଡସ୍ୟ କାଳୀ ଚ ଗୃହୀତ୍ୱା ମୁଣ୍ଡମେବ ଚ ।**
**ପ୍ରାହ ପ୍ରଚଣ୍ଡାଟ୍ଟହାସମିଶ୍ରମଭ୍ୟେତ୍ୟ ଚଣ୍ଡିକାମ୍ ॥ ୨୩ ॥**
**ମୟା ତବାତ୍ରୋପହୃତୌ ଚଣ୍ଡମୁଣ୍ଡୌ ମହାପଶୂ ।**
**ଯୁଦ୍ଧଯଜ୍ଞେ ସ୍ୱୟଂ ଶୁମ୍ଭଂ ନିଶୁମ୍ଭଂ ଚ ହନିଷ୍ୟସି ॥ ୨୪ ॥**

ଦେବୀ ବହୁତ ବଡ଼ ଖଡ୍ଗ ହସ୍ତରେ ନେଇ 'ହଂ' ଉଚ୍ଚାରଣ କରି ଚଣ୍ଡ ଉପରକୁ ଝପଟି ପଡ଼ିଲେ ଏବଂ ତାହାର କେଶକୁ ଧରି ସେହି ଖଡ୍ଗ ଦ୍ୱାରା ମସ୍ତକକୁ କାଟି ଦେଲେ ॥ ୨୦ ॥

ଚଣ୍ଡକୁ ନିହତ ହେବାର ଦେଖି ମୁଣ୍ଡ ଦେବୀଙ୍କ ଆଡ଼କୁ ଧାବମାନ ହେଲା । ସେତେବେଳେ ଦେବୀ ରୋଷଭରେ ହୋଇ ତାକୁ ଖଡ୍ଗରେ ହାଣି ତଳେ ପକାଇଦେଲେ ॥ ୨୧ ॥ ମହାପରାକ୍ରମୀ ଚଣ୍ଡ ଓ ମୁଣ୍ଡକୁ ନିହତ ହେବାର ଦେଖି ବାକି ଅନ୍ୟ ସେନା ଭୟରେ ବ୍ୟାକୁଳିତ ହୋଇ ଚ୍ୱରିଆଡ଼କୁ ଛତ୍ରଭଙ୍ଗ ଦେଲେ ॥ ୨୨ ॥ ତାପରେ କାଳୀ ଚଣ୍ଡ ଓ ମୁଣ୍ଡର ମସ୍ତକକୁ ହାତରେ ଧରି ଚଣ୍ଡିକାଙ୍କ ପାଖକୁ ଯାଇ ପ୍ରଚଣ୍ଡ ଅଟ୍ଟହାସ୍ୟ କରି କହିଲେ—॥ ୨୩ ॥ 'ହେ ଦେବି ! ମୁଁ ଚଣ୍ଡ ଓ ମୁଣ୍ଡ ନାମକ ଏହି ଦୁଇଟି ମହାପଶୁଙ୍କୁ ତୁମକୁ ଉପହାର ଦେଉଛି । ବର୍ତ୍ତମାନ ଯୁଦ୍ଧଯଜ୍ଞରେ ତୁମେ ଶୁମ୍ଭ ଓ ନିଶୁମ୍ଭଙ୍କୁ ସ୍ୱୟଂ ବଧ କରିବ' ॥ ୨୪ ॥

---

୧. ଶାନ୍ତନବୀ ଟୀକାକାର ଏଠାରେ ଗୋଟିଏ ଶ୍ଳୋକ ଅଧିକ ପାଠ ଅଛି ବୋଲି ସ୍ୱୀକାର କରିଛନ୍ତି । ତାହା ଏହିପରି—

'ଛିନ୍ନେ ଶିରସି ଦୈତ୍ୟେନ୍ଦ୍ରଶ୍ଚକ୍ରେ ନାଦଂ ସୁଭୈରବମ୍ ।
ତେନ ନାଦେନ ମହତା ତ୍ରାସିତଂ ଭୁବନତ୍ରୟମ୍ ॥'

*ଋଷିରୁବାଚ ॥ ୨୫ ॥*

**ତାବାନୀତୌ ତତୋ ଦୃଷ୍ଟ୍ୱା ଚଣ୍ଡମୁଣ୍ଡୌ ମହାସୁରୌ ।**
**ଉବାଚ କାଳୀଂ କଲ୍ୟାଣୀ ଲଳିତଂ ଚଣ୍ଡିକା ବଚଃ ॥ ୨୬ ॥**
**ଯସ୍ମାଚ୍ଚଣ୍ଡଂ ଚ ମୁଣ୍ଡଂ ଚ ଗୃହୀତ୍ୱା ତ୍ୱମୁପାଗତା ।**
**ଚାମୁଣ୍ଡେତି ତତୋ ଲୋକେ ଖ୍ୟାତା ଦେବି ଭବିଷ୍ୟସି ॥ ଓଁ ॥ ୨୭ ॥**

*ଇତି ଶ୍ରୀମାର୍କଣ୍ଡେୟପୁରାଣେ ସାବର୍ଣ୍ଣିକେ ମନ୍ୱନ୍ତରେ ଦେବୀମାହାତ୍ମ୍ୟେ*
*ଚଣ୍ଡମୁଣ୍ଡବଧୋ ନାମ ସପ୍ତମୋଽଧ୍ୟାୟଃ ॥ ୭ ॥*
*ଉବାଚ ୨, ଶ୍ଲୋକାଃ ୨୫, ଏବମ୍ ୨୭,*
*ଏବମାଦିତଃ ୪୩୯ ॥*



**ଋଷି କହିଲେ**—॥ ୨୫ ॥ ସେଠାକୁ ଅଣାଯାଇଥିବା ଚଣ୍ଡ-ମୁଣ୍ଡ ନାମକ ମହାଦୈତ୍ୟଙ୍କ ମସ୍ତକକୁ ଦେଖି କଲ୍ୟାଣମୟୀ ଚଣ୍ଡୀ କାଳୀଙ୍କୁ ମଧୁର ବାଣୀରେ କହିଲେ—॥ ୨୬ ॥ 'ହେ ଦେବି ! ତୁମେ ଚଣ୍ଡ ଓ ମୁଣ୍ଡକୁ ନେଇ ମୋ ପାଖକୁ ଆସିଅଛ । ତେଣୁ ସଂସାରରେ ଚାମୁଣ୍ଡା ନାମରେ ତୁମେ ଖ୍ୟାତିଲାଭ କରିବ' ॥ ୨୭ ॥

*ଏହିପରି ଶ୍ରୀମାର୍କଣ୍ଡେୟପୁରାଣରେ ସାବର୍ଣ୍ଣିକ ମନ୍ୱନ୍ତର କଥାନ୍ତର୍ଗତ*
*ଦେବୀମାହାତ୍ମ୍ୟରେ 'ଚଣ୍ଡ-ମୁଣ୍ଡ-ବଧ' ନାମକ*
*ସପ୍ତମ ଅଧ୍ୟାୟ ସମାପ୍ତ ହେଲା ॥ ୭ ॥*



# ଅଷ୍ଟମୋଽଧ୍ୟାୟଃ

[ରକ୍ତବୀଜ ବଧ]

## ଧ୍ୟାନମ୍

ଓଁ ଅରୁଣାଂ କରୁଣାତରଙ୍ଗିତାକ୍ଷୀଂ
ଧୃତପାଶାଙ୍କୁଶବାଣଚାପହସ୍ତାମ୍ ।
ଅଣିମାଦିଭିରାବୃତାଂ ମୟୂଖୈ-
ରହମିତ୍ୟେବ ବିଭାବୟେ ଭବାନୀମ୍ ॥

*'ଓଁ ଋଷିରୁବାଚ ॥ ୧ ॥*

**ଚଣ୍ଡେ ଚ ନିହତେ ଦୈତ୍ୟେ ମୁଣ୍ଡେ ଚ ବିନିପାତିତେ ।**
**ବହୁଳେଷୁ ଚ ସୈନ୍ୟେଷୁ କ୍ଷୟିତେଷ୍ୱସୁରେଶ୍ୱରଃ ॥ ୨ ॥**
**ତତଃ କୋପପରାଧୀନଚେତାଃ ଶୁମ୍ଭଃ ପ୍ରତାପବାନ୍ ।**
**ଉଦ୍ୟୋଗଂ ସର୍ବସୈନ୍ୟାନାଂ ଦୈତ୍ୟାନାମାଦିଦେଶ ହ ॥ ୩ ॥**
**ଅଦ୍ୟ ସର୍ବବଳୈର୍ଦୈତ୍ୟାଃ ଷଡଶୀତିରୁଦାୟୁଧାଃ ।**
**କମ୍ବୂନାଂ ଚତୁରଶୀତିର୍ନିର୍ଯ୍ୟାନ୍ତୁ ସ୍ୱବଳୈର୍ବୃତାଃ ॥ ୪ ॥**
**କୋଟିବୀର୍ଯ୍ୟାଣି ପଞ୍ଚାଶଦସୁରାଣାଂ କୁଳାନି ବୈ ।**

---

ମୁଁ ଅଣିମା ଆଦି ସିଦ୍ଧିମୟୀ କିରଣଦ୍ୱାରା ଆବୃତ ଭବାନୀଙ୍କୁ ଧ୍ୟାନ କରୁଛି । ତାଙ୍କ ଶରୀରର ରଙ୍ଗ ରକ୍ତବର୍ଣ୍ଣ । ନେତ୍ରଗୁଡ଼ିକରେ କରୁଣାର ଭାବ ନିହିତ ଏବଂ ହସ୍ତରେ ପାଶ, ଅଙ୍କୁଶ, ବାଣ ଓ ଧନୁ ଶୋଭା ପାଉଛି ।

**ଋଷି କହିଲେ**—॥ ୧ ॥ ଚଣ୍ଡ ଓ ମୁଣ୍ଡ ନାମକ ଦୈତ୍ୟଙ୍କ ବଧ ଓ ବହୁତ ସେନାସଂହାର ହେବାପରେ ଦୈତ୍ୟମାନଙ୍କ ରାଜା ପ୍ରତାପୀ ଶୁମ୍ଭର ମନରେ ଅତି କ୍ରୋଧ ଜାତ ହେଲା ଏବଂ ସେ ଦୈତ୍ୟମାନଙ୍କ ସମସ୍ତ ସେନାକୁ ଯୁଦ୍ଧ ଯାତ୍ରା ନିମିତ୍ତ ଆଜ୍ଞା ପ୍ରଦାନ କଲା ॥ ୨-୩ ॥ ସେ କହିଲା—'ଆଜି ଉଦାୟୁଧ ନାମକ ଛୟାଅଶୀ ଜଣ ଦୈତ୍ୟସେନାପତି ନିଜ ସେନାକୁ ଧରି ଯୁଦ୍ଧ ନିମନ୍ତେ ଗମନ କରନ୍ତୁ । କମ୍ବୁ ନାମକ ଦୈତ୍ୟଙ୍କ ଚଉରାଶୀଜଣ ସେନାନାୟକ ନିଜ ବାହିନୀଦ୍ୱାରା ଆବୃତ ହୋଇ ଯାତ୍ରା କରନ୍ତୁ ॥ ୪ ॥ ପଚାଶଜଣ କୋଟିବୀର୍ଯ୍ୟକୁଳର

ଶତଂ କୁଳାନି ଧୌମ୍ରାଣାଂ ନିର୍ଗଚ୍ଛନ୍ତୁ ମମାଜ୍ଞୟା ॥ ୫ ॥
କାଳକା ଦୌର୍ହୃଦା ମୌର୍ଯ୍ୟାଃ କାଳକେୟାସ୍ତଥାସୁରାଃ ।
ଯୁଦ୍ଧାୟ ସଜ୍ଜା ନିର୍ଯ୍ୟାନ୍ତୁ ଆଜ୍ଞୟା ତ୍ୱରିତା ମମ ॥ ୬ ॥
ଇତ୍ୟାଜ୍ଞାପ୍ୟାସୁରପତିଃ ଶୁମ୍ଭୋ ଭୈରବଶାସନଃ ।
ନିର୍ଜଗାମ ମହାସୈନ୍ୟସହସ୍ରୈର୍ବହୁଭିର୍ବୃତଃ ॥ ୭ ॥
ଆୟାନ୍ତଂ ଚଣ୍ଡିକା ଦୃଷ୍ଟ୍ୱା ତତ୍ସୈନ୍ୟମତିଭୀଷଣମ୍ ।
ଜ୍ୟାସ୍ୱନୈଃ ପୂରୟାମାସ ଧରଣୀଗଗନାନ୍ତରମ୍ ॥ ୮ ॥
ତତଃ[1] ସିଂହୋ ମହାନାଦମତୀବ କୃତବାନ୍ ନୃପ ।
ଘଣ୍ଟାସ୍ୱନେନ ତନ୍ନାଦମମ୍ବିକା[2] ଚୋପବୃଂହୟତ୍ ॥ ୯ ॥
ଧନୁର୍ଜ୍ୟାସିଂହଘଣ୍ଟାନାଂ ନାଦାପୂରିତଦିଙ୍ମୁଖା ।
ନିନାଦୈର୍ଭୀଷଣୈଃ କାଳୀ ଜିଗ୍ୟେ ବିସ୍ତାରିତାନନା ॥ ୧୦ ॥

ଓ ଶହେ ଧୌମ୍ରକୁଳର ଅସୁରସେନାପତି ମୋ ଆଜ୍ଞାରେ ସେନାଙ୍କ ସହିତ ଯାତ୍ରା କରନ୍ତୁ ॥ ୫ ॥ କାଳକ, ଦୌର୍ହୃଦ, ମୌର୍ଯ୍ୟ ଓ କାଳକେୟ ଅସୁର ମଧ୍ୟ ଯୁଦ୍ଧ ନିମନ୍ତେ ପ୍ରସ୍ତୁତ ହୋଇ ମୋ ଆଜ୍ଞାରେ ଯଥାଶୀଘ୍ର ପ୍ରସ୍ଥାନ କରନ୍ତୁ' ॥ ୬ ॥ ଭୟଙ୍କର ଶାସନ କରୁଥିବା ଅସୁରରାଜ ଶୁମ୍ଭ ଏହିପ୍ରକାର ଆଜ୍ଞା ଦେବାରୁ ସହସ୍ର ସହସ୍ର ସେନାଗଣ ଯୁଦ୍ଧ ନିମନ୍ତେ ପ୍ରସ୍ଥିତ ହେଲେ ॥ ୭ ॥ ତାହାର ଅତ୍ୟନ୍ତ ଭୟଙ୍କର ସେନା ଆସୁଥିବାର ଦେଖି ଚଣ୍ଡିକା ନିଜ ଧନୁର ଟଙ୍କାରଦ୍ୱାରା ପୃଥିବୀ ଓ ଆକାଶର ମଧ୍ୟଭାଗ ଶବ୍ଦରେ ପରିପୂର୍ଣ୍ଣ କରିଦେଲେ ॥ ୮ ॥ ହେ ରାଜନ୍ ! ତାପରେ ଦେବୀଙ୍କ ସିଂହ ଭୀଷଣ ଗର୍ଜନ କରିବାକୁ ଆରମ୍ଭ କଲା । ପୁନଶ୍ଚ ଅମ୍ବିକା ଘଣ୍ଟାଶବ୍ଦରେ ଧ୍ୱନିକୁ ଆହୁରି ଅଧିକ ବଢ଼ାଇ ଦେଲେ ॥ ୯ ॥ ଧନୁର ଟଙ୍କାର, ସିଂହର ଗର୍ଜନ ଓ ଘଣ୍ଟାଧ୍ୱନିରେ ସମସ୍ତ ଦିଗ ଗୁଞ୍ଜରିତ ହେଲା । ସେହି ଭୟଙ୍କର ଶବ୍ଦରେ କାଳୀ ନିଜ ବିକରାଳ ମୁଖକୁ ଆହୁରି ବିସ୍ତାର କଲେ । ଏହିପ୍ରକାର ସେ ବିଜୟିନୀ ହେଲେ ॥ ୧୦ ॥

୧. ପା.—ସ ଚ । ୨. ପା.—ତାନ୍ନାଦାନମ୍ବିକା ।

ତଂ ନିନାଦମୁପଶ୍ରୁତ୍ୟ ଦୈତ୍ୟସୈନ୍ୟୈଶ୍ଚତୁର୍ଦ୍ଦିଶମ୍ ।
ଦେବୀ ସିଂହସ୍ତଥା କାଳୀ ସରୋଷୈଃ ପରିବାରିତାଃ ॥ ୧୧ ॥
ଏତସ୍ମିନ୍ନନ୍ତରେ ଭୂପ ବିନାଶାୟ ସୁରଦ୍ୱିଷାମ୍ ।
ଭବାୟାମରସିଂହାନାମତିବୀର୍ଯ୍ୟବଳାନ୍ୱିତାଃ ॥ ୧୨ ॥
ବ୍ରହ୍ମେଶଗୁହବିଷ୍ଣୂନାଂ ତଥେନ୍ଦ୍ରସ୍ୟ ଚ ଶକ୍ତୟଃ ।
ଶରୀରେଭ୍ୟୋ ବିନିଷ୍କ୍ରମ୍ୟ ତଦ୍ରୂପୈଶ୍ଚଣ୍ଡିକାଂ ଯୟୁଃ ॥ ୧୩ ॥
ଯସ୍ୟ ଦେବସ୍ୟ ଯଦ୍ରୂପଂ ଯଥାଭୂଷଣବାହନମ୍ ।
ତଦ୍ୱଦେବ ହି ତଚ୍ଛକ୍ତିରସୁରାନ୍ ଯୋଦ୍ଧୁମାୟଯୌ ॥ ୧୪ ॥
ହଂସଯୁକ୍ତବିମାନାଗ୍ରେ ସାକ୍ଷସୂତ୍ରକମଣ୍ଡଲୁଃ ।
ଆୟାତା ବ୍ରହ୍ମଣଃ ଶକ୍ତିର୍ବ୍ରହ୍ମାଣୀ ସାଭିଧୀୟତେ ॥ ୧୫ ॥
ମାହେଶ୍ୱରୀ ବୃଷାରୂଢା ତ୍ରିଶୂଳବରଧାରିଣୀ ।
ମହାହିବଳୟା ପ୍ରାପ୍ତା ଚନ୍ଦ୍ରରେଖାବିଭୂଷଣା ॥ ୧୬ ॥
କୌମାରୀ ଶକ୍ତିହସ୍ତା ଚ ମୟୂରବରବାହନା ।

---

ସେହି ତୁମୁଳ ନାଦକୁ ଶୁଣି ଦୈତ୍ୟମାନଙ୍କ ସେନା ଚତୁର୍ଦ୍ଦିଗରୁ ଆସି ଚଣ୍ଡିକା ଦେବୀ, ସିଂହ ତଥା କାଳୀଦେବୀଙ୍କୁ କ୍ରୋଧପୂର୍ବକ ଘେରିଗଲେ ॥ ୧୧ ॥ ହେ ରାଜନ୍ ! ଇତି ମଧ୍ୟରେ ଅସୁରଙ୍କ ବିନାଶ ତଥା ଦେବତାଙ୍କ ଅଭ୍ୟୁଦୟ ନିମନ୍ତେ ବ୍ରହ୍ମା, ଶିବ, କାର୍ତ୍ତିକେୟ, ବିଷ୍ଣୁ ତଥା ଇନ୍ଦ୍ର ଆଦି ଦେବତାଙ୍କ ଶକ୍ତି, ଯାହା ଅତ୍ୟନ୍ତ ପରାକ୍ରମ ଓ ବଳସମ୍ପନ୍ନ ଥିଲା; ସେମାନଙ୍କ ଶରୀରରୁ ବାହାରି ସେହିମାନଙ୍କ ରୂପରେ ଚଣ୍ଡିକାଦେବୀଙ୍କ ପାଖକୁ ଗଲେ ॥ ୧୨-୧୩ ॥ ଯେଉଁ ଦେବତାଙ୍କ ଯେଉଁପରି ରୂପ, ଯେପରି ବେଶଭୂଷା ଓ ଯେପରି ବାହନ; ଠିକ୍ ସେହିପରି ସାଧନସମ୍ପନ୍ନ ହୋଇ ତାହାଙ୍କ ଶକ୍ତି ଅସୁରମାନଙ୍କ ସହ ଯୁଦ୍ଧ କରିବାକୁ ଆସିଲେ ॥ ୧୪ ॥ ସର୍ବପ୍ରଥମେ ହଂସଯୁକ୍ତ ବିମାନ ଉପରେ ବସିଥିବା ଅକ୍ଷସୂତ୍ର ଓ କମଣ୍ଡଳୁଦ୍ୱାରା ସୁଶୋଭିତା ବ୍ରହ୍ମାଙ୍କ ଶକ୍ତି ଉପସ୍ଥିତ ହେଲେ । ତାହାଙ୍କୁ ବ୍ରହ୍ମାଣୀ କୁହାଯାଏ ॥ ୧୫ ॥ ମହାଦେବଙ୍କ ଶକ୍ତି ବୃଷଭ ଉପରେ ଆରୂଢ଼ ହୋଇ ହସ୍ତରେ ଶ୍ରେଷ୍ଠ ତ୍ରିଶୂଳ ଧାରଣ କରି ମହାନାଗର କଙ୍କଣ ପରିଧାନ କରି ମସ୍ତକରେ ଚନ୍ଦ୍ରରେଖାଦ୍ୱାରା ବିଭୂଷିତ ହୋଇ ସେଠାରେ ଆସି ପହଞ୍ଚିଲେ ॥ ୧୬ ॥ କାର୍ତ୍ତିକେୟଙ୍କ ଶକ୍ତିରୂପା ଜଗଦମ୍ବିକା ତାଙ୍କରି ରୂପ ଧାରଣ କରି ଶ୍ରେଷ୍ଠ ମୟୂର

ଯୋଦ୍ଧୁମଭ୍ୟାଯଯୌ ଦୈତ୍ୟାନମ୍ବିକା ଗୁହରୂପିଣୀ ॥ ୧୭ ॥
ତଥୈବ ବୈଷ୍ଣବୀ ଶକ୍ତିର୍ଗରୁଡୋପରି ସଂସ୍ଥିତା ।
ଶଙ୍ଖଚକ୍ରଗଦାଶାର୍ଙ୍ଗଖଡ୍‌ଗହସ୍ତାଭ୍ୟୁପାଯଯୌ ॥ ୧୮ ॥
ଯଜ୍ଞ[1]ବାରାହମତୁଳଂ ରୂପଂ ଯା ବିଭ୍ରତୋ[2] ହରେଃ ।
ଶକ୍ତିଃ ସାପ୍ୟାଯଯୌ ତତ୍ର ବାରାହୀଂ ବିଭ୍ରତୀ ତନୁମ୍ ॥ ୧୯ ॥
ନାରସିଂହୀ ନୃସିଂହସ୍ୟ ବିଭ୍ରତୀ ସଦୃଶଂ ବପୁଃ ।
ପ୍ରାପ୍ତା ତତ୍ର ସଟାକ୍ଷେପକ୍ଷିପ୍ତନକ୍ଷତ୍ରସଂହତିଃ ॥ ୨୦ ॥
ବଜ୍ରହସ୍ତା ତଥୈବୈନ୍ଦ୍ରୀ ଗଜରାଜୋପରି ସ୍ଥିତା ।
ପ୍ରାପ୍ତା ସହସ୍ରନୟନା ଯଥା ଶକ୍ରସ୍ତଥୈବ ସା ॥ ୨୧ ॥
ତତଃ ପରିବୃତସ୍ତାଭିରୀଶାନୋ ଦେବଶକ୍ତିଭିଃ ।
ହନ୍ୟନ୍ତାମସୁରାଃ ଶୀଘ୍ରଂ ମମ ପ୍ରୀତ୍ୟାଽଽହ ଚଣ୍ଡିକାମ୍ ॥ ୨୨ ॥
ତତୋ ଦେବୀଶରୀରାତ୍ତୁ ବିନିଷ୍କ୍ରାନ୍ତାତିଭୀଷଣା ।
ଚଣ୍ଡିକାଶକ୍ତିରତ୍ୟୁଗ୍ରା ଶିବାଶତନିନାଦିନୀ ॥ ୨୩ ॥

ଉପରେ ଆରୂଢ଼ ହୋଇ ହସ୍ତରେ ଶକ୍ତି ଧାରଣ କରି ଦୈତ୍ୟଙ୍କ ସହ ଯୁଦ୍ଧ କରିବା ପାଇଁ ଆସିଲେ ॥ ୧୭ ॥ ଏହିପ୍ରକାର ଭଗବାନ୍ ବିଷ୍ଣୁଙ୍କ ଶକ୍ତି ଗରୁଡ଼ ଉପରେ ବିରାଜମାନ ହୋଇ ଶଙ୍ଖ, ଚକ୍ର, ଗଦା, ଶାର୍ଙ୍ଗଧନୁ ତଥା ଖଡ୍‌ଗ ହସ୍ତରେ ଧରି ସେଠାକୁ ଆସିଲେ ॥ ୧୮ ॥ ଅନୁପମ ଯଜ୍ଞବାରାହର ରୂପ ଧାରଣ କରିଥିବା ଶ୍ରୀହରିଙ୍କ ଯେଉଁ ଶକ୍ତି ଅଛି; ସେ ମଧ୍ୟ ବାରାହଶରୀର ଧାରଣ କରି ସେଠାରେ ଉପସ୍ଥିତ ହେଲେ ॥ ୧୯ ॥ ନାରସିଂହୀ ଶକ୍ତି ମଧ୍ୟ ନୃସିଂହଙ୍କ ସମାନ ଶରୀର ଧାରଣ କରି ସେଠାକୁ ଆସିଲେ । ତାଙ୍କର କାନ୍ଧରେ ଥିବା କେଶର ଆଘାତରେ ଆକାଶରେ ତାରା ବିଚ୍ଛୁରିତ ହେଉଥିଲେ ॥ ୨୦ ॥ ଏହିପ୍ରକାର ଇନ୍ଦ୍ରଙ୍କ ଶକ୍ତି ହସ୍ତରେ ବଜ୍ର ଧରି ଗଜରାଜ ଐରାବତ ଉପରେ ବସି ଆସିଲେ । ତାଙ୍କର ସହସ୍ର ନେତ୍ର ଥିଲା । ଇନ୍ଦ୍ରଙ୍କର ରୂପ ପରି ତାଙ୍କର ରୂପ ଥିଲା ॥ ୨୧ ॥

ତାପରେ ସେହି ଦେବଶକ୍ତିମାନଙ୍କଦ୍ୱାରା ଆବୃତ ମହାଦେବ ଚଣ୍ଡିକାଙ୍କୁ କହିଲେ—'ମୋର ପ୍ରସନ୍ନତା ପାଇଁ ତୁମେ ଅବିଳମ୍ବେ ଏହି ଅସୁରମାନଙ୍କୁ ସଂହାର କର' ॥ ୨୨ ॥ ସେତେବେଳେ ଦେବୀଙ୍କ ଶରୀରରୁ ଅତ୍ୟନ୍ତ ଭୟଙ୍କର

୧. ପା.—ଜଜ୍ଞେ ବାରାହ. । ୨. ପା.—ତୀ ।

ସା ଗ୍ରହ ଧୂମ୍ରଜଟିଳମୀଶାନମପରାଜିତା ।
ଦୂତ ତ୍ୱଂ ଗଚ୍ଛ ଭଗବନ୍ ପାର୍ଶ୍ୱଂ ଶୁମ୍ଭନିଶୁମ୍ଭୟୋଃ ॥ ୨୪ ॥
ବ୍ରୂହି ଶୁମ୍ଭଂ ନିଶୁମ୍ଭଂ ଚ ଦାନବାବତିଗର୍ବିତୌ ।
ଯେ ଚାନ୍ୟେ ଦାନବାସ୍ତତ୍ର ଯୁଦ୍ଧାୟ ସମୁପସ୍ଥିତାଃ ॥ ୨୫ ॥
ତ୍ରୈଲୋକ୍ୟମିନ୍ଦ୍ରୋ ଲଭତାଂ ଦେବାଃ ସନ୍ତୁ ହବିର୍ଭୁଜଃ ।
ଯୂୟଂ ପ୍ରୟାତ ପାତାଳଂ ଯଦି ଜୀବିତୁମିଚ୍ଛଥ ॥ ୨୬ ॥
ବଳାବଲେପାଦଥ ଚେଦ୍ ଭବନ୍ତୋ ଯୁଦ୍ଧକାଙ୍କ୍ଷିଣଃ ।
ତଦାଗଚ୍ଛତ ତୃପ୍ୟନ୍ତୁ ମଚ୍ଛିବାଃ ପିଶିତେନ ବଃ ॥ ୨୭ ॥
ଯତୋ ନିଯୁକ୍ତୋ ଦୌତ୍ୟେନ ତୟା ଦେବ୍ୟା ଶିବଃ ସ୍ୱୟମ୍ ।
ଶିବଦୂତୀତି ଲୋକେଽସ୍ମିଂସ୍ତତଃ ସା ଖ୍ୟାତିମାଗତା ॥ ୨୮ ॥
ତେଽପି ଶ୍ରୁତ୍ୱା ବଚୋ ଦେବ୍ୟାଃ ଶର୍ବାଖ୍ୟାତଂ ମହାସୁରାଃ ।
ଅମର୍ଷାପୂରିତା ଜଗ୍ମୁର୍ଯତ୍ର[୧] କାତ୍ୟାୟନୀ ସ୍ଥିତା ॥ ୨୯ ॥

ଓ ପରମ ଉଗ୍ର ଚଣ୍ଡିକା-ଶକ୍ତି ପ୍ରକଟ ହେଲେ । ସେମାନେ ଶହ ଶହ ବିଲୁଆଙ୍କ ସଦୃଶ ଶବ୍ଦ କରୁଥିଲେ ॥ ୨୩ ॥ ସେହି ଅପରାଜିତା ଦେବୀ ଧୂମିଳ ଜଟାଯୁକ୍ତ ମହାଦେବଙ୍କୁ କହିଲେ—"ହେ ଭଗବନ୍ ! ଆପଣ ଶୁମ୍ଭ-ନିଶୁମ୍ଭଙ୍କ ନିକଟକୁ ଦୂତ ହୋଇ ଯାଆନ୍ତୁ ॥ ୨୪ ॥ ସେହି ଅତ୍ୟନ୍ତ ଗର୍ବିତ ଦାନବ ଶୁମ୍ଭ ଓ ନିଶୁମ୍ଭ ଦୁହିଁଙ୍କୁ କହନ୍ତୁ । ତା'ସହିତ ସେମାନଙ୍କ ଅତିରିକ୍ତ ଯେଉଁ ସବୁ ଦାନବ ଯୁଦ୍ଧପାଇଁ ସେଠାରେ ଉପସ୍ଥିତ ଥିବେ; ସେମାନଙ୍କୁ ଏହି ସନ୍ଦେଶ ପ୍ରଦାନ କରନ୍ତୁ ॥ ୨୫ ॥ 'ହେ ଦୈତ୍ୟଗଣ ! ଯଦି ତୁମେ ଜୀବିତ ରହିବାକୁ ଚାହଁ; ତେବେ ପାତାଳକୁ ପ୍ରତ୍ୟାବର୍ତ୍ତନ କର । ଇନ୍ଦ୍ରଙ୍କୁ ତ୍ରିଲୋକର ରାଜ୍ୟ ପ୍ରାପ୍ତ ହେଉ ଓ ଦେବତାମାନେ ଯଜ୍ଞଭାଗକୁ ଉପଭୋଗ କରନ୍ତୁ ॥ ୨୬ ॥ ଯଦି ବଳର ଗର୍ବରେ ତୁମେ ଯୁଦ୍ଧର ଅଭିଳାଷ ରଖିଛ; ତେବେ ଆସ । ମୋ ଶିବାମାନେ (ଯୋଗିନୀମାନେ) ତୁମ୍ଭର କଞ୍ଚା ମାଂସଦ୍ୱାରା ତୃପ୍ତ ହେବେ" ॥ ୨୭ ॥ ଯେହେତୁ ସେହି ଦେବୀ ଭଗବାନ୍ ଶିବଙ୍କୁ ଦୂତର କାର୍ଯ୍ୟରେ ନିଯୁକ୍ତ କରିଥିଲେ; ତେଣୁ ସେ 'ଶିବଦୂତୀ' ନାମରେ ସଂସାରରେ ବିଖ୍ୟାତ ହେଲେ ॥ ୨୮ ॥ ସେହି ମହାଦୈତ୍ୟମାନେ ଭଗବାନ୍ ଶିବଙ୍କ ମୁଖରୁ ଦେବୀଙ୍କ ବଚନ ଶ୍ରବଣ କରି କ୍ରୋଧରେ ପରିପୂର୍ଣ୍ଣ ହେଲେ ଏବଂ ଯେଉଁଠାରେ କାତ୍ୟାୟନୀ ବିରାଜମାନ ଥିଲେ; ସେହି ଆଡ଼କୁ ଗମନ

୧. ପା.—ଜଗ୍ମୁର୍ଯତଃ ।

ତତଃ ପ୍ରଥମମେବାଗ୍ରେ ଶରଶକ୍ତ୍ୟୃଷ୍ଟିବୃଷ୍ଟିଭିଃ ।
ବବର୍ଷୁରୁଦ୍ଧତାମର୍ଷାସ୍ତାଂ ଦେବୀମମରାରୟଃ ॥ ୩୦ ॥
ସା ଚ ତାନ୍ ପ୍ରହିତାନ୍ ବାଣାଞ୍ଛୂଳଶକ୍ତିପରଶ୍ୱଧାନ୍ ।
ଚିଚ୍ଛେଦ ଲୀଳୟାଽଽଧ୍ମାତଧନୁର୍ମୁକ୍ତୈର୍ମହେଷୁଭିଃ ॥ ୩୧ ॥
ତସ୍ୟାଗ୍ରତସ୍ତଥା କାଳୀ ଶୂଳପାତବିଦାରିତାନ୍ ।
ଖଟ୍ୱାଙ୍ଗପୋଥିତାଂଶ୍ଚାରୀନ୍ କୁର୍ବତୀ ବ୍ୟଚରତ୍ତଦା ॥ ୩୨ ॥
କମଣ୍ଡଳୁଜଳାକ୍ଷେପହତବୀର୍ଯ୍ୟାନ୍ ହତୌଜସଃ ।
ବ୍ରହ୍ମାଣୀ ଚାକରୋଚ୍ଛତ୍ରୂନ୍ ଯେନ ଯେନ ସ୍ମ ଧାବତି ॥ ୩୩ ॥
ମାହେଶ୍ୱରୀ ତ୍ରିଶୂଳେନ ତଥା ଚକ୍ରେଣ ବୈଷ୍ଣବୀ ।
ଦୈତ୍ୟାଞ୍ଜଘାନ କୌମାରୀ ତଥା ଶକ୍ତ୍ୟାତିକୋପନା ॥ ୩୪ ॥
ଐନ୍ଦ୍ରୀକୁଳିଶପାତେନ ଶତଶୋ ଦୈତ୍ୟଦାନବାଃ ।
ପେତୁର୍ବିଦାରିତାଃ ପୃଥ୍ୱ୍ୟାଂ ରୁଧିରୌଘପ୍ରବର୍ଷିଣଃ ॥ ୩୫ ॥
ତୁଣ୍ଡପ୍ରହାରବିଧ୍ୱସ୍ତା ଦଂଷ୍ଟ୍ରାଗ୍ରକ୍ଷତବକ୍ଷସଃ ।

---

କଲେ ॥ ୨୯ ॥ ତାପରେ ସେହି ଦୈତ୍ୟମାନେ ଗର୍ବରେ ଉନ୍ମତ୍ତ ହୋଇ ପ୍ରଥମେ ଦେବୀଙ୍କ ଉପରକୁ ବାଣ, ଶକ୍ତି ଓ ଋଷ୍ଟି ଆଦି ଅସ୍ତ୍ରଗୁଡ଼ିକୁ ନିକ୍ଷେପ କରିବାକୁ ଲାଗିଲେ ॥ ୩୦ ॥ ସେତେବେଳେ ଦେବୀ ମଧ୍ୟ ଅନାୟାସରେ ଧନୁ ଟଙ୍କାର କଲେ ଏବଂ ତାହାଦ୍ୱାରା ବଡ଼ ବଡ଼ ବାଣ ସନ୍ଧାନ କରି ଦୈତ୍ୟମାନଙ୍କ ନିକ୍ଷିପ୍ତ ବାଣ, ଶୂଳ, ଶକ୍ତି ଏବଂ ଫାର୍ଶାକୁ କାଟିଦେଲେ ॥ ୩୧ ॥ ପୁନଶ୍ଚ କାଳୀ ତାଙ୍କର ଅଗ୍ରଭାଗରେ ରହି ଶତ୍ରୁମାନଙ୍କୁ ଶୂଳ ପ୍ରହାରଦ୍ୱାରା ବିଦୀର୍ଣ୍ଣ କରିବାକୁ ଲାଗିଲେ ଏବଂ ଖଟ୍ୱାଙ୍ଗଦ୍ୱାରା ସେମାନଙ୍କୁ ନିପାତ କରି ରଣଭୂମିରେ ବିଚରଣ କରିବାକୁ ଲାଗିଲେ ॥ ୩୨ ॥ ବ୍ରହ୍ମାଣୀ ମଧ୍ୟ ଯେଉଁ ଯେଉଁ ଦିଗକୁ ଦଉଡ଼ିଲେ; ସେହି ସେହି ଦିଗକୁ ନିଜ କମଣ୍ଡଳୁର ଜଳ ସିଞ୍ଚନ କରି ଶତ୍ରୁମାନଙ୍କ ବଳ ଓ ପରାକ୍ରମକୁ ନଷ୍ଟ କରି ଦେଉଥିଲେ ॥ ୩୩ ॥ ମାହେଶ୍ୱରୀ ତ୍ରିଶୂଳରେ ତଥା ବୈଷ୍ଣବୀ ଚକ୍ରରେ ଏବଂ ଅତ୍ୟନ୍ତ କ୍ରୋଧଭର ହୋଇ କୁମାର କାର୍ତ୍ତିକେୟଙ୍କ ଶକ୍ତି ଶକ୍ତିଅସ୍ତ୍ରଦ୍ୱାରା ଦୈତ୍ୟମାନଙ୍କୁ ସଂହାର କରିବାକୁ ଆରମ୍ଭ କଲେ ॥ ୩୪ ॥ ଇନ୍ଦ୍ରଶକ୍ତିଙ୍କ ବଜ୍ରପ୍ରହାରରେ ବିଦୀର୍ଣ୍ଣ ହୋଇ ସହସ୍ର ଦୈତ୍ୟ-ଦାନବ ରକ୍ତର ଧାରା ପ୍ରବାହିତ କରି ପୃଥିବୀ ଉପରେ ମରି ଶୋଇଲେ ॥ ୩୫ ॥ ବାରାହୀ ଶକ୍ତି କେତେକଙ୍କୁ ନିଜ ତୁଣ୍ଡ ପ୍ରହାରରେ ମାରି ନଷ୍ଟ କଲେ । ଚିବୁକର ଅଗ୍ରଭାଗଦ୍ୱାରା

ବାରାହମୂର୍ତ୍ତ୍ୟା ନ୍ୟପତଂଶ୍ଚକ୍ରେଣ ଚ ବିଦାରିତାଃ ॥ ୩୬ ॥
ନଖୈର୍ବିଦାରିତାଂଶ୍ଚାନ୍ୟାନ୍ ଭକ୍ଷୟନ୍ତୀ ମହାସୁରାନ୍ ।
ନାରସିଂହୀ ଚଚାରାଜୌ ନାଦାପୂର୍ଣ୍ଣଦିଗମ୍ବରା ॥ ୩୭ ॥
ଚଣ୍ଡାଟ୍ଟହାସୈରସୁରାଃ ଶିବଦୂତ୍ୟଭିଦୂଷିତାଃ ।
ପେତୁଃ ପୃଥିବ୍ୟାଂ ପତିତାଂସ୍ତାଂଶ୍ଚଖାଦାଥ ସା ତଦା ॥ ୩୮ ॥
ଇତି ମାତୃଗଣଂ କ୍ରୁଦ୍ଧଂ ମର୍ଦୟନ୍ତଂ ମହାସୁରାନ୍ ।
ଦୃଷ୍ଟ୍ୱାଭ୍ୟୁପାୟୈର୍ବିବିଧୈର୍ନେଶୁର୍ଦେବାରିସୈନିକାଃ ॥ ୩୯ ॥
ପଲାୟନପରାନ୍ ଦୃଷ୍ଟ୍ୱା ଦୈତ୍ୟାନ୍ ମାତୃଗଣାର୍ଦିତାନ୍ ।
ଯୋଦ୍ଧୁମଭ୍ୟାଯଯୌ କ୍ରୁଦ୍ଧୋ ରକ୍ତବୀଜୋ ମହାସୁରଃ ॥ ୪୦ ॥
ରକ୍ତବିନ୍ଦୁର୍ଯଦା ଭୂମୌ ପତତ୍ୟସ୍ୟ ଶରୀରତଃ ।
ସମୁତ୍ପତତି ମେଦିନ୍ୟାଂ[୧] ତତ୍ପ୍ରମାଣସ୍ତଦାସୁରଃ ॥ ୪୧ ॥

କେତେକଙ୍କ ବକ୍ଷଃସ୍ଥଳ ଚିରି ଦେଲେ ତଥା କେତେକ ଦୈତ୍ୟ ତାଙ୍କର ଚକ୍ରାଘାତରେ ବିଦୀର୍ଣ୍ଣ ହୋଇ ତଳେ ପଡ଼ିଲେ ॥ ୩୬ ॥ ନାରସିଂହୀ ମଧ୍ୟ ଅନ୍ୟ ମହାଦୈତ୍ୟଙ୍କୁ ନିଜ ନଖରେ ବିଦୀର୍ଣ୍ଣ କରି ଭକ୍ଷଣ କଲେ ଏବଂ ସିଂହନାଦରେ ଦିଗ ଓ ଆକାଶକୁ କମ୍ପାଇ ଦେଇ ଯୁଦ୍ଧକ୍ଷେତ୍ରରେ ବିଚରଣ କଲେ ॥ ୩୭ ॥ କେତେକ ଅସୁର ଶିବଦୂତୀଙ୍କ ପ୍ରଚଣ୍ଡ ଅଟ୍ଟହାସ୍ୟରେ ଅତ୍ୟନ୍ତ ଭୟଭୀତ ହୋଇ ପୃଥିବୀରେ ଟଳି ପଡ଼ିଲେ । ତଳେ ପଡ଼ିବା ପରେ ସେମାନଙ୍କୁ ଶିବଦୂତୀ ସେହି ସମୟରେ ଗ୍ରାସ କଲେ ॥ ୩୮ ॥

ଏହିପ୍ରକାର କ୍ରୋଧାନ୍ୱିତା ମାତୃଗଣ ନାନା ପ୍ରକାର ଉପାୟଦ୍ୱାରା ବଡ଼ ବଡ଼ ଅସୁରଙ୍କୁ ମର୍ଦ୍ଦନ କରୁଥିବା ଦେଖି ଦୈତ୍ୟସୈନିକ ପୃଷ୍ଠଭଙ୍ଗ ଦେଲେ ॥ ୩୯ ॥ ମାତୃଗଣଦ୍ୱାରା ପୀଡ଼ିତ ଦୈତ୍ୟମାନଙ୍କୁ ଯୁଦ୍ଧରୁ ପୃଷ୍ଠଭଙ୍ଗ ଦେବାର ଦେଖି ରକ୍ତବୀଜ ନାମକ ମହାଦୈତ୍ୟ କ୍ରୋଧଭର ହୋଇ ଯୁଦ୍ଧ କରିବାପାଇଁ ଆସିଲା ॥ ୪୦ ॥ ତାହାର ଶରୀରରୁ ଯେତେବେଳେ ରକ୍ତବିନ୍ଦୁ ପୃଥିବୀ ଉପରେ ପଡୁଥିଲା; ସେତେବେଳେ ତାହା ସମାନ ଶକ୍ତିଶାଳୀ ଅନ୍ୟ ଏକ ମହାଦୈତ୍ୟ ପୃଥିବୀରେ ଜାତ ହେଉଥିଲା ॥ ୪୧ ॥

୧. ପା.—ନ୍ୟାସ୍ତ. ।

ଯୁଯୁଧେ ସ ଗଦାପାଣିରିନ୍ଦ୍ରଶକ୍ତ୍ୟା ମହାସୁରଃ ।
ତତଶ୍ଚୈନ୍ଦ୍ରୀ ସ୍ୱବଜ୍ରେଣ ରକ୍ତବୀଜମତାଡୟତ୍ ॥ ୪୨ ॥
କୁଲିଶେନାହତସ୍ୟାଶୁ ବହୁ[୧] ସୁସ୍ରାବ ଶୋଣିତମ୍ ।
ସମୁତ୍ତସ୍ଥୁସ୍ତତୋ ଯୋଧାସ୍ତଦ୍ରୂପାସ୍ତତ୍ପରାକ୍ରମାଃ ॥ ୪୩ ॥
ଯାବନ୍ତଃ ପତିତାସ୍ତସ୍ୟ ଶରୀରାଦ୍ରକ୍ତବିନ୍ଦବଃ ।
ତାବନ୍ତଃ ପୁରୁଷା ଜାତାସ୍ତଦ୍‌ବୀର୍ଯ୍ୟବଲବିକ୍ରମାଃ ॥ ୪୪ ॥
ତେ ଚାପି ଯୁଯୁଧୁସ୍ତତ୍ର ପୁରୁଷା ରକ୍ତସମ୍ଭବାଃ ।
ସମଂ ମାତୃଭିରତ୍ୟୁଗ୍ରଶସ୍ତ୍ରପାତାତିଭୀଷଣମ୍ ॥ ୪୫ ॥
ପୁନଶ୍ଚ ବଜ୍ରପାତେନ କ୍ଷତମସ୍ୟ ଶିରୋ ଯଦା ।
ବବାହ ରକ୍ତଂ ପୁରୁଷାସ୍ତତୋ ଜାତାଃ ସହସ୍ରଶଃ ॥ ୪୬ ॥
ବୈଷ୍ଣବୀ ସମରେ ଚୈନଂ ଚକ୍ରେଣାଭିଜଘାନ ହ ।
ଗଦୟା ତାଡୟାମାସ ଐନ୍ଦ୍ରୀ ତମସୁରେଶ୍ୱରମ୍ ॥ ୪୭ ॥

ମହାସୁର ରକ୍ତବୀଜ ହସ୍ତରେ ଗଦା ଧରି ଇନ୍ଦ୍ରଶକ୍ତି ସହିତ ଯୁଦ୍ଧ କଲା । ସେତେବେଳେ ଐନ୍ଦ୍ରୀ ନିଜ ବଜ୍ରଦ୍ୱାରା ରକ୍ତବୀଜକୁ ଆଘାତ କଲେ ॥ ୪୨ ॥ ବଜ୍ରଦ୍ୱାରା ଆହତ ହେବା ପରେ ତାହାର ଶରୀରରୁ ଅନେକ ରକ୍ତ ଝରିଲା ଏବଂ ସେଥିରୁ ତାହା ସମାନ ରୂପ ତଥା ପରାକ୍ରମଯୁକ୍ତ ଯୋଦ୍ଧା ଉତ୍ପନ୍ନ ହେବାକୁ ଲାଗିଲେ ॥ ୪୩ ॥ ତା ଶରୀରରୁ ଯେତେ ରକ୍ତବିନ୍ଦୁ ତଳେ ପଡ଼ିଲା; ସେଠାରେ ସେତିକି ପୁରୁଷ ଉତ୍ପନ୍ନ ହୋଇଥିଲେ । ସେମାନେ ସବୁ ରକ୍ତବୀଜସଦୃଶ ବୀର୍ଯ୍ୟବାନ୍, ବଳବାନ୍ ତଥା ପରାକ୍ରମୀ ଥିଲେ ॥ ୪୪ ॥ ରକ୍ତରୁ ଉତ୍ପନ୍ନ ହୋଇଥିବା ସେହି ପୁରୁଷମାନେ ମଧ୍ୟ ଅତ୍ୟନ୍ତ ଭୟଙ୍କର ଅସ୍ତ୍ର-ଶସ୍ତ୍ରକୁ ପ୍ରହାର କରି ସେଠାରେ ମାତୃଗଣଙ୍କ ସହ ଘୋର ଯୁଦ୍ଧ କରିବାକୁ ଲାଗିଲେ ॥ ୪୫ ॥ ପୁନଃ ବଜ୍ରପ୍ରହାରରେ ଯେତେବେଳେ ତାହାର ମସ୍ତକ ଆଘାତପ୍ରାପ୍ତ ହେଲା; ସେତେବେଳେ ରକ୍ତ ବହିବାକୁ ଲାଗିଲା ଏବଂ ସେଥିରୁ ହଜାର ହଜାର ପୁରୁଷ ଉତ୍ପନ୍ନ ହେଲେ ॥ ୪୬ ॥ ବୈଷ୍ଣବୀ ଯୁଦ୍ଧକ୍ଷେତ୍ରରେ ରକ୍ତବୀଜ ଉପରେ ଚକ୍ର ପ୍ରହାର କଲେ ତଥା ଐନ୍ଦ୍ରୀ ସେହି ଦୈତ୍ୟସେନାପତିକୁ ଗଦାରେ ଆଘାତ ଦେଲେ ॥ ୪୭ ॥

୧. ପା.—ତସ୍ୟ ।

ବୈଷ୍ଣବୀଚକ୍ରଭିନ୍ନସ୍ୟ ରୁଧିରସ୍ରାବସମ୍ଭବୈଃ ।
ସହସ୍ରଶୋ ଜଗଦ୍‌ବ୍ୟାପ୍ତଂ ତତ୍‌ପ୍ରମାଣୈର୍ମହାସୁରୈଃ ॥ ୪୮ ॥
ଶକ୍ତ୍ୟା ଜଘାନ କୌମାରୀ ବାରାହୀ ଚ ତଥାସିନା ।
ମାହେଶ୍ୱରୀ ତ୍ରିଶୂଳେନ ରକ୍ତବୀଜଂ ମହାସୁରମ୍ ॥ ୪୯ ॥
ସ ଚାପି ଗଦୟା ଦୈତ୍ୟଃ ସର୍ବା ଏବାହନତ୍ ପୃଥକ୍ ।
ମାତୃଃ କୋପସମାବିଷ୍ଟୋ ରକ୍ତବୀଜୋ ମହାସୁରଃ ॥ ୫୦ ॥
ତସ୍ୟାହତସ୍ୟ ବହୁଧା ଶକ୍ତିଶୂଳାଦିଭିର୍ଭୁବି ।
ପପାତ ଯୋ ବୈ ରକ୍ତୌଘସ୍ତେନାସଞ୍ଛତଶୋଽସୁରାଃ ॥ ୫୧ ॥
ତୈଶ୍ଚାସୁରାସୃକ୍‌ସମ୍ଭୂତୈରସୁରୈଃ ସକଳଂ ଜଗତ୍ ।
ବ୍ୟାପ୍ତମାସୀତ୍ତତୋ ଦେବା ଭୟମାଜଗ୍ମୁରୁତ୍ତମମ୍ ॥ ୫୨ ॥
ତାନ୍ ବିଷଣ୍ଣାନ୍ ସୁରାନ୍ ଦୃଷ୍ଟ୍ୱା ଚଣ୍ଡିକା ପ୍ରାହ ସତ୍ୱରା ।
ଉବାଚ କାଳୀଂ ଚାମୁଣ୍ଡେ ବିସ୍ତୀର୍ଣ୍ଣଂ[୧] ବଦନଂ କୁରୁ ॥ ୫୩ ॥

---

ବୈଷ୍ଣବୀଙ୍କ ଚକ୍ରରେ ଆଘାତପ୍ରାପ୍ତ ହୋଇ ତା ଶରୀରରୁ ରକ୍ତ ପ୍ରବାହିତ ହେଲା । ସେଥିରୁ ତାହା ସମାନ ଆକାରଯୁକ୍ତ ସହସ୍ର ସହସ୍ର ମହାଦୈତ୍ୟ ପ୍ରକଟ ହେଲେ । ସେମାନଙ୍କ ଦ୍ୱାରା ସମଗ୍ର ଜଗତ୍ ବ୍ୟାପ୍ତ ହୋଇଗଲା ॥ ୪୮ ॥ କୌମାରୀ ଶକ୍ତିଦ୍ୱାରା, ବାରାହୀ ଖଡ୍‌ଗଦ୍ୱାରା ଏବଂ ମାହେଶ୍ୱରୀ ତ୍ରିଶୂଳଦ୍ୱାରା ମହାଦୈତ୍ୟ ରକ୍ତବୀଜକୁ ଆଘାତ କଲେ ॥ ୪୯ ॥ କ୍ରୋଧପୂର୍ଣ୍ଣ ହୋଇ ସେହି ମହାଦୈତ୍ୟ ରକ୍ତବୀଜ ମଧ୍ୟ ଗଦାରେ ସମସ୍ତ ମାତୃଶକ୍ତି ଉପରେ ପୃଥକ୍ ପୃଥକ୍ ପ୍ରହାର କଲା ॥ ୫୦ ॥ ଶକ୍ତି ଓ ଶୂଳ ଆଦିଦ୍ୱାରା ଅନେକଥର ଆଘାତପ୍ରାପ୍ତ ହେବାରୁ ତାହାର ଶରୀରରୁ ଯେଉଁ ସବୁ ରକ୍ତଧାରା ପୃଥିବୀ ଉପରେ ପଡ଼ିଲା; ସେଥିରୁ ହଜାର ହଜାର ଅସୁର ଉତ୍ପନ୍ନ ହେଲେ ॥ ୫୧ ॥ ଏହିପରି ସେହି ମହାଦୈତ୍ୟର ରକ୍ତରୁ ନିଶ୍ଚିତଭାବରେ ପ୍ରକଟ ହୋଇଥିବା ଅସୁରଙ୍କ ଦ୍ୱାରା ସମଗ୍ର ଜଗତ୍ ବ୍ୟାପ୍ତ ହୋଇଗଲା । ଏହାଦ୍ୱାରା ସେହି ଦେବତାମାନେ ଅତି ଭୟଭୀତ ହେଲେ ॥ ୫୨ ॥ ଦେବତାମାନଙ୍କୁ ଉଦାସ ଦେଖି ଚଣ୍ଡିକା କାଳୀଙ୍କୁ ସହସା କହିଲେ—'ହେ ଚାମୁଣ୍ଡେ ! ତୁମେ ନିଜ ମୁଖ ଆହୁରି ଅଧିକ ପ୍ରସାରିତ

---

୧. ପା.—ବିସ୍ତରଂ ।

ମଚ୍ଛସ୍ତ୍ରପାତସମ୍ଭୂତାନ୍ ରକ୍ତବିନ୍ଦୂନ୍ମହାସୁରାନ୍ ।
ରକ୍ତବିନ୍ଦୋଃ ପ୍ରତୀଚ୍ଛ ତ୍ୱଂ ବକ୍ତ୍ରେଣାନେନ ବେଗିନା[୧] ॥ ୫୪ ॥
ଭକ୍ଷୟନ୍ତୀ ଚର ରଣେ ତଦୁତ୍ପନ୍ନାନ୍ମହାସୁରାନ୍ ।
ଏବମେଷ କ୍ଷୟଂ ଦୈତ୍ୟଃ କ୍ଷୀଣରକ୍ତୋ ଗମିଷ୍ୟତି ॥ ୫୫ ॥
ଭକ୍ଷ୍ୟମାଣାସ୍ତ୍ୱୟା ଚୋଗ୍ରା ନ ଚୋତ୍ପତ୍ସ୍ୟନ୍ତି ଚାପରେ[୨] ।
ଇତ୍ୟୁକ୍ତ୍ୱା ତାଂ ତତୋ ଦେବୀ ଶୂଳେନାଭିଜଘାନ ତମ୍ ॥ ୫୬ ॥
ମୁଖେନ କାଳୀ ଜଗୃହେ ରକ୍ତବୀଜସ୍ୟ ଶୋଣିତମ୍ ।
ତତୋଽସାବାଜଘାନାଥ ଗଦୟା ତତ୍ର ଚଣ୍ଡିକାମ୍ ॥ ୫୭ ॥
ନ ଚାସ୍ୟା ବେଦନାଂ ଚକ୍ରେ ଗଦାପାତୋଽଳ୍ପିକାମପି ।
ତସ୍ୟାହତସ୍ୟ ଦେହାତ୍ତୁ ବହୁ ସୁସ୍ରାବ ଶୋଣିତମ୍ ॥ ୫୮ ॥
ଯତସ୍ତତସ୍ତଦ୍ୱକ୍ତ୍ରେଣ ଚାମୁଣ୍ଡା ସମ୍ପ୍ରତୀଚ୍ଛତି ।
ମୁଖେ ସମୁଦ୍ଗତା ଯେଽସ୍ୟା ରକ୍ତପାତାନ୍ମହାସୁରାଃ ॥ ୫୯ ॥

କର ॥ ୫୩ ॥ ତଥା ମୋର ଶସ୍ତ୍ରାଘାତରେ ତଳେ ପଡୁଥିବା ରକ୍ତବିନ୍ଦୁ ଓ ସେଥିରୁ ଉତ୍ପନ୍ନ ହେଉଥିବା ମହାଦୈତ୍ୟମାନଙ୍କୁ ତୁମେ ନିଜର ଏହି ଉନ୍ମୁକ୍ତ ମୁଖରେ ଭକ୍ଷଣ କର ॥ ୫୪ ॥ ଏହିପ୍ରକାରେ ରକ୍ତରୁ ଉତ୍ପନ୍ନ ହେଉଥିବା ମହାଦୈତ୍ୟଙ୍କୁ ଭକ୍ଷଣ କରି ତୁମେ ରଣଭୂଇଁରେ ବିଚରଣ କର । ଏହିପରି କରିବାଦ୍ୱାରା ସେହି ଦୈତ୍ୟର ସମସ୍ତ ରକ୍ତ କ୍ଷୀଣ ହେବାପରେ ସେ ସ୍ୱୟଂ ମଧ୍ୟ ନଷ୍ଟ ହେବ ॥ ୫୫ ॥ ସେହି ଭୟଙ୍କର ଦୈତ୍ୟମାନଙ୍କୁ ତୁମେ ଭକ୍ଷଣ କଲେ ଅନ୍ୟ ନୂତନ ଦୈତ୍ୟ ଉତ୍ପନ୍ନ ହୋଇପାରିବେ ନାହିଁ।' କାଳୀଙ୍କୁ ଏହା କହି ଚଣ୍ଡିକା ଦେବୀ ଶୂଳରେ ରକ୍ତବୀଜକୁ ମାରିଲେ ॥ ୫୬ ॥ କାଳୀ ନିଜ ମୁଖରେ ରକ୍ତବୀଜର ରକ୍ତ ପାନ କଲେ । ସେତିକିବେଳେ ସେଠାରେ ସେ ଚଣ୍ଡିକାଙ୍କ ଉପରେ ଗଦା ପ୍ରହାର କଲା ॥ ୫୭ ॥ କିନ୍ତୁ ସେହି ଗଦାଘାତଦ୍ୱାରା ଦେବୀଙ୍କୁ ଟିକିଏ ହେଲେ ବେଦନା ଅନୁଭବ ହେଲା ନାହିଁ । ରକ୍ତବୀଜର କ୍ଷତାକ୍ତ ଶରୀରରୁ ଅନେକ ରକ୍ତ ଝରିଲା ॥ ୫୮ ॥ କିନ୍ତୁ ସେସବୁ ଝରି ତଳେ ପଡ଼ିବା ପୂର୍ବରୁ ତାକୁ ଚାମୁଣ୍ଡା ନିଜ ମୁଖରେ ପାନ କଲେ । ରକ୍ତ ପଡ଼ିବାଦ୍ୱାରା

୧. ପା.—ବେଗିତା । ୨. ଏହାପରେ କେତେକ ସ୍ଥାନରେ 'ଋଷିରୁବାଚ' ଏତିକି ଅଧିକ ପାଠ ଅଛି ।

**ତାଂଶ୍ଚଖାଦାତ ଚାମୁଣ୍ଡା ପପୌ ତସ୍ୟ ଚ ଶୋଣିତମ୍ ।**
**ଦେବୀ ଶୂଳେନ ବଜ୍ରେଣ[1] ବାଣୈରସିଭିର୍ଋଷ୍ଟିଭିଃ ॥ ୬୦ ॥**
**ଜଘାନ ରକ୍ତବୀଜଂ ତଂ ଚାମୁଣ୍ଡାପୀତଶୋଣିତମ୍ ।**
**ସ ପପାତ ମହୀପୃଷ୍ଠେ ଶସ୍ତ୍ରସଙ୍ଘସମାହତଃ[2] ॥ ୬୧ ॥**
**ନୀରକ୍ତଶ୍ଚ ମହୀପାଳ ରକ୍ତବୀଜୋ ମହାସୁରଃ ।**
**ତତସ୍ତେ ହର୍ଷମତୁଳମବାପୁସ୍ତ୍ରିଦଶା ନୃପ ॥ ୬୨ ॥**
**ତେଷାଂ ମାତୃଗଣୋ ଜାତୋ ନନର୍ତାସୃଙ୍ମଦୋଦ୍ଧତଃ ॥ ଓଁ ॥ ୬୩ ॥**

*ଇତି ଶ୍ରୀମାର୍କଣ୍ଡେୟପୁରାଣେ ସାବର୍ଣ୍ଣିକେ ମନ୍ୱନ୍ତରେ ଦେବୀମାହାତ୍ମ୍ୟେ*
*ରକ୍ତବୀଜବଧୋ ନାମାଷ୍ଟମୋଽଧ୍ୟାୟଃ ॥ ୮ ॥*
*ଉବାଚ ୧, ଅର୍ଧଶ୍ଳୋକଃ ୧, ଶ୍ଳୋକାଃ ୬୧, ଏବମ୍ ୬୩,*
*ଏବମାଦିତଃ ୫୦୨ ॥*

ଓଓଓ

କାଳୀଙ୍କ ମୁଖରେ ଯେଉଁ ମହାଦୈତ୍ୟ ଉତ୍ପନ୍ନ ହେଲେ; ସେ ସମସ୍ତଙ୍କୁ ଗିଳି ଦେଉଥିଲେ । ସେ ରକ୍ତବୀଜର ରକ୍ତକୁ ମଧ୍ୟ ପାନ କଲେ । ତାପରେ ଦେବୀ ରକ୍ତବୀଜକୁ, ଯାହାର ରକ୍ତ ଚାମୁଣ୍ଡା ପାନ କରିଥିଲେ; ବଜ୍ର, ବାଣ, ଖଡ୍‌ଗ ତଥା ଋଷ୍ଟି ଆଦିଦ୍ୱାରା ମାରିଦେଲେ। ହେ ରାଜନ୍ ! ଏହିପ୍ରକାର ଶସ୍ତ୍ରସମୁଦାୟ ଦ୍ୱାରା ଆହତ ଓ ରକ୍ତହୀନ ହୋଇ ମହାଦୈତ୍ୟ ରକ୍ତବୀଜ ପୃଥିବୀ ଉପରେ ପଡ଼ିଗଲା । ହେ ନରେଶ୍ୱର ! ଏହାଦ୍ୱାରା ଦେବତାମାନଙ୍କୁ ଅନୁପମ ହର୍ଷ ପ୍ରାପ୍ତି ହେଲା ॥ ୫୯—୬୨ ॥ ଏବଂ ମାତୃଗଣ ସେହି ଅସୁରମାନଙ୍କ ରକ୍ତପାନ ମଦରେ ଉଦ୍ଧତ ହୋଇ ନୃତ୍ୟ କରିବାକୁ ଲାଗିଲେ ॥ ୬୩ ॥

*ଏହିପରି ଶ୍ରୀମାର୍କଣ୍ଡେୟପୁରାଣରେ ସାବର୍ଣ୍ଣିକ ମନ୍ୱନ୍ତର କଥାନ୍ତର୍ଗତ*
*ଦେବୀମାହାତ୍ମ୍ୟରେ 'ରକ୍ତବୀଜବଧ' ନାମକ ଅଷ୍ଟମ*
*ଅଧ୍ୟାୟ ସମାପ୍ତ ହେଲା ॥ ୮ ॥*

ଓଓଓ

୧. ପା.—ଚକ୍ରେଣ । ୨. ପା.—ଶସ୍ତ୍ରସଂହତିତୋ ହତଃ ।

# ନବମୋଽଧ୍ୟାୟଃ

[ନିଶୁମ୍ଭ ବଧ]

## ଧ୍ୟାନମ୍

ଓଁ ବନ୍ଧୂକକାଞ୍ଚନନିଭଂ ରୁଚିରାକ୍ଷମାଳାଂ
ପାଶାଙ୍କୁଶୌ ଚ ବରଦାଂ ନିଜବାହୁଦଣ୍ଡୈଃ ।
ବିଭ୍ରାଣମିନ୍ଦୁଶକଳାଭରଣଂ ତ୍ରିନେତ୍ର-
ମର୍ଧାମ୍ବିକେଶମନିଶଂ ବପୁରାଶ୍ରୟାମି ॥

*'ଓଁ ରାଜୋବାଚ ॥ ୧ ॥*

ବିଚିତ୍ରମିଦମାଖ୍ୟାତଂ ଭଗବନ୍ ଭବତା ମମ ।
ଦେବ୍ୟାଶ୍ଚରିତମାହାତ୍ମ୍ୟଂ ରକ୍ତବୀଜବଧାଶ୍ରିତମ୍ ॥ ୨ ॥
ଭୂୟଶ୍ଚେଚ୍ଛାମ୍ୟହଂ ଶ୍ରୋତୁଂ ରକ୍ତବୀଜେ ନିପାତିତେ ।
ଚକାର ଶୁମ୍ଭୋ ଯତ୍କର୍ମ ନିଶୁମ୍ଭଶ୍ଚାତିକୋପନଃ ॥ ୩ ॥

---

ମୁଁ ଅର୍ଦ୍ଧନାରୀଶ୍ୱରଙ୍କ ଶ୍ରୀବିଗ୍ରହର ନିରନ୍ତର ଶରଣ ନେଉଛି । ତାହାଙ୍କ ବର୍ଣ୍ଣ ବନ୍ଧୂକପୁଷ୍ପ ଓ ସୁବର୍ଣ୍ଣ ସମାନ ରକ୍ତପୀତମିଶ୍ରିତ ଅଟେ । ସେ ନିଜ ଭୁଜମାନଙ୍କରେ ସୁନ୍ଦର ଅକ୍ଷମାଳା, ପାଶ, ଅଙ୍କୁଶ ଓ ବରଦମୁଦ୍ରା ଧାରଣ କରନ୍ତି । ଅର୍ଦ୍ଧଚନ୍ଦ୍ର ତାଙ୍କର ଆଭୂଷଣ ଅଟେ ତଥା ସେ ତିନୋଟି ନେତ୍ରଦ୍ୱାରା ସୁଶୋଭିତା ଅଟନ୍ତି ।

**ରାଜା କହିଲେ**—॥ ୧ ॥ ହେ ଭଗବନ୍ ! ଆପଣ ରକ୍ତବୀଜର ବଧସମ୍ପର୍କିତ ଦେବୀଚରିତ୍ରର ଏହି ଅଦ୍ଭୁତ ମାହାତ୍ମ୍ୟ ମୋତେ କହିଲେ ॥ ୨ ॥ ବର୍ତ୍ତମାନ ରକ୍ତବୀଜର ମରଣ ହେଲା ପରେ ଅତ୍ୟନ୍ତ କ୍ରୋଧରେ ପରିପୂର୍ଣ୍ଣ ଶୁମ୍ଭ ଓ ନିଶୁମ୍ଭ ଯାହା କର୍ମ କଲେ; ତାହାକୁ ମୁଁ ଶୁଣିବାକୁ ଚାହୁଁଛି ॥ ୩ ॥

*ଋଷିରୁବାଚ ॥ ୪ ॥*

ଚକାର କୋପମତୁଲଂ ରକ୍ତବୀଜେ ନିପାତିତେ ।
ଶୁମ୍ଭାସୁରୋ ନିଶୁମ୍ଭଶ୍ଚ ହତେଷ୍ୱନ୍ୟେଷୁ ଚାହବେ ॥ ୫ ॥
ହନ୍ୟମାନଂ ମହାସୈନ୍ୟଂ ବିଲୋକ୍ୟାମର୍ଷମୁଦ୍‌ବହନ୍ ।
ଅଭ୍ୟଧାବନ୍ନିଶୁମ୍ଭୋଽଥ ମୁଖ୍ୟୟାସୁରସେନୟା ॥ ୬ ॥
ତସ୍ୟାଗ୍ରତସ୍ତଥା ପୃଷ୍ଠେ ପାର୍ଶ୍ୱୟୋଶ୍ଚ ମହାସୁରାଃ ।
ସଂଦଷ୍ଟୌଷ୍ଠପୁଟାଃ କ୍ରୁଦ୍ଧା ହନ୍ତୁଂ ଦେବୀମୁପାୟୟୁଃ ॥ ୭ ॥
ଆଜଗାମ ମହାବୀର୍ୟଃ ଶୁମ୍ଭୋଽପି ସ୍ୱବଲୈର୍ବୃତଃ ।
ନିହନ୍ତୁଂ ଚଣ୍ଡିକାଂ କୋପାତ୍ କୃତ୍ୱା ଯୁଦ୍ଧଂ ତୁ ମାତୃଭିଃ ॥ ୮ ॥
ତତୋ ଯୁଦ୍ଧମତୀବାସୀଦ୍ଦେବ୍ୟା ଶୁମ୍ଭନିଶୁମ୍ଭୟୋଃ ।
ଶରବର୍ଷମତୀବୋଗ୍ରଂ ମେଘୟୋରିବ ବର୍ଷତୋଃ ॥ ୯ ॥
ଚିଚ୍ଛେଦାସ୍ତାଞ୍ଛରାଂସ୍ତାଭ୍ୟାଂ ଚଣ୍ଡିକା ସ୍ୱଂଶରୋତ୍କରୈଃ ।
ତାଡୟାମାସ ଚାଙ୍ଗେଷୁ ଶସ୍ତ୍ରୌଘୈରସୁରେଶ୍ୱରୌ ॥ ୧୦ ॥

---

**ଋଷି କହିଲେ**—॥ ୪ ॥ ହେ ରାଜନ୍ ! ଯୁଦ୍ଧରେ ରକ୍ତବୀଜ ତଥା ଅନ୍ୟ ଦୈତ୍ୟମାନଙ୍କର ମୃତ୍ୟୁ ପରେ ଶୁମ୍ଭ ଓ ନିଶୁମ୍ଭର କ୍ରୋଧର ସୀମା ରହିଲା ନାହିଁ ॥ ୫ ॥ ନିଜ ବିଶାଳ ସେନା ଏହିପ୍ରକାର ନିହତ ହେବା ଦେଖି ନିଶୁମ୍ଭ କ୍ରୋଧଭର ହୋଇ ଦେବୀଙ୍କ ଆଡ଼କୁ ଦଉଡ଼ିଲା । ତାହା ସହିତ ଅସୁରମାନଙ୍କ ପ୍ରଧାନ ସେନା ମଧ୍ୟ ଥିଲା ॥ ୬ ॥ ତାର ସମ୍ମୁଖରେ, ପଛରେ ତଥା ପାର୍ଶ୍ୱଭାଗରେ ବଡ଼ ବଡ଼ ଅସୁରମାନେ ଥିଲେ । ସେମାନେ କ୍ରୋଧରେ ଓଠ କାମୁଡ଼ି କାମୁଡ଼ି ଦେବୀଙ୍କୁ ମାରିବାକୁ ଆସିଲେ ॥ ୭ ॥ ସେହିପରି ମହାପରାକ୍ରମୀ ଶୁମ୍ଭ ମଧ୍ୟ ନିଜ ସେନା ସଙ୍ଗରେ ନେଇ ମାତୃଗଣଙ୍କ ସହ ଯୁଦ୍ଧ କରିବାପରେ କ୍ରୋଧବଶତଃ ଚଣ୍ଡିକାଙ୍କୁ ହତ୍ୟା କରିବାକୁ ଆସି ପହଞ୍ଚିଲା ॥ ୮ ॥ ସେତେବେଳେ ଦେବୀଙ୍କ ସହ ଶୁମ୍ଭ ଓ ନିଶୁମ୍ଭଙ୍କର ଘୋର ଯୁଦ୍ଧ ହେଲା । ସେହି ଦୁଇ ଦୈତ୍ୟ ମେଘସଦୃଶ ବାଣସମୂହର ଭୟଙ୍କର ବୃଷ୍ଟି କରୁଥିଲେ ॥ ୯ ॥ ସେହି ଦୁଇଜଣଙ୍କ ଦ୍ୱାରା

---

୧. ପା.—ଽଽଶୁ ଶରୋତ୍କରୈଃ ।

ନିଶୁମ୍ଭୋ ନିଶିତଂ ଖଡ୍ଗଂ ଚର୍ମ ଗୃହୀତ୍ୱା ସୁପ୍ରଭମ୍ ।
ଅତାଡୟନ୍ମୂର୍ଧ୍ନି ସିଂହଂ ଦେବ୍ୟା ବାହନମୁତ୍ତମମ୍ ॥ ୧୧ ॥
ତାଡିତେ ବାହନେ ଦେବୀ କ୍ଷୁରପ୍ରେଣାସିମୁତ୍ତମମ୍ ।
ନିଶୁମ୍ଭସ୍ୟାଶୁ ଚିଚ୍ଛେଦ ଚର୍ମ ଚାପ୍ୟଷ୍ଟଚନ୍ଦ୍ରକମ୍ ॥ ୧୨ ॥
ଛିନ୍ନେ ଚର୍ମଣି ଖଡ୍ଗେ ଚ ଶକ୍ତିଂ ଚିକ୍ଷେପ ସୋଽସୁରଃ ।
ତାମପ୍ୟସ୍ୟ ଦ୍ୱିଧା ଚକ୍ରେ ଚକ୍ରେଣାଭିମୁଖାଗତାମ୍ ॥ ୧୩ ॥
କୋପାଧ୍ମାତୋ ନିଶୁମ୍ଭୋଽଥ ଶୂଳଂ ଜଗ୍ରାହ ଦାନବଃ ।
ଆୟାତଂ[୧] ମୁଷ୍ଟିପାତେନ ଦେବୀ ତଚ୍ଚାପ୍ୟଚୂର୍ଣ୍ଣୟତ୍ ॥ ୧୪ ॥
ଆବିଧ୍ୟାଥ[୨] ଗଦାଂ ସୋଽପି ଚିକ୍ଷେପ ଚଣ୍ଡିକାଂ ପ୍ରତି ।
ସାପି ଦେବ୍ୟା ତ୍ରିଶୂଳେନ ଭିନ୍ନା ଭସ୍ମତ୍ୱମାଗତା ॥ ୧୫ ॥

ନିକ୍ଷିପ୍ତ ହୋଇଥିବା ବାଣଗୁଡ଼ିକୁ ଚଣ୍ଡିକା ନିଜ ବାଣସମୂହଦ୍ୱାରା ତୁରନ୍ତ କାଟି ଦେଲେ ଏବଂ ଶସ୍ତ୍ରସମୂହ ବର୍ଷା କରି ସେହି ଦୁଇ ଦୈତ୍ୟପତିଙ୍କ ଅଙ୍ଗରେ ଆଘାତ ଦେଲେ ॥ ୧୦ ॥ ନିଶୁମ୍ଭ ତୀକ୍ଷ୍ଣ ଖଡ୍ଗ ଓ ଚମକପ୍ରଦ ଢାଲ ଧରି ଦେବୀଙ୍କ ଶ୍ରେଷ୍ଠ ବାହନ ସିଂହର ମସ୍ତକ ଉପରେ ପ୍ରହାର କଲା ॥ ୧୧ ॥ ନିଜ ବାହନ ଉପରେ ଆଘାତ ହେବା ଦେଖି ଦେବୀ କ୍ଷୁରପ୍ର ନାମକ ବାଣଦ୍ୱାରା ନିଶୁମ୍ଭର ଶ୍ରେଷ୍ଠ ଖଡ୍ଗକୁ ଯଥାଶୀଘ୍ର କାଟିଦେଲେ ଏବଂ ଆଠଟି ଚନ୍ଦ୍ରଖଚିତ ହୋଇଥିବା ତାହାର ଢାଲକୁ ଖଣ୍ଡ ଖଣ୍ଡ କରିଦେଲେ ॥ ୧୨ ॥ ଢାଲ ଓ ଖଡ୍ଗ କଟିଯିବା ପରେ ସେହି ଅସୁର ଶକ୍ତି ପ୍ରୟୋଗ କଲା । କିନ୍ତୁ ପାଖକୁ ଆସିବା ପରେ ଦେବୀ ଚକ୍ରରେ ତାହାକୁ ଦୁଇ ଖଣ୍ଡ କରିଦେଲେ ॥ ୧୩ ॥ ଏହା ଦେଖି ନିଶୁମ୍ଭ କ୍ରୋଧରେ ଜଳି ଉଠିଲା ଏବଂ ସେହି ଦାନବ ଦେବୀଙ୍କୁ ମାରିବା ନିମନ୍ତେ ଶୂଳ ଉଠାଇଲା । କିନ୍ତୁ ସେହି ଶୂଳ ପାଖକୁ ଆସିବା ମାତ୍ରେ ଦେବୀ ତାହାକୁ ମଧ୍ୟ ମୁଷ୍ଟି ମାରି ଚୂର୍ଣ୍ଣ କରିଦେଲେ ॥ ୧୪ ॥ ତାପରେ ସେ ଗଦା ବୁଲାଇ ବୁଲାଇ ଚଣ୍ଡୀଙ୍କ ଉପରକୁ ପ୍ରୟୋଗ କଲା । ପରନ୍ତୁ ତାହା ମଧ୍ୟ ଦେବୀଙ୍କ

୧. ପା.—ଆୟାନ୍ତଂ । ୨. ପା.—ଅଥାଦାୟ ।

ତତଃ ପରଶୁହସ୍ତଂ ତମାୟାନ୍ତଂ ଦୈତ୍ୟପୁଙ୍ଗବମ୍ ।
ଆହତ୍ୟ ଦେବୀ ବାଣୌଘୈରପାତୟତ ଭୂତଲେ ॥ ୧୬ ॥
ତସ୍ମିନ୍ନିପତିତେ ଭୂମୌ ନିଶୁମ୍ଭେ ଭୀମବିକ୍ରମେ ।
ଭ୍ରାତର୍ଯତୀବ ସଂକ୍ରୁଦ୍ଧଃ ପ୍ରୟଯୌ ହନ୍ତୁମମ୍ବିକାମ୍ ॥ ୧୭ ॥
ସ ରଥସ୍ଥସ୍ତଥାତ୍ୟୁଚ୍ଚୈର୍ଗୃହୀତପରମାୟୁଧୈଃ ।
ଭୁଜୈରଷ୍ଟାଭିରତୁଲୈର୍ବ୍ୟାପ୍ୟାଶେଷଂ ବଭୌ ନଭଃ ॥ ୧୮ ॥
ତମାୟାନ୍ତଂ ସମାଲୋକ୍ୟ ଦେବୀ ଶଙ୍ଖମବାଦୟତ୍ ।
ଜ୍ୟାଶବ୍ଦଂ ଚାପି ଧନୁଷଶ୍ଚକାରାତୀବ ଦୁଃସହମ୍ ॥ ୧୯ ॥
ପୂରୟାମାସ କକୁଭୋ ନିଜଘଣ୍ଟାସ୍ୱନେନ ଚ ।
ସମସ୍ତଦୈତ୍ୟସୈନ୍ୟାନାଂ ତେଜୋବଧବିଧାୟିନା ॥ ୨୦ ॥
ତତଃ ସିଂହୋ ମହାନାଦୈସ୍ତ୍ୟାଜିତେଭମହାମଦୈଃ ।
ପୂରୟାମାସ ଗଗନଂ ଗାଂ ତଥୈବ[1] ଦିଶୋ ଦଶ ॥ ୨୧ ॥

---

ତ୍ରିଶୂଳରେ କଟି ଭସ୍ମ ହୋଇଗଲା ॥ ୧୫ ॥ ତାପରେ ଦୈତ୍ୟରାଜ ନିଶୁମ୍ଭ ଫାର୍ଶା ହସ୍ତରେ ନେଇ ଆସୁଥିବାର ଦେଖି ଦେବୀ ବାଣସମୂହରେ ଆଘାତ ଦେଇ ତାକୁ ଧରାଶାୟୀ କଲେ ॥ ୧୬ ॥ ସେହି ଭୟଙ୍କର ପରାକ୍ରମୀ ଭାଇ ନିଶୁମ୍ଭ ଧରାଶାୟୀ ହୋଇଯିବାପରେ ଶୁମ୍ଭ ଅତି କ୍ରୋଧାନ୍ୱିତ ହେଲା ଏବଂ ଅମ୍ବିକାଙ୍କୁ ବଧ କରିବାପାଇଁ ସେ ଅଗ୍ରସର ହେଲା ॥ ୧୭ ॥ ରଥ ଉପରେ ବସି ଉତ୍ତମ ଆୟୁଧମାନଦ୍ୱାରା ସୁଶୋଭିତ ନିଜ ବଡ଼ ବଡ଼ ଆଠଟି ଅନୁପମ ଭୁଜରେ ସମଗ୍ର ଆକାଶକୁ ଢାଙ୍କି ଦେଇଥିବାରୁ ସେ ଅଦ୍ଭୁତ ଶୋଭା ପାଉଥିଲା ॥ ୧୮ ॥ ତାହାକୁ ଆସିବାର ଦେଖି ଦେବୀ ଶଙ୍ଖ ବଜାଇଲେ ଏବଂ ଧନୁର ଟଙ୍କାରଦ୍ୱାରା ଅତ୍ୟନ୍ତ ଦୁଃସହ ଶବ୍ଦ କଲେ ॥ ୧୯ ॥ ତାସହିତ ନିଜ ଘଣ୍ଟାଶବ୍ଦରେ, ଯାହା ସମସ୍ତ ଦୈତ୍ୟସୈନିକଙ୍କ ତେଜ ନଷ୍ଟକାରକ ଥିଲା; ସମସ୍ତ ଦିଗକୁ ବ୍ୟାପ୍ତ କରିଦେଲେ ॥ ୨୦ ॥ ତାପରେ ସିଂହ ମଧ୍ୟ ନିଜ

---

୧. ପା.—ତଥୋପଦିଶୋ ।

ତତଃ କାଳୀ ସମୁତ୍ପତ୍ୟ ଗଗନଂ କ୍ଷ୍ମାମତାଡୟତ୍ ।
କରାଭ୍ୟାଂ ତନ୍ନିନାଦେନ ପ୍ରାକ୍‌ସ୍ୱନାସ୍ତେ ତିରୋହିତାଃ ॥ ୨୨ ॥
ଅଟ୍ଟାଟ୍ଟହାସମଶିବଂ ଶିବଦୂତୀ ଚକାର ହ ।
ତୈଃ ଶବ୍ଦୈରସୁରାସ୍ତ୍ରେସୁଃ ଶୁମ୍ଭଃ କୋପଂ ପରଂ ଯଯୌ ॥ ୨୩ ॥
ଦୁରାତ୍ମଂସ୍ତିଷ୍ଠ ତିଷ୍ଠେତି ବ୍ୟାଜହାରାମ୍ବିକା ଯଦା ।
ତଦା ଜୟେତ୍ୟଭିହିତଂ ଦେବୈରାକାଶସଂସ୍ଥିତୈଃ ॥ ୨୪ ॥
ଶୁମ୍ଭେନାଗତ୍ୟ ଯା ଶକ୍ତିର୍ମୁକ୍ତା ଜ୍ୱାଳାତିଭୀଷଣା ।
ଆୟାନ୍ତୀ ବହ୍ନିକୂଟାଭା ସା ନିରସ୍ତା ମହୋଲ୍କୟା ॥ ୨୫ ॥
ସିଂହନାଦେନ ଶୁମ୍ଭସ୍ୟ ବ୍ୟାପ୍ତଂ ଲୋକତ୍ରୟାନ୍ତରମ୍ ।
ନିର୍ଘାତନିଃସ୍ୱନୋ ଘୋରୋ ଜିତବାନବନୀପତେ ॥ ୨୬ ॥

---

ଗର୍ଜନଦ୍ୱାରା, ଯାହାକୁ ଶ୍ରବଣ କରି ବଡ଼ ବଡ଼ ଗଜରାଜମାନଙ୍କର ଗର୍ବ ନାଶ ହେଉଥିଲା; ଆକାଶ, ପୃଥିବୀ ଓ ଦଶ ଦିଗକୁ ଗୁଞ୍ଜରିତ କରିଦେଲା ॥ ୨୧ ॥ ପୁନଶ୍ଚ କାଳୀ ଆକାଶରେ କୁଦି ପଡ଼ି ନିଜ ଦୁଇ ହସ୍ତରେ ପୃଥିବୀ ଉପରେ ଆଘାତ କଲେ । ତାହାଦ୍ୱାରା ଏପରି ଭୟଙ୍କର ଶବ୍ଦ ହେଲା ଯେ ଯାହାଦ୍ୱାରା ପୂର୍ବର ସମସ୍ତ ଶବ୍ଦ ଶାନ୍ତ ହୋଇଗଲା ॥ ୨୨ ॥ ତତ୍‌ପଶ୍ଚାତ୍ ଶିବଦୂତୀ ଦୈତ୍ୟଙ୍କ ନିମନ୍ତେ ଅମଙ୍ଗଳଜନକ ଅଟ୍ଟହାସ୍ୟ କଲେ; ସେହି ଶବ୍ଦକୁ ଶ୍ରବଣ କରି ସମସ୍ତ ଅସୁର ଥରି ଉଠିଲେ । କିନ୍ତୁ ଶୁମ୍ଭ ଅତି କ୍ରୋଧାନ୍ୱିତ ହେଲା ॥ ୨୩ ॥ ସେହି ସମୟରେ ଦେବୀ ଯେତେବେଳେ ଶୁମ୍ଭକୁ ଲକ୍ଷ୍ୟ କରି କହିଲେ—'ରେ ଦୁରାତ୍ମନ୍ ! ଛିଡ଼ା ହୁଅ, ଛିଡ଼ା ହୁଅ'; ଆକାଶରେ ଛିଡ଼ା ହୋଇଥିବା ଦେବତାମାନେ ସେତେବେଳେ କହି ଉଠିଲେ—'ଜୟ ହେଉ, ଜୟ ହେଉ' ॥ ୨୪ ॥ ଶୁମ୍ଭ ସେଠାକୁ ଆସି ଜ୍ୱାଳାଯୁକ୍ତ ଅତ୍ୟନ୍ତ ଭୟଙ୍କର ଶକ୍ତି ପ୍ରୟୋଗ କଲା । ଅଗ୍ନିମୟ ପର୍ବତ ସମାନ ଆସୁଥିବା ସେହି ଶକ୍ତିକୁ ଦେବୀ ଅତି ଭୀଷଣ ଅଗ୍ନିପିଣ୍ଡଦ୍ୱାରା ଦୂର କରିଦେଲେ ॥ ୨୫ ॥ ସେହି ସମୟରେ ଶୁମ୍ଭର ସିଂହନାଦରେ ତ୍ରିଲୋକ କମ୍ପି ଉଠିଲା । ହେ ରାଜନ୍ ! ତାହାର ପ୍ରତିଧ୍ୱନିରେ ବଜ୍ରପାତ ସମାନ ଭୟଙ୍କର ଶବ୍ଦ ହେଲା । ତାହା ଅନ୍ୟ ସମସ୍ତ ଶବ୍ଦକୁ ବଳି ଗଲା ॥ ୨୬ ॥

ଶୁମ୍ଭମୁକ୍ତାଞ୍ଛରାନ୍‌ଦେବୀ ଶୁମ୍ଭସ୍ତତ୍‌ପ୍ରହିତାଞ୍ଛରାନ୍ ।
ଚିଚ୍ଛେଦ ସ୍ୱଶରୈରୁଗ୍ରୈଃ ଶତଶୋଽଥ ସହସ୍ରଶଃ ॥ ୨୭ ॥
ତତଃ ସା ଚଣ୍ଡିକା କ୍ରୁଦ୍ଧା ଶୂଳେନାଭିଜଘାନ ତମ୍ ।
ସ ତଦାଭିହତୋ ଭୂମୌ ମୂର୍ଚ୍ଛିତୋ ନିପପାତ ହ ॥ ୨୮ ॥
ତତୋ ନିଶୁମ୍ଭଃ ସମ୍ପ୍ରାପ୍ୟ ଚେତନାମାତ୍ତକାର୍ମୁକଃ ।
ଆଜଘାନ ଶରୈର୍ଦେବୀଂ କାଳୀଂ କେସରିଣଂ ତଥା ॥ ୨୯ ॥
ପୁନଶ୍ଚ କୃତ୍ୱା ବାହୂନାମଯୁତଂ ଦନୁଜେଶ୍ୱରଃ ।
ଚକ୍ରାଯୁଧେନ ଦିତିଜଶ୍ଛାଦୟାମାସ ଚଣ୍ଡିକାମ୍ ॥ ୩୦ ॥
ତତୋ ଭଗବତୀ କ୍ରୁଦ୍ଧା ଦୁର୍ଗା ଦୁର୍ଗାର୍ତ୍ତିନାଶିନୀ ।
ଚିଚ୍ଛେଦ ତାନି ଚକ୍ରାଣି ସ୍ୱଶରୈଃ ସାୟକାଂଶ୍ଚ ତାନ୍ ॥ ୩୧ ॥
ତତୋ ନିଶୁମ୍ଭୋ ବେଗେନ ଗଦାମାଦାୟ ଚଣ୍ଡିକାମ୍ ।
ଅଭ୍ୟଧାବତ ବୈ ହନ୍ତୁଂ ଦୈତ୍ୟସେନାସମାବୃତଃ ॥ ୩୨ ॥

---

ଶୁମ୍ଭଦ୍ୱାରା ପ୍ରେରିତ ବାଣକୁ ଦେବୀ ଏବଂ ଦେବୀଙ୍କଦ୍ୱାରା ନିକ୍ଷିପ୍ତ ହେଉଥିବା ବାଣକୁ ଶୁମ୍ଭ ନିଜ ନିଜ ବାଣଦ୍ୱାରା ହଜାର ହଜାର ଖଣ୍ଡ କରିଦେଲେ ॥ ୨୭ ॥ ସେତେବେଳେ କ୍ରୋଧରେ ପରିପୂର୍ଣ୍ଣ ହୋଇଥିବା ଚଣ୍ଡିକା ଶୁମ୍ଭକୁ ଶୂଳରେ ମାରିଲେ । ତାହାର ଆଘାତରେ ମୂର୍ଚ୍ଛିତ ହୋଇ ସେ ପୃଥିବୀ ଉପରେ ଟଳି ପଡ଼ିଲା ॥ ୨୮ ॥

ଇତିମଧ୍ୟରେ ନିଶୁମ୍ଭର ଚେତା ଫେରିଲା ଏବଂ ସେ ହାତରେ ଧନୁ ଧରି ବାଣଦ୍ୱାରା ଦେବୀ କାଳୀ ତଥା ସିଂହକୁ ଆଘାତ ଦେଲା ॥ ୨୯ ॥ ପୁନଶ୍ଚ ସେହି ଦୈତ୍ୟରାଜ ଦଶହଜାର ହସ୍ତ ସୃଷ୍ଟି କରି ଚକ୍ରରେ ପ୍ରହାର କରି ଚଣ୍ଡିକାଙ୍କୁ ଆଚ୍ଛାଦିତ କରିଦେଲା ॥ ୩୦ ॥ ସେତେବେଳେ ଦୁର୍ଗମ ପୀଡ଼ା ନାଶ କରୁଥିବା ଭଗବତୀ ଦୁର୍ଗା କୁପିତ ହୋଇ ନିଜ ବାଣଦ୍ୱାରା ସେହି ଚକ୍ର ତଥା ବାଣଗୁଡ଼ିକୁ କାଟି ଦେଲେ ॥ ୩୧ ॥ ଏହା ଦେଖି ନିଶୁମ୍ଭ ଚଣ୍ଡିକାଙ୍କୁ ବଧ କରିବାପାଇଁ ହସ୍ତରେ ଗଦା ନେଇ ଦୈତ୍ୟସେନାଙ୍କ ସହ ଅତି ବେଗରେ ଦଉଡ଼ିଲା ॥ ୩୨ ॥

ତସ୍ୟାପତତ ଏବାଶୁ ଗଦାଂ ଚିଚ୍ଛେଦ ଚଣ୍ଡିକା ।
ଖଡ୍ଗେନ ଶିତଧାରେଣ ସ ଚ ଶୂଳଂ ସମାଦଦେ ॥ ୩୩ ॥
ଶୂଳହସ୍ତଂ ସମାୟାନ୍ତଂ ନିଶୁମ୍ଭମମରାର୍ଦ୍ଦନମ୍ ।
ହୃଦି ବିବ୍ୟାଧ ଶୂଳେନ ବେଗାବିଦ୍ଧେନ ଚଣ୍ଡିକା ॥ ୩୪ ॥
ଭିନ୍ନସ୍ୟ ତସ୍ୟ ଶୂଳେନ ହୃଦୟାନ୍ନିଃସୃତୋଽପରଃ ।
ମହାବଲୋ ମହାବୀର୍ଯ୍ୟସ୍ତିଷ୍ଠେତି ପୁରୁଷୋ ବଦନ୍ ॥ ୩୫ ॥
ତସ୍ୟ ନିଷ୍କ୍ରାମତୋ ଦେବୀ ପ୍ରହସ୍ୟ ସ୍ୱନବତ୍ତତଃ ।
ଶିରଶ୍ଚିଚ୍ଛେଦ ଖଡ୍ଗେନ ତତୋଽସାବପତଦ୍ଭୁବି ॥ ୩୬ ॥
ତତଃ ସିଂହଶ୍ଚଖାଦୋଗ୍ରଂ[୧] ଦଂଷ୍ଟ୍ରାକ୍ଷୁଣ୍ଣଶିରୋଧରାନ୍ ।
ଅସୁରାଂସ୍ତାଂସ୍ତଥା କାଳୀ ଶିବଦୂତୀ ତଥାପରାନ୍ ॥ ୩୭ ॥
କୌମାରୀଶକ୍ତିନିର୍ଭିନ୍ନାଃ କେଚିନ୍ନେଶୁର୍ମହାସୁରାଃ ।
ବ୍ରହ୍ମାଣୀମନ୍ତ୍ରପୂତେନ ତୋୟେନାନ୍ୟେ ନିରାକୃତାଃ ॥ ୩୮ ॥

ସେ ଆସୁଥିବାର ଦେଖି ଚଣ୍ଡୀଦେବୀ ତୀକ୍ଷ୍ଣ ଧାରୟୁକ୍ତ ଖଡ୍ଗଦ୍ୱାରା ତାର ଗଦାକୁ ତତ୍କ୍ଷଣାତ୍ କାଟି ଦେଲେ । ସେତେବେଳେ ସେ ହାତରେ ଶୂଳ ଧାରଣ କଲା ॥ ୩୩ ॥ ଦେବତାମାନଙ୍କୁ ପୀଡ଼ାପ୍ରଦାନକାରୀ ନିଶୁମ୍ଭକୁ ଶୂଳ ହସ୍ତରେ ଆସୁଥିବାର ଦେଖି ଚଣ୍ଡିକା ପ୍ରଚଣ୍ଡ ବେଗରେ ଶୂଳ ନିକ୍ଷେପ କରି ତାହାର ବକ୍ଷଃସ୍ଥଳକୁ ଛେଦନ କଲେ ॥ ୩୪ ॥ ଶୂଳଦ୍ୱାରା ବିଦୀର୍ଣ୍ଣ ହେବା ପରେ ତାହାର ଛାତିରୁ ଅନ୍ୟ ଏକ ମହାବଳୀ ଏବଂ ମହାପରାକ୍ରମୀ ପୁରୁଷ 'ଠିଆ ହୁଅ, ଠିଆ ହୁଅ' କହି ବାହାରିଲା ॥ ୩୫ ॥ ସେହି ବାହାରିଥିବା ପୁରୁଷର କଥା ଶୁଣି ଦେବୀ ଠୋ ଠୋ ହସିଉଠିଲେ ଏବଂ ଖଡ୍ଗରେ ତାହାର ମସ୍ତକ ଛେଦନ କଲେ । ତାପରେ ସେ ଧରଣୀ ଉପରେ ଲୋଟି ଗଲା ॥ ୩୬ ॥ ତଦନନ୍ତର ସିଂହ ନିଜ ତୀକ୍ଷ୍ଣ ଦାନ୍ତଦ୍ୱାରା ଅସୁରଙ୍କ ବେକ ଝୁଣି ଭକ୍ଷଣ କଲା; ଏହା ଅତି ଭୟଙ୍କର ଦୃଶ୍ୟ ଥିଲା । ତେଣେ କାଳୀ ତଥା ଶିବଦୂତୀ ମଧ୍ୟ ଅନ୍ୟାନ୍ୟ ଦୈତ୍ୟଙ୍କୁ ଭକ୍ଷଣ କରିବା ଆରମ୍ଭ କଲେ ॥ ୩୭ ॥ କୌମାରୀଙ୍କ

୧. ପା.—ଦୋଗ୍ରଦଂଷ୍ଟ୍ରା. ।

**ମାହେଶ୍ୱରୀତ୍ରିଶୂଳେନ ଭିନ୍ନାଃ ପେତୁସ୍ତଥାପରେ ।**
**ବାରାହୀତୁଣ୍ଡଘାତେନ କେଚିଚ୍ଚୂର୍ଣ୍ଣୀକୃତା ଭୁବି ॥ ୩୯ ॥**
**ଖଣ୍ଡଂ[୧] ଖଣ୍ଡଂ ଚ ଚକ୍ରେଣ ବୈଷ୍ଣବ୍ୟା ଦାନବାଃ କୃତାଃ ।**
**ବଜ୍ରେଣ ଚୈନ୍ଦ୍ରୀହସ୍ତାଗ୍ରବିମୁକ୍ତେନ ତଥାପରେ ॥ ୪୦ ॥**
**କେଚିଦ୍‌ବିନେଶୁରସୁରାଃ କେଚିନ୍ନଷ୍ଟା ମହାହବାତ୍ ।**
**ଭକ୍ଷିତାଶ୍ଚାପରେ କାଳୀଶିବଦୂତୀମୃଗାଧିପୈଃ ॥ ଓଁ ॥ ୪୧ ॥**

*ଇତି ଶ୍ରୀମାର୍କଣ୍ଡେୟପୁରାଣେ ସାବର୍ଣ୍ଣିକେ ମନ୍ୱନ୍ତରେ ଦେବୀମାହାତ୍ମ୍ୟେ*
*ନିଶୁମ୍ଭବଧୋ ନାମ ନବମୋଽଧ୍ୟାୟଃ ॥ ୯ ॥*

*ଉବାଚ ୨, ଶ୍ଳୋକାଃ ୩୯, ଏବମ୍ ୪୧, ଏବମାଦିତଃ ୫୪୩ ॥*



ଶକ୍ତିଦ୍ୱାରା ବିଦୀର୍ଣ୍ଣ ହୋଇ ଅନେକ ମହାଦୈତ୍ୟ ନଷ୍ଟ ହୋଇଗଲେ । ବ୍ରହ୍ମାଣୀଙ୍କ ମନ୍ତ୍ରପୂତ ଜଳରେ ନିସ୍ତେଜ ହୋଇ କେତେକ ପଳାୟନ କଲେ ॥ ୩୮ ॥ କେତେକ ଦୈତ୍ୟ ମାହେଶ୍ୱରୀଙ୍କ ତ୍ରିଶୂଳଦ୍ୱାରା ଛିନ୍ନଭିନ୍ନ ହୋଇ ଧରାଶାୟୀ ହେଲେ । ବାରାହୀଙ୍କ ତୁଣ୍ଡର ଆଘାତରେ କେତେକ ଦୈତ୍ୟ ପୃଥିବୀ ଉପରେ ଚୂର୍ଣ୍ଣୀଭୂତ ହୋଇଗଲେ ॥ ୩୯ ॥ ବୈଷ୍ଣବୀ ମଧ୍ୟ ନିଜ ଚକ୍ରରେ ଦାନବମାନଙ୍କୁ ଖଣ୍ଡ ଖଣ୍ଡ କରିଦେଲେ । ଐନ୍ଦ୍ରୀଙ୍କ ହସ୍ତରୁ ନିକ୍ଷିପ୍ତ ବଜ୍ରରେ ଅନେକ ପ୍ରାଣ ହରାଇଲେ ॥ ୪୦ ॥

କେତେକ ଅସୁର ନଷ୍ଟ ହୋଇଗଲେ; କେତେକ ସେହି ମହାଯୁଦ୍ଧରୁ ପଳାୟନ କଲେ ତଥା କେତେକ କାଳୀ, ଶିବଦୂତୀ ତଥା ସିଂହ ମୁଖରେ ଗ୍ରାସ ହେଲେ ॥ ୪୧ ॥

*ଏହିପରି ଶ୍ରୀମାର୍କଣ୍ଡେୟପୁରାଣରେ ସାବର୍ଣ୍ଣିକ ମନ୍ୱନ୍ତର କଥାନ୍ତର୍ଗତ*
*ଦେବୀମାହାତ୍ମ୍ୟରେ 'ନିଶୁମ୍ଭବଧ' ନାମକ ନବମ ଅଧ୍ୟାୟ*
*ସମାପ୍ତ ହେଲା ॥ ୯ ॥*



୧. ପା.—ଖଣ୍ଡଖଣ୍ଡଂ ।

# ଦଶମୋଽଧ୍ୟାୟଃ

[ଶୁମ୍ଭ ବଧ]

## ଧ୍ୟାନମ୍

ଓଁ ଉତ୍ତପ୍ତହେମରୁଚିରାଂ ରବିଚନ୍ଦ୍ରବହ୍ନି-
ନେତ୍ରାଂ ଧନୁଶ୍‌ଶରଯୁତାଙ୍କୁଶପାଶଶୂଳମ୍ ।
ରମ୍ୟୈର୍ଭୁଜୈଶ୍ଚ ଦଧତୀଂ ଶିବଶକ୍ତିରୂପାଂ
କାମେଶ୍ୱରୀଂ ହୃଦି ଭଜାମି ଧୃତେନ୍ଦୁଲେଖାମ୍ ॥

*'ଓଁ ଋଷିରୁବାଚ ॥ ୧ ॥*

ନିଶୁମ୍ଭଂ ନିହତଂ ଦୃଷ୍ଟ୍ୱା ଭ୍ରାତରଂ ପ୍ରାଣସମ୍ମିତମ୍ ।
ହନ୍ୟମାନଂ ବଲଂ ଚୈବ ଶୁମ୍ଭଃ କ୍ରୁଦ୍ଧୋଽବ୍ରବୀଦ୍‌ବଚଃ ॥ ୨ ॥
ବଲାବଲେପା[୧]ଦ୍ଦୁଷ୍ଟେ ତ୍ୱଂ ମା ଦୁର୍ଗେ ଗର୍ବମାବହ ।
ଅନ୍ୟାସାଂ ବଲମାଶ୍ରିତ୍ୟ ଯୁଦ୍ଧ୍ୟସେ ଯାତିମାନିନୀ ॥ ୩ ॥

---

ମୁଁ ମସ୍ତକ ଉପରେ ଅର୍ଦ୍ଧଚନ୍ଦ୍ର ଧାରଣ କରିଥିବା ଶିବଶକ୍ତିସ୍ୱରୂପା ଭଗବତୀ କାମେଶ୍ୱରୀଙ୍କୁ ହୃଦୟରେ ଚିନ୍ତନ କରୁଛି । ସେ ତପ୍ତ ସୁବର୍ଣ୍ଣ ସମାନ ସୁନ୍ଦର ଅଟନ୍ତି । ସୂର୍ଯ୍ୟ, ଚନ୍ଦ୍ରମା ଓ ଅଗ୍ନି—ଏହି ତିନିହେଁ ତାଙ୍କର ନେତ୍ର ତଥା ସେ ନିଜ ମନୋରମ ହସ୍ତରେ ଧନୁ-ଶର, ଅଙ୍କୁଶ, ପାଶ ଓ ଶୂଳ ଧାରଣ କରିଛନ୍ତି ।

**ଋଷି କହିଲେ**—॥ ୧ ॥ ହେ ରାଜନ୍ ! ନିଜ ପ୍ରାଣ ସମାନ ପ୍ରିୟ ଭ୍ରାତା ନିଶୁମ୍ଭକୁ ମରିବାର ଦେଖି ତଥା ସମଗ୍ର ସେନା ସଂହାର ହେବା ଜାଣି ଶୁମ୍ଭ କୁପିତ ହୋଇ କହିଲା—॥ ୨ ॥ 'ହେ ଦୁଷ୍ଟ ଦୁର୍ଗେ ! ତୁମେ ବଳର ଅଭିମାନରେ ମିଥ୍ୟା ଗର୍ବ କର ନାହିଁ । ତୁମେ ବଡ଼ ମାନିନୀ ହୋଇଛ । କିନ୍ତୁ ତୁମେ ଅନ୍ୟ ନାରୀମାନଙ୍କ ବଳର ସାହାଯ୍ୟ ନେଇ ସଂଗ୍ରାମ କରୁଛ' ॥ ୩ ॥

---

୧. ପା.—ପଦ୍ଦୁ. ।

*ଦେବ୍ୟୁବାଚ ॥ ୪ ॥*

**ଏକୈବାହଂ ଜଗତ୍ୟତ୍ର ଦ୍ୱିତୀୟା କା ମମାପରା ।**
**ପଶ୍ୟୈତା ଦୁଷ୍ଟ ମୟ୍ୟେବ ବିଶନ୍ତ୍ୟୋ ମଦ୍ୱିଭୂତୟଃ[୧] ॥ ୫ ॥**
**ତତଃ ସମସ୍ତାସ୍ତା ଦେବ୍ୟୋ ବ୍ରହ୍ମାଣୀପ୍ରମୁଖା ଲୟମ୍ ।**
**ତସ୍ୟା ଦେବ୍ୟାସ୍ତନୌ ଜଗ୍ମୁରେକୈବାସୀତ୍ତଦାମ୍ବିକା ॥ ୬ ॥**

*ଦେବ୍ୟୁବାଚ ॥ ୭ ॥*

**ଅହଂ ବିଭୂତ୍ୟା ବହୁଭିରିହ ରୂପୈର୍ଯଦାସ୍ଥିତା ।**
**ତତ୍ସଂହୃତଂ ମୟୈକୈବ ତିଷ୍ଠାମ୍ୟାଜୌ ସ୍ଥିରୋ ଭବ ॥ ୮ ॥**

*ଋଷିରୁବାଚ ॥ ୯ ॥*

**ତତଃ ପ୍ରବବୃତେ ଯୁଦ୍ଧଂ ଦେବ୍ୟାଃ ଶୁମ୍ଭସ୍ୟ ଚୋଭୟୋଃ ।**
**ପଶ୍ୟତାଂ ସର୍ବଦେବାନାମସୁରାଣାଂ ଚ ଦାରୁଣମ୍ ॥ ୧୦ ॥**
**ଶରବର୍ଷୈଃ ଶିତୈଃ ଶସ୍ତ୍ରୈସ୍ତଥାସ୍ତ୍ରୈଶ୍ଚୈବ ଦାରୁଣୈଃ ।**
**ତୟୋର୍ଯୁଦ୍ଧମଭୂଦ୍ ଭୂୟଃ ସର୍ବଲୋକଭୟଙ୍କରମ୍ ॥ ୧୧ ॥**

---

**ଦେବୀ କହିଲେ—॥ ୪ ॥** ଆରେ ଦୁଷ୍ଟ ! ମୁଁ ଏକାକୀ ରହିଛି । ଏହି ସଂସାରରେ ମୋ ବ୍ୟତୀତ ଅନ୍ୟ କିଏ ଅଛି ? ଦେଖ, ଏମାନେ ସବୁ ମୋର ବିଭୂତି । ଅତଃ ମୋ ଶରୀରରେ ହିଁ ପ୍ରବେଶ କରୁଛନ୍ତି ॥ ୫ ॥

ତାପରେ ବ୍ରହ୍ମାଣୀ ଆଦି ସମସ୍ତ ଦେବୀ ଅମ୍ବିକା ଦେବୀଙ୍କ ଶରୀରରେ ଲୀନ ହୋଇଗଲେ । ସେ ସମୟରେ କେବଳ ଅମ୍ବିକାଦେବୀ ରହିଲେ ॥ ୬ ॥

**ଦେବୀ କହିଲେ—॥ ୭ ॥** ମୁଁ ନିଜ ଐଶ୍ୱର୍ଯ୍ୟଶକ୍ତିବଳରେ ଅନେକ ରୂପରେ ଏଠାରେ ଉପସ୍ଥିତ ହୋଇଥିଲି । ସେହି ସବୁ ରୂପକୁ ମୁଁ ସମ୍ବରଣ କରିନେଲି । ସମ୍ପ୍ରତି ଏକାକୀ ଯୁଦ୍ଧରେ ଠିଆ ହୋଇଛି । ତୁମେ ମଧ୍ୟ ସ୍ଥିର ହୋଇଯାଅ ॥ ୮ ॥

**ଋଷି କହିଲେ—॥ ୯ ॥** ତାପରେ ସବୁ ଦେବତା ଓ ଦାନବମାନେ ଦେଖୁ ଦେଖୁ ଦେବୀ ଓ ଶୁମ୍ଭ ଦୁହିଁଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ ଆରମ୍ଭ ହେଲା ॥ ୧୦ ॥ ବାଣ ବର୍ଷା ତଥା ତୀକ୍ଷ୍ଣ ଶସ୍ତ୍ର ଓ ଦାରୁଣ ଅସ୍ତ୍ରର ପ୍ରହାରଦ୍ୱାରା

---

୧. କେତେକ ଗ୍ରନ୍ଥରେ ଏହାପରେ 'ଋଷିରୁବାଚ' ଏତିକି ମାତ୍ର ଅଧିକ ପାଠ ରହିଛି ।

ଦିବ୍ୟାନ୍ୟସ୍ତ୍ରାଣି ଶତଶୋ ମୁମୁଚେ ଯାନ୍ୟଥାମ୍ବିକା ।
ବଭଞ୍ଜ ତାନି ଦୈତ୍ୟେନ୍ଦ୍ରସ୍ତତ୍ପ୍ରତୀଘାତକର୍ତ୍ତୃଭିଃ ॥ ୧୨ ॥
ମୁକ୍ତାନି ତେନ ଚାସ୍ତ୍ରାଣି ଦିବ୍ୟାନି ପରମେଶ୍ୱରୀ ।
ବଭଞ୍ଜ ଲୀଲୟୈବୋଗ୍ରହୁଂ[1]କାରୋଚ୍ଚାରଣାଦିଭିଃ ॥ ୧୩ ॥
ତତଃ ଶରଶତୈର୍ଦେବୀମାଚ୍ଛାଦୟତ ସୋଽସୁରଃ ।
ସାପି[2] ତତ୍କୁପିତା ଦେବୀ ଧନୁଶ୍ଚିଚ୍ଛେଦ ଚେଷୁଭିଃ ॥ ୧୪ ॥
ଛିନ୍ନେ ଧନୁଷି ଦୈତ୍ୟେନ୍ଦ୍ରସ୍ତଥା ଶକ୍ତିମଥାଦଦେ ।
ଚିଚ୍ଛେଦ ଦେବୀ ଚକ୍ରେଣ ତାମପ୍ୟସ୍ୟ କରେ ସ୍ଥିତାମ୍ ॥ ୧୫ ॥
ତତଃ ଖଡ୍ଗମୁପାଦାୟ ଶତଚନ୍ଦ୍ରଂ ଚ ଭାନୁମତ୍ ।
ଅଭ୍ୟଧାବତ୍ତ[3]ଦା ଦେବୀଂ ଦୈତ୍ୟାନାମଧିପେଶ୍ୱରଃ ॥ ୧୬ ॥
ତସ୍ୟାପତତ ଏବାଶୁ ଖଡ୍ଗଂ ଚିଚ୍ଛେଦ ଚଣ୍ଡିକା ।
ଧନୁର୍ମୁକ୍ତୈଃ ଶିତୈର୍ବାଣୈଶ୍ଚର୍ମ ଚାର୍କକରାମଲମ୍[4] ॥ ୧୭ ॥

ସେହି ଦୁଇଜଣଙ୍କ ଯୁଦ୍ଧ ସମସ୍ତଙ୍କ ପାଇଁ ବେଶୀ ଭୟଙ୍କର ପ୍ରତୀତ ହେଲା ॥ ୧୧ ॥ ସେହି ସମୟରେ ଅମ୍ବିକା ଦେବୀ ଯେଉଁ ଶହ ଶହ ଦିବ୍ୟ ଅସ୍ତ୍ର ନିକ୍ଷେପ କଲେ; ସେଗୁଡ଼ିକୁ ଦୈତ୍ୟରାଜ ଶୁମ୍ଭ ତାହାର ନିବାରକ ଅସ୍ତ୍ରଦ୍ୱାରା କାଟିଦେଲା ॥ ୧୨ ॥ ଏହିପ୍ରକାର ଶୁମ୍ଭ ମଧ୍ୟ ଯେଉଁ ଦିବ୍ୟ ଅସ୍ତ୍ର ପ୍ରେରଣ କଲା; ତାହାକୁ ପରମେଶ୍ୱରୀ ଭୟଙ୍କର ହୁଙ୍କାର ଶବ୍ଦ ଉଚ୍ଚାରଣ ଆଦିଦ୍ୱାରା ଅତି ସହଜରେ ନଷ୍ଟ କରିଦେଲେ ॥ ୧୩ ॥ ତାପରେ ସେହି ଅସୁର ସହସ୍ର ବାଣଦ୍ୱାରା ଦେବୀଙ୍କୁ ଆଚ୍ଛାଦିତ କରିଦେଲା । ଏହା ଦେଖି କ୍ରୋଧଭର ହୋଇ ସେହି ଦେବୀ ମଧ୍ୟ ବାଣ ମାରି ତାହାର ଧନୁ କାଟିଦେଲେ ॥ ୧୪ ॥ ଧନୁ କଟିଯିବା ପରେ ଦୈତ୍ୟରାଜ ହସ୍ତରେ ଶକ୍ତି ଧାରଣ କଲା । କିନ୍ତୁ ଦେବୀ ଚକ୍ରରେ ତାହାର ହସ୍ତର ଶକ୍ତିକୁ ମଧ୍ୟ କାଟିଦେଲେ ॥ ୧୫ ॥ ତତ୍ପଶ୍ଚାତ୍ ଦୈତ୍ୟମାନଙ୍କ ସ୍ୱାମୀ ଶୁମ୍ଭ ଏକଶତ ଚନ୍ଦ୍ରଯୁକ୍ତ ଚମକୁଥିବା ଢାଲ ଓ ଖଡ୍ଗ ହସ୍ତରେ ଧରି ସେହି ସମୟରେ ଦେବୀଙ୍କ ଉପରେ ଆକ୍ରମଣ କଲା ॥ ୧୬ ॥ ସେ ଆସିବାମାତ୍ରେ ଚଣ୍ଡିକା ନିଜ ଧନୁରୁ

୧. ପା.—ହୂ. । ୨. ପା.—ସା ଚ । ୩. ପା.—ବତ ତାଂ ହନ୍ତୁଂ ଦୈତ୍ୟା. । ୪. ଏହାପରେ କେତେକ ସ୍ଥାନରେ 'ଅଶ୍ୱାଂଶ୍ଚ ପାତୟାମାସ ରଥଂ ସାରଥିନା ସହ ।' ଏତିକି ଅଧିକ ପାଠ ଅଛି ।

ହତାଶ୍ୱଃ ସ ତଦା ଦୈତ୍ୟଶ୍ଛିନ୍ନଧନ୍ୱା ବିସାରଥିଃ ।
ଜଗ୍ରାହ ମୁଦ୍‌ଗରଂ ଘୋରମମ୍ବିକାନିଧନୋଦ୍ୟତଃ ॥ ୧୮ ॥
ଚିଚ୍ଛେଦାପତତସ୍ତସ୍ୟ ମୁଦ୍‌ଗରଂ ନିଶିତୈଃ ଶରୈଃ ।
ତଥାପି ସୋଽଭ୍ୟଧାବତ୍ତାଂ ମୁଷ୍ଟିମୁଦ୍ୟମ୍ୟ ବେଗବାନ୍ ॥ ୧୯ ॥
ସ ମୁଷ୍ଟିଂ ପାତୟାମାସ ହୃଦୟେ ଦୈତ୍ୟପୁଙ୍ଗବଃ ।
ଦେବ୍ୟାସ୍ତଂ ଚାପି ସା ଦେବୀ ତଳେନୋରସ୍ୟତାଡୟତ୍ ॥ ୨୦ ॥
ତଳପ୍ରହାରାଭିହତୋ ନିପପାତ ମହୀତଳେ ।
ସ ଦୈତ୍ୟରାଜଃ ସହସା ପୁନରେବ ତଥୋତ୍ଥିତଃ ॥ ୨୧ ॥
ଉତ୍ପତ୍ୟ ଚ ପ୍ରଗୃହ୍ୟୋଚ୍ଚୈର୍ଦେବୀଂ ଗଗନମାସ୍ଥିତଃ ।
ତତ୍ରାପି ସା ନିରାଧାରା ଯୁଯୁଧେ ତେନ ଚଣ୍ଡିକା ॥ ୨୨ ॥
ନିଯୁଦ୍ଧଂ ଖେ ତଦା ଦୈତ୍ୟଶ୍ଚଣ୍ଡିକା ଚ ପରସ୍ପରମ୍ ।
ଚକ୍ରତୁଃ ପ୍ରଥମଂ ସିଦ୍ଧମୁନିବିସ୍ମୟକାରକମ୍ ॥ ୨୩ ॥

---

ତୀକ୍ଷ୍ଣ ଶର ସନ୍ଧାନ କରି ତାହାର ସୂର୍ଯ୍ୟକିରଣ ସମାନ ଉଜ୍ଜ୍ୱଳ ଢାଲ ଓ ଖଡ୍‌ଗକୁ ତୁରନ୍ତ କାଟିଦେଲେ ॥ ୧୭ ॥ ପୁନଶ୍ଚ ସେହି ଦୈତ୍ୟର ଅଶ୍ୱ ଓ ସାରଥିକୁ ହତ୍ୟା କଲେ । ଧନୁ ତ ପ୍ରଥମେ କଟିଯାଇଥିଲା । ବର୍ତ୍ତମାନ ସେ ଅମ୍ବିକାଙ୍କୁ ମାରିବା ପାଇଁ ଉଦ୍ୟତ ହୋଇ ଭୟଙ୍କର ମୁଦ୍‌ଗର ହସ୍ତରେ ଉଠାଇଲା ॥ ୧୮ ॥ ସେ ଆସୁଥିବାର ଦେଖି ଦେବୀ ନିଜ ତୀକ୍ଷ୍ଣ ବାଣଦ୍ୱାରା ତାହାର ମୁଦ୍‌ଗରକୁ ମଧ୍ୟ କାଟିଦେଲେ । ତଥାପି ସେହି ଅସୁର ମୁଷ୍ଟି ଉଞ୍ଚାଇ ଅତି ବେଗରେ ଦେବୀଙ୍କ ଆଡ଼କୁ ଝାମ୍ପି ଦେଲା ॥ ୧୯ ॥ ସେହି ଦୈତ୍ୟରାଜ ଦେବୀଙ୍କ ଛାତିରେ ମୁଷ୍ଟି ଆଘାତ କଲା । ସେତେବେଳେ ଦେବୀ ମଧ୍ୟ ତାହାର ଛାତିରେ ଏକ ଚାପୁଡ଼ା ଦେଲେ ॥ ୨୦ ॥ ଦେବୀଙ୍କ ଚାପୁଡା ଖାଇ ଦୈତ୍ୟରାଜ ଶୁମ୍ଭ ତଳେ ପଡ଼ିଗଲା । କିନ୍ତୁ ପୁନଃ ସହସା ପୂର୍ବବତ୍ ଉଠି ଠିଆ ହେଲା ॥ ୨୧ ॥ ତା'ପରେ ସେ ଉପରକୁ ଉଠିଲା ଓ ଦେବୀଙ୍କୁ ଉପରକୁ ନେଇ ଯାଇ ଆକାଶରେ ଠିଆ ହୋଇଗଲା । ସେତେବେଳେ ଚଣ୍ଡିକା ଆକାଶରେ ମଧ୍ୟ କୌଣସି ଆଧାର ନ ଥାଇ ଶୁମ୍ଭ ସହ ଯୁଦ୍ଧ କଲେ ॥ ୨୨ ॥ ସେହି ସମୟରେ ଦୈତ୍ୟ ଓ ଚଣ୍ଡିକା ଆକାଶରେ ପରସ୍ପର ସହ ଲଢ଼ିଲେ । ତାଙ୍କର ସେହି ଯୁଦ୍ଧ ପ୍ରଥମେ ସିଦ୍ଧ ଓ ମୁନିମାନଙ୍କୁ ବିସ୍ମୟାଭିଭୂତ କରିଥିଲା ॥ ୨୩ ॥

ତତୋ ନିଯୁଦ୍ଧଂ ସୁଚିରଂ କୃତ୍ୱା ତେନାମ୍ବିକା ସହ ।
ଉତ୍ପାତ୍ୟ ଭ୍ରାମୟାମାସ ଚିକ୍ଷେପ ଧରଣୀତଳେ ॥ ୨୪ ॥
ସ କ୍ଷିପ୍ତୋ ଧରଣୀଂ ପ୍ରାପ୍ୟ ମୁଷ୍ଟିମୁଦ୍ୟମ୍ୟ ବେଗିତଃ[୧] ।
ଅଭ୍ୟଧାବତ ଦୁଷ୍ଟାତ୍ମା ଚଣ୍ଡିକାନିଧନେଚ୍ଛୟା ॥ ୨୫ ॥
ତମାୟାନ୍ତଂ ତତୋ ଦେବୀ ସର୍ବଦୈତ୍ୟଜନେଶ୍ୱରମ୍ ।
ଜଗତ୍ୟାଂ ପାତୟାମାସ ଭିତ୍ତ୍ୱା ଶୂଳେନ ବକ୍ଷସି ॥ ୨୬ ॥
ସ ଗତାସୁଃ ପପାତୋର୍ବ୍ୟାଂ ଦେବୀଶୂଳାଗ୍ରବିକ୍ଷତଃ ।
ଚାଳୟନ୍ ସକଳାଂ ପୃଥ୍ୱୀଂ ସାବ୍ଧିଦ୍ୱୀପାଂ ସପର୍ବତାମ୍ ॥ ୨୭ ॥
ତତଃ ପ୍ରସନ୍ନମଖିଳଂ ହତେ ତସ୍ମିନ୍ ଦୁରାତ୍ମନି ।
ଜଗତ୍ସ୍ୱାସ୍ଥ୍ୟମତୀବାପ ନିର୍ମଳଂ ଚାଭବନ୍ନଭଃ ॥ ୨୮ ॥
ଉତ୍ପାତମେଘାଃ ସୋଲ୍କା ଯେ ପ୍ରାଗାସଂସ୍ତେ ଶମଂ ଯଯୁଃ ।
ସରିତୋ ମାର୍ଗବାହିନ୍ୟସ୍ତଥାସଂସ୍ତତ୍ର ପାତିତେ ॥ ୨୯ ॥

ପୁନଶ୍ଚ ଅମ୍ବିକା ଶୁମ୍ଭ ସହିତ ବହୁ ସମୟ ପର୍ଯ୍ୟନ୍ତ ଯୁଦ୍ଧ କରିବାପରେ ତାହାକୁ ଉଠାଇ ବୁଲାଇଲେ ଏବଂ ଧରଣୀ ଉପରେ କଚାଡ଼ିଦେଲେ ॥ ୨୪ ॥ ଦେବୀ କଚାଡ଼ି ଦେବାରୁ ପୃଥିବୀ ଉପରେ ଆସି ପଡ଼ିବା ପରେ ସେହି ଦୁଷ୍ଟାତ୍ମା ଦୈତ୍ୟ ପୁଣି ଚଣ୍ଡିକାଙ୍କୁ ବଧ କରିବା ପାଇଁ ତାଙ୍କ ଆଡ଼କୁ ଅତି ବେଗରେ ଦଉଡ଼ିଲା ॥ ୨୫ ॥ ସେତେବେଳେ ସମସ୍ତ ଦୈତ୍ୟଙ୍କ ରାଜା ଶୁମ୍ଭ ମାଡ଼ି ଆସୁଥିବାର ଦେଖି ଦେବୀ ତ୍ରିଶୂଳରେ ତାହାର ବକ୍ଷ ବିଦ୍ଧ କରି ତାହାକୁ ଧରାଶାୟୀ କରିଦେଲେ ॥ ୨୬ ॥ ଦେବୀଙ୍କ ଶୂଳଧାରରେ ଆଘାତପ୍ରାପ୍ତ ହେବା ମାତ୍ରେ ତାହାର ପ୍ରାଣ ଉଡ଼ିଗଲା । ସେ ସମୁଦ୍ର, ଦ୍ୱୀପ ତଥା ପର୍ବତଗୁଡ଼ିକ ସହିତ ସାରା ପୃଥିବୀକୁ କମ୍ପାଇ ଧରାଶାୟୀ ହେଲା ॥ ୨୭ ॥ ତାପରେ ସେହି ଦୁରାତ୍ମାର ମରଣ ଦେଖି ସମ୍ପୂର୍ଣ୍ଣ ଜଗତ୍ ପ୍ରସନ୍ନ ଏବଂ ପୂର୍ଣ୍ଣ ସ୍ୱସ୍ଥ ହେଲା ତଥା ଆକାଶ ସ୍ୱଚ୍ଛ ଦେଖାଗଲା ॥ ୨୮ ॥ ପ୍ରଥମେ ଯେଉଁ ଉତ୍ପାତସୂଚକ ମେଘ ଏବଂ ଉଲ୍କାପାତ ହେଉଥିଲା; ସେସବୁ ଶାନ୍ତ ହୋଇଗଲା । ସେହି ଦୈତ୍ୟ ମରିବାପରେ ନଦୀଗୁଡ଼ିକ ମଧ୍ୟ ଠିକ୍ ମାର୍ଗରେ ପ୍ରବାହିତ ହେଲେ ॥ ୨୯ ॥

୧.ପା.— ବେଗବାନ୍ ।

**ତତୋ ଦେବଗଣାଃ ସର୍ବେ ହର୍ଷନିର୍ଭରମାନସାଃ ।**
**ବଭୂବୁର୍ନିହତେ ତସ୍ମିନ୍ ଗନ୍ଧର୍ବା ଲଳିତଂ ଜଗୁଃ ॥ ୩୦ ॥**
**ଅବାଦୟଂସ୍ତଥୈବାନ୍ୟେ ନନୃତୁଶ୍ଚାପ୍‌ସରୋଗଣାଃ ।**
**ବବୁଃ ପୁଣ୍ୟାସ୍ତଥା ବାତାଃ ସୁପ୍ରଭୋଽଭୂଦ୍ଦିବାକରଃ ॥ ୩୧ ॥**
**ଜଜ୍ୱଲୁଶ୍ଚାଗ୍ନୟଃ ଶାନ୍ତାଃ ଶାନ୍ତା ଦିଗ୍‌ଜନିତସ୍ୱନାଃ ॥ ଓଁ ॥ ୩୨ ॥**

*ଇତି ଶ୍ରୀମାର୍କଣ୍ଡେୟପୁରାଣେ ସାବର୍ଣ୍ଣିକେ ମନ୍ୱନ୍ତରେ ଦେବୀମାହାତ୍ମ୍ୟେ*
*ଶୁମ୍ଭବଧୋ ନାମ ଦଶମୋଽଧ୍ୟାୟଃ ॥ ୧୦ ॥*
*ଉବାଚ ୪, ଅର୍ଧଶ୍ଳୋକଃ ୧, ଶ୍ଳୋକାଃ ୨୭, ଏବମ୍ ୩୨,*
*ଏବମାଦିତଃ ୫୭୫ ॥*



ସେହି ସମୟରେ ଶୁମ୍ଭର ମୃତ୍ୟୁ ଦେଖି ସମସ୍ତ ଦେବଗଣଙ୍କ ହୃଦୟ ହର୍ଷରେ ଉତ୍‌ଫୁଲ୍ଲ ହେଲା ଏବଂ ଗନ୍ଧର୍ବଗଣ ମଧୁର ସ୍ୱରରେ ଗୀତ ଗାଇବାକୁ ଲାଗିଲେ ॥ ୩୦ ॥ ଅନ୍ୟ ଗନ୍ଧର୍ବମାନେ ବାଦ୍ୟ ବଜାଇଲେ ଏବଂ ଅପ୍‌ସରାମାନେ ନୃତ୍ୟ କଲେ । ପବିତ୍ର ବାୟୁ ପ୍ରବାହିତ ହେଲା । ସୂର୍ଯ୍ୟଙ୍କ ପ୍ରଭା ଉତ୍ତମ ହେଲା ॥ ୩୧ ॥ ଅଗ୍ନିଶାଳାର ପ୍ରଶମିତ ଅଗ୍ନି ଆପେ ଆପେ ପ୍ରଜ୍ୱଳିତ ହୋଇଉଠିଲା ତଥା ଦିଗମାନଙ୍କର ଭୟଙ୍କର ଶବ୍ଦ ଶାନ୍ତ ହୋଇଗଲା ॥ ୩୨ ॥

*ଏହିପରି ଶ୍ରୀମାର୍କଣ୍ଡେୟପୁରାଣରେ ସାବର୍ଣ୍ଣିକ ମନ୍ୱନ୍ତର କଥାନ୍ତର୍ଗତ*
*ଦେବୀମାହାତ୍ମ୍ୟରେ 'ଶୁମ୍ଭବଧ' ନାମକ ଦଶମ ଅଧ୍ୟାୟ*
*ସମାପ୍ତ ହେଲା ॥ ୧୦ ॥*



# ଏକାଦଶୋଽଧ୍ୟାୟଃ

[ଦେବତାମାନଙ୍କ ଦ୍ୱାରା ଦେବୀଙ୍କ ସ୍ତୁତି ଏବଂ
ଦେବତାମାନଙ୍କୁ ଦେବୀଙ୍କ ବରଦାନ ପ୍ରସଙ୍ଗ]

## ଧ୍ୟାନମ୍

'ଓଁ ବାଲରବିଦ୍ୟୁତିମିନ୍ଦୁକିରୀଟାଂ ତୁଙ୍ଗକୁଚାଂ ନୟନତ୍ରୟଯୁକ୍ତାମ୍ ।
ସ୍ମେରମୁଖୀଂ ବରଦାଙ୍କୁଶପାଶାଭୀତିକରାଂ ପ୍ରଭଜେ ଭୁବନେଶୀମ୍ ॥

*'ଓଁ ଋଷିରୁବାଚ ॥ ୧ ॥*

ଦେବ୍ୟା ହତେ ତତ୍ର ମହାସୁରେନ୍ଦ୍ରେ
ସେନ୍ଦ୍ରାଃ ସୁରା ବହ୍ନିପୁରୋଗମାସ୍ତାମ୍ ।
କାତ୍ୟାୟନୀଂ ତୁଷ୍ଟୁବୁରିଷ୍ଟ[୧]ଲାଭାଦ୍
ବିକାଶିବକ୍ତ୍ରାବ୍ଜ[୨]ବିକାଶିତାଶାଃ ॥ ୨ ॥

---

ମୁଁ ଭୁବନେଶ୍ୱରୀ ଦେବୀଙ୍କୁ ଧ୍ୟାନ କରୁଛି । ତାଙ୍କ ଶ୍ରୀଅଙ୍ଗର ଆଭା ପ୍ରଭାତକାଳର ସୂର୍ଯ୍ୟସମାନ ଅଟେ ଏବଂ ମସ୍ତକ ଉପରେ ଚନ୍ଦ୍ରମାର ମୁକୁଟ ରହିଛି । ସେ ଉନ୍ନତ ସ୍ତନ ଓ ତିନିଟି ନେତ୍ରଦ୍ୱାରା ଯୁକ୍ତ ଅଟନ୍ତି । ତାଙ୍କର ମୁଖମଣ୍ଡଳରେ ସ୍ମିତହାସ୍ୟ ରହିଛି ଏବଂ ହସ୍ତରେ ବରଦ, ଅଙ୍କୁଶ, ପାଶ ଏବଂ ଅଭୟ-ମୁଦ୍ରା ଶୋଭା ପାଉଛି ।

**ଋଷି କହିଲେ**—॥ ୧ ॥ ଦେବୀଙ୍କ ଦ୍ୱାରା ସେଠାରେ ମହାଦୈତ୍ୟପତି ଶୁମ୍ଭ ମରିବା ପରେ ଦେବତାମାନେ ଅଗ୍ନିଙ୍କୁ ଆଗରେ ରଖି ସେହି କାତ୍ୟାୟନୀ ଦେବୀଙ୍କୁ ସ୍ତୁତି କଲେ । ସେହି ସମୟରେ ଅଭୀଷ୍ଟ ପ୍ରାପ୍ତି ହେବାରୁ ସେମାନଙ୍କର ମୁଖକମଳ ବିକଶିତ ହୋଇ ଉଠିଲା ଏବଂ ତାଙ୍କର ପ୍ରକାଶରେ ଦିଗଗୁଡ଼ିକ ମଧ୍ୟ ପ୍ରତିଭାତ ହେଉଥିଲେ ॥ ୨ ॥

---

୧. ପା.—ଲମ୍ଭା. । ୨. ପା.—ବକ୍ତ୍ରାସ୍ତୁ ବି. ।

ଦେବି ପ୍ରପନ୍ନାର୍ତ୍ତିହରେ ପ୍ରସୀଦ
ପ୍ରସୀଦ ମାତର୍ଜଗତୋଽଖିଳସ୍ୟ ।
ପ୍ରସୀଦ ବିଶ୍ୱେଶ୍ୱରି ପାହି ବିଶ୍ୱଂ
ତ୍ୱମୀଶ୍ୱରୀ ଦେବି ଚରାଚରସ୍ୟ ॥ ୩ ॥
ଆଧାରଭୂତା ଜଗତସ୍ତ୍ୱମେକା
ମହୀସ୍ୱରୂପେଣ ଯତଃ ସ୍ଥିତାସି ।
ଅପାଂ ସ୍ୱରୂପସ୍ଥିତୟା ତ୍ୱୟୈତ-
ଦାପ୍ୟାୟ୍ୟତେ କୃତ୍ସ୍ନମଲଙ୍ଘ୍ୟବୀର୍ଯ୍ୟେ ॥ ୪ ॥
ତ୍ୱଂ ବୈଷ୍ଣବୀ ଶକ୍ତିରନନ୍ତବୀର୍ଯ୍ୟା
ବିଶ୍ୱସ୍ୟ ବୀଜଂ ପରମାସି ମାୟା ।
ସମ୍ମୋହିତଂ ଦେବି ସମସ୍ତମେତତ୍
ତ୍ୱଂ ବୈ ପ୍ରସନ୍ନା ଭୁବି ମୁକ୍ତିହେତୁଃ ॥ ୫ ॥
ବିଦ୍ୟାଃ ସମସ୍ତାସ୍ତବ ଦେବି ଭେଦାଃ
ସ୍ତ୍ରିୟଃ ସମସ୍ତାଃ ସକଳା ଜଗତ୍ସୁ ।

---

ଦେବତାମାନେ କହିଲେ—ଶରଣାଗତର ପୀଡ଼ା ଦୂର କରୁଥିବା ହେ ଦେବି ! ଆମ୍ଭ ଉପରେ ପ୍ରସନ୍ନ ହୁଅ । ହେ ସମଗ୍ର ଜଗତ୍‌ର ମାତା ! ପ୍ରସନ୍ନ ହୁଅ । ହେ ବିଶ୍ୱେଶ୍ୱରି ! ବିଶ୍ୱକୁ ରକ୍ଷା କର । ହେ ଦେବି ! ତୁମେ ଚରାଚର ଜଗତ୍‌ର ଅଧୀଶ୍ୱରୀ ଅଟ ॥ ୩ ॥ ତୁମେ ଏହି ଜଗତ୍‌ର ଏକମାତ୍ର ଆଧାର ଅଟ; କାରଣ ପୃଥିବୀ ରୂପରେ ତୁମର ହିଁ ସ୍ଥିତି ଅଛି । ହେ ଦେବି ! ତୁମର ପରାକ୍ରମ ଅଲଙ୍ଘନୀୟ । ତୁମେ ଜଳରୂପରେ ସ୍ଥିତ ହୋଇ ସମଗ୍ର ଜଗତ୍‌କୁ ତୃପ୍ତ କରୁଛ ॥ ୪ ॥ ତୁମେ ଅନନ୍ତ ବଳସମ୍ପନ୍ନ ବୈଷ୍ଣବୀ ଶକ୍ତି ଅଟ । ଏହି ବିଶ୍ୱର କାରଣଭୂତା ପରା ମାୟା ଅଟ । ହେ ଦେବି ! ତୁମେ ଏହି ସମସ୍ତ ଜଗତ୍‌କୁ ମୋହିତ କରି ରଖିଛ । ତୁମେ ପ୍ରସନ୍ନା ହୋଇ ଏହି ପୃଥିବୀରେ ମୋକ୍ଷ ପ୍ରାପ୍ତି କରାଅ ॥ ୫ ॥ ହେ ଦେବି ! ସମସ୍ତ ବିଦ୍ୟା ତୁମ୍ଭର ଭିନ୍ନ ଭିନ୍ନ ସ୍ୱରୂପ ଅଟେ । ଜଗତ୍‌ରେ ଯେତେ ସ୍ତ୍ରୀଲୋକ ଅଛନ୍ତି; ସେମାନେ ସମସ୍ତେ ତୁମର ମୂର୍ତ୍ତି ଅଟନ୍ତି । ହେ ଜଗଦମ୍ବା ! ଏକମାତ୍ର

ତ୍ୱୟୈକୟା ପୂରିତମମ୍ବୟୈତତ୍

କା ତେ ସ୍ତୁତିଃ ସ୍ତବ୍ୟପରା ପରୋକ୍ତିଃ ॥ ୬ ॥

ସର୍ବଭୂତା ଯଦା ଦେବୀ ସ୍ୱର୍ଗମୁକ୍ତି[୧]ପ୍ରଦାୟିନୀ ।

ତ୍ୱଂ ସ୍ତୁତା ସ୍ତୁତୟେ କା ବା ଭବନ୍ତୁ ପରମୋକ୍ତୟଃ ॥ ୭ ॥

ସର୍ବସ୍ୟ ବୁଦ୍ଧିରୂପେଣ ଜନସ୍ୟ ହୃଦି ସଂସ୍ଥିତେ ।

ସ୍ୱର୍ଗାପବର୍ଗଦେ ଦେବି ନାରାୟଣି ନମୋଽସ୍ତୁ ତେ ॥ ୮ ॥

କଳାକାଷ୍ଠାଦିରୂପେଣ ପରିଣାମପ୍ରଦାୟିନି ।

ବିଶ୍ୱସ୍ୟୋପରତୌ ଶକ୍ତେ ନାରାୟଣି ନମୋଽସ୍ତୁ ତେ ॥ ୯ ॥

ସର୍ବମଙ୍ଗଳମଙ୍ଗଲ୍ୟେ[୨] ଶିବେ ସର୍ବାର୍ଥସାଧିକେ ।

ଶରଣ୍ୟେ ତ୍ର୍ୟମ୍ବକେ ଗୌରି ନାରାୟଣି ନମୋଽସ୍ତୁ ତେ ॥ ୧୦ ॥

ସୃଷ୍ଟିସ୍ଥିତିବିନାଶାନାଂ ଶକ୍ତିଭୂତେ ସନାତନି ।

ଗୁଣାଶ୍ରୟେ ଗୁଣମୟେ ନାରାୟଣି ନମୋଽସ୍ତୁ ତେ ॥ ୧୧ ॥

---

ତୁମେ ହିଁ ଏହି ବିଶ୍ୱକୁ ବ୍ୟାପ୍ତ କରିରଖିଛ । ତୁମର ସ୍ତୁତି କଣ ହୋଇପାରେ? ତୁମେ ସ୍ତବନ କରିବା ଯୋଗ୍ୟ ପଦାର୍ଥଠାରୁ ଊର୍ଦ୍ଧ୍ୱରେ ଓ ପରା ବାଣୀ ଅଟ ॥ ୬ ॥ ଯେତେବେଳେ ତୁମେ ସର୍ବସ୍ୱରୂପା ଦେବୀ ସ୍ୱର୍ଗ ତଥା ମୋକ୍ଷ ପ୍ରଦାନକାରିଣୀ, ସେତେବେଳେ ତୁମ୍ଭର ସ୍ତୁତି ପାଇଁ ଏହାଠାରୁ ଉତ୍ତମ ଉକ୍ତି ଆଉ କଣ ହୋଇପାରେ? ଏହି ରୂପରେ ହିଁ ତୁମର ସ୍ତୁତି ହୋଇଗଲା ॥ ୭ ॥ ବୁଦ୍ଧିରୂପରେ ସବୁଲୋକଙ୍କ ହୃଦୟରେ ବିରାଜମାନ କରୁଥିବା ତଥା ସ୍ୱର୍ଗ ଓ ମୋକ୍ଷ ପ୍ରଦାନ କରୁଥିବା ହେ ନାରାୟଣୀ ଦେବି ! ତୁମ୍ଭଙ୍କୁ ନମସ୍କାର ॥ ୮ ॥ କଳା, କାଷ୍ଠା ଆଦି ରୂପରେ କ୍ରମଶଃ ପରିଣାମ (ଅବସ୍ଥା-ପରିବର୍ତ୍ତନ) ଆଡ଼କୁ ନେଇଯାଉଥିବା ତଥା ବିଶ୍ୱର ଉପସଂହାର କରିବାରେ ସମର୍ଥ ହେ ନାରାୟଣି ! ତୁମ୍ଭଙ୍କୁ ନମସ୍କାର ॥ ୯ ॥ ହେ ନାରାୟଣି ! ତୁମେ ସବୁ ପ୍ରକାରର ମଙ୍ଗଳ ପ୍ରଦାନକାରିଣୀ ମଙ୍ଗଳମୟୀ ଅଟ । କଲ୍ୟାଣଦାୟିନୀ ଶିବା ଅଟ । ସମସ୍ତ ପୁରୁଷାର୍ଥ ସିଦ୍ଧକାରିଣୀ, ଶରଣାଗତବତ୍ସଳା, ତ୍ରିନେତ୍ରଯୁକ୍ତା ଏବଂ ଗୌରୀ ଅଟ । ତୁମ୍ଭଙ୍କୁ ନମସ୍କାର ॥ ୧୦ ॥ ତୁମେ ସୃଷ୍ଟି, ପାଳନ ଓ ସଂହାରର ଶକ୍ତିଭୂତା, ସନାତନୀ ଦେବୀ, ଗୁଣମାନଙ୍କର

---

୧. ପା.—ଭୁକ୍ତି. । ୨. ପା.—ମାଙ୍ଗଲ୍ୟେ ।

ଶରଣାଗତଦୀନାର୍ତ୍ତପରିତ୍ରାଣପରାୟଣେ ।
ସର୍ବସ୍ୟାର୍ତ୍ତିହରେ ଦେବି ନାରାୟଣି ନମୋଽସ୍ତୁ ତେ ॥ ୧୨ ॥
ହଂସଯୁକ୍ତବିମାନସ୍ଥେ ବ୍ରହ୍ମାଣୀରୂପଧାରିଣି ।
କୌଶାମ୍ଭଃକ୍ଷରିକେ ଦେବି ନାରାୟଣି ନମୋଽସ୍ତୁ ତେ ॥ ୧୩ ॥
ତ୍ରିଶୂଳଚନ୍ଦ୍ରାହିଧରେ ମହାବୃଷଭବାହିନି ।
ମାହେଶ୍ୱରୀସ୍ୱରୂପେଣ ନାରାୟଣି ନମୋଽସ୍ତୁ ତେ ॥ ୧୪ ॥
ମୟୂରକୁକ୍କୁଟବୃତେ ମହାଶକ୍ତିଧରେଽନଘେ ।
କୌମାରୀରୂପସଂସ୍ଥାନେ ନାରାୟଣି ନମୋଽସ୍ତୁ ତେ ॥ ୧୫ ॥
ଶଙ୍ଖଚକ୍ରଗଦାଶାର୍ଙ୍ଗଗୃହୀତପରମାୟୁଧେ ।
ପ୍ରସୀଦ ବୈଷ୍ଣବୀରୂପେ ନାରାୟଣି ନମୋଽସ୍ତୁ ତେ ॥ ୧୬ ॥
ଗୃହୀତୋଗ୍ରମହାଚକ୍ରେ ଦଂଷ୍ଟ୍ରୋଦ୍ଧୃତବସୁନ୍ଧରେ ।
ବରାହରୂପିଣି ଶିବେ ନାରାୟଣି ନମୋଽସ୍ତୁ ତେ ॥ ୧୭ ॥
ନୃସିଂହରୂପେଣୋଗ୍ରେଣ ହନ୍ତୁଂ ଦୈତ୍ୟାନ୍ କୃତୋଦ୍ୟମେ ।
ତ୍ରୈଲୋକ୍ୟତ୍ରାଣସହିତେ ନାରାୟଣି ନମୋଽସ୍ତୁ ତେ ॥ ୧୮ ॥

---

ଆଧାର ତଥା ସର୍ବଗୁଣମୟୀ ଅଟ । ହେ ନାରାୟଣି ! ତୁମ୍ଭଙ୍କୁ ନମସ୍କାର ॥ ୧୧ ॥ ଶରଣରେ ଆସିଥିବା ଦରିଦ୍ର ଓ ପୀଡ଼ିତମାନଙ୍କ ରକ୍ଷାନିମିତ୍ତ ସଂଲଗ୍ନ ତଥା ସମସ୍ତଙ୍କ ପୀଡ଼ା ଦୂର କରୁଥିବା ହେ ନାରାୟଣୀ ଦେବି ! ତୁମ୍ଭଙ୍କୁ ନମସ୍କାର ॥ ୧୨ ॥ ହେ ନାରାୟଣି ! ତୁମେ ବ୍ରହ୍ମାଣୀଙ୍କ ରୂପ ଧାରଣ କରି ହଂସଯୁକ୍ତ ବିମାନ ଉପରେ ବସିଛ ତଥା କୁଶ-ମିଶ୍ରିତ ଜଳ ସିଞ୍ଚନ କରୁଛ । ତୁମ୍ଭଙ୍କୁ ନମସ୍କାର ॥ ୧୩ ॥ ମାହେଶ୍ୱରୀରୂପରେ ତ୍ରିଶୂଳ, ଚନ୍ଦ୍ରମା ଏବଂ ସର୍ପକୁ ଧାରଣ କରୁଥିବା ତଥା ମହାନ୍ ବୃଷଭର ପୃଷ୍ଠରେ ବସିଥିବା ହେ ନାରାୟଣୀ ଦେବି ! ତୁମ୍ଭଙ୍କୁ ନମସ୍କାର ॥ ୧୪ ॥ ମୟୂର ଓ କୁକୁଡ଼ାମାନଙ୍କଦ୍ୱାରା ପରିବେଷ୍ଟିତ ତଥା ମହାଶକ୍ତି ଧାରଣ କରୁଥିବା କୌମାରୀରୂପଧାରିଣୀ ହେ ନିଷ୍ପାପ ନାରାୟଣି ! ତୁମ୍ଭଙ୍କୁ ନମସ୍କାର ॥ ୧୫ ॥ ଶଙ୍ଖ, ଚକ୍ର, ଗଦା ଓ ଶାର୍ଙ୍ଗଧନୁରୂପକ ଉତ୍ତମ ଆୟୁଧଗୁଡ଼ିକୁ ଧାରଣ କରିଥିବା ବୈଷ୍ଣବୀ ଶକ୍ତିରୂପା ହେ ନାରାୟଣି ! ତୁମ୍ଭେ ପ୍ରସନ୍ନ ହୁଅ । ତୁମ୍ଭଙ୍କୁ ନମସ୍କାର ॥ ୧୬ ॥ ହସ୍ତରେ ଭୟଙ୍କର ମହାଚକ୍ର ଧରି ଓ ଦାନ୍ତରେ ପୃଥିବୀକୁ ଉଠାଇଥିବା ବାରାହୀରୂପଧାରିଣୀ ହେ କଲ୍ୟାଣମୟୀ ନାରାୟଣି ! ତୁମ୍ଭଙ୍କୁ ନମସ୍କାର ॥ ୧୭ ॥ ଭୟଙ୍କର ନୃସିଂହରୂପରେ ଦୈତ୍ୟମାନଙ୍କ ବଧ ନିମନ୍ତେ ଉଦ୍ୟୋଗ କରୁଥିବା

କିରୀଟିନି ମହାବଜ୍ରେ ସହସ୍ରନୟନୋଜ୍ଜ୍ୱଳେ ।
ବୃତ୍ରପ୍ରାଣହରେ ଚୈନ୍ଦ୍ରି ନାରାୟଣି ନମୋଽସ୍ତୁ ତେ ॥ ୧୯ ॥
ଶିବଦୂତୀସ୍ୱରୂପେଣ ହତଦୈତ୍ୟମହାବଳେ ।
ଘୋରରୂପେ ମହାରାବେ ନାରାୟଣି ନମୋଽସ୍ତୁ ତେ ॥ ୨୦ ॥
ଦଂଷ୍ଟ୍ରାକରାଳବଦନେ ଶିରୋମାଳାବିଭୂଷଣେ ।
ଚାମୁଣ୍ଡେ ମୁଣ୍ଡମଥନେ ନାରାୟଣି ନମୋଽସ୍ତୁ ତେ ॥ ୨୧ ॥
ଲକ୍ଷ୍ମି ଲଜ୍ଜେ ମହାବିଦ୍ୟେ ଶ୍ରଦ୍ଧେ ପୁଷ୍ଟି[1] ସ୍ୱଧେ ଧ୍ରୁବେ ।
ମହାରାତ୍ରି[2] ମହାଽବିଦ୍ୟେ[3] ନାରାୟଣି ନମୋଽସ୍ତୁ ତେ ॥ ୨୨ ॥
ମେଧେ ସରସ୍ୱତି ବରେ ଭୂତି ବାଭ୍ରବି ତାମସି ।
ନିୟତେ ତ୍ୱଂ ପ୍ରସୀଦେଶେ ନାରାୟଣି ନମୋଽସ୍ତୁ ତେ[4] ॥ ୨୩ ॥

ତଥା ତ୍ରିଭୁବନର ରକ୍ଷାରେ ସଂଲଗ୍ନ ରହୁଥିବା ହେ ନାରାୟଣି ! ତୁମ୍ଭଙ୍କୁ ନମସ୍କାର ॥ ୧୮ ॥ ମସ୍ତକରେ କିରୀଟ ଓ ହସ୍ତରେ ମହାବଜ୍ର ଧାରଣ କରିଥିବା, ସହସ୍ର ନେତ୍ରଯୋଗୁଁ ଉଦ୍ଦୀପ୍ତ ଦେଖାଯାଉଥିବା ଓ ବୃତ୍ରାସୁର ପ୍ରାଣକୁ ଅପହରଣ କରିଥିବା ଇନ୍ଦ୍ରଶକ୍ତିରୂପା ହେ ନାରାୟଣୀ ଦେବି ! ତୁମ୍ଭଙ୍କୁ ନମସ୍କାର ॥ ୧୯ ॥ ଶିବଦୂତୀରୂପରେ ଦୈତ୍ୟମାନଙ୍କ ବିଶାଳ ସେନାକୁ ସଂହାର କରିଥିବା, ଭୟଙ୍କର ରୂପ ଧାରଣ କରି ବିକଟ ଗର୍ଜନ କରୁଥିବା ହେ ନାରାୟଣି ! ତୁମ୍ଭଙ୍କୁ ନମସ୍କାର ॥ ୨୦ ॥ ଦାନ୍ତ ଯୋଗୁଁ ବିକରାଳ ମୁଖଯୁକ୍ତା, ମୁଣ୍ଡମାଳାଦ୍ୱାରା ବିଭୂଷିତା ମୁଣ୍ଡମର୍ଦ୍ଦିନୀ, ଚାମୁଣ୍ଡାରୂପା ହେ ନାରାୟଣି ! ତୁମ୍ଭଙ୍କୁ ନମସ୍କାର ॥ ୨୧ ॥ ଲକ୍ଷ୍ମୀ, ଲଜ୍ଜା, ମହାବିଦ୍ୟା, ଶ୍ରଦ୍ଧା, ପୁଷ୍ଟି, ସ୍ୱଧା, ଧ୍ରୁବା, ମହାରାତ୍ରି ତଥା ମହାଅବିଦ୍ୟାରୂପା ହେ ନାରାୟଣି ! ତୁମ୍ଭଙ୍କୁ ନମସ୍କାର ॥ ୨୨ ॥ ମେଧା, ସରସ୍ୱତୀ, ବରା (ଶ୍ରେଷ୍ଠା), ଭୂତି (ଐଶ୍ୱର୍ଯ୍ୟରୂପା), ବାଭ୍ରବୀ (ଧୂସରରଙ୍ଗଯୁକ୍ତା ବା ପାର୍ବତୀ), ତାମସୀ (ମହାକାଳୀ), ନିୟତା (ସଂଯମପରାୟଣା) ତଥା ଈଶା (ସମସ୍ତଙ୍କ ଅଧୀଶ୍ୱରୀ) ରୂପିଣୀ

୧. ପା.—ପୁଷ୍ଟେ. ୨. ପା.—ରାତ୍ରେ । ୩. ପା—ମହାମାୟେ ।

୪. ଶାନ୍ତନବୀ ଟୀକାକାର ଏଠାରେ ଶ୍ଳୋକଟିଏ ଅଧିକ ଅଛି ବୋଲି ସ୍ୱୀକାର କରିଛନ୍ତି । ଯାହା ଏହି ପ୍ରକାର— 'ସର୍ବତଃପାଣିପାଦାନ୍ତେ ସର୍ବତୋଽକ୍ଷିଶିରୋମୁଖେ ।
ସର୍ବତଃଶ୍ରବଣଘ୍ରାଣେ ନାରାୟଣି ନମୋଽସ୍ତୁ ତେ ॥'

ସର୍ବସ୍ୱରୂପେ ସର୍ବେଶେ ସର୍ବଶକ୍ତିସମନ୍ୱିତେ ।
ଭୟେଭ୍ୟସ୍ତ୍ରାହି ନୋ ଦେବି ଦୁର୍ଗେ ଦେବି ନମୋଽସ୍ତୁ ତେ ॥ ୨୪ ॥
ଏତତ୍ତେ ବଦନଂ ସୌମ୍ୟଂ ଲୋଚନତ୍ରୟଭୂଷିତମ୍ ।
ପାତୁ ନଃ ସର୍ବଭୀତିଭ୍ୟଃ କାତ୍ୟାୟନି ନମୋଽସ୍ତୁ ତେ ॥ ୨୫ ॥
ଜ୍ୱାଳାକରାଳମତ୍ୟୁଗ୍ରମଶେଷାସୁରସୂଦନମ୍ ।
ତ୍ରିଶୂଳଂ ପାତୁ ନୋ ଭୀତେର୍ଭଦ୍ରକାଳି ନମୋଽସ୍ତୁ ତେ ॥ ୨୬ ॥
ହିନସ୍ତି ଦୈତ୍ୟତେଜାଂସି ସ୍ୱନେନାପୂର୍ଯ୍ୟ ଯା ଜଗତ୍ ।
ସା ଘଣ୍ଟା ପାତୁ ନୋ ଦେବି ପାପେଭ୍ୟୋଽନଃ ସୁତାନିବ ॥ ୨୭ ॥
ଅସୁରାସୃଗ୍‌ବସାପଙ୍କଚର୍ଚ୍ଚିତସ୍ତେ କରୋଜ୍ଜ୍ୱଳଃ ।
ଶୁଭାୟ ଖଡ୍ଗୋ ଭବତୁ ଚଣ୍ଡିକେ ତ୍ୱାଂ ନତା ବୟମ୍ ॥ ୨୮ ॥

ହେ ନାରାୟଣି ! ତୁମ୍ଭଙ୍କୁ ନମସ୍କାର ॥ ୨୩ ॥ ସର୍ବସ୍ୱରୂପା, ସର୍ବେଶ୍ୱରୀ ତଥା ସମସ୍ତ ପ୍ରକାରର ଶକ୍ତିଦ୍ୱାରାସଂପନ୍ନା ଦିବ୍ୟରୂପା ହେ ଦୁର୍ଗା ଦେବି ! ସମସ୍ତ ଭୟରୁ ଆମ୍ଭମାନଙ୍କୁ ରକ୍ଷା କର । ତୁମ୍ଭଙ୍କୁ ନମସ୍କାର ॥ ୨୪ ॥ ହେ କାତ୍ୟାୟନୀ ! ଏହି ତିନୋଟି ଲୋଚନଦ୍ୱାରା ବିଭୂଷିତ ତୁମ୍ଭର ସୌମ୍ୟ ମୁଖ ସମସ୍ତ ପ୍ରକାରର ଭୟରୁ ଆମ୍ଭମାନଙ୍କୁ ରକ୍ଷା କରୁ । ତୁମ୍ଭଙ୍କୁ ନମସ୍କାର ॥ ୨୫ ॥ ହେ ଭଦ୍ରକାଳୀ ! ଅଗ୍ନିଶିଖା ଯୋଗୁଁ ବିକରାଳ ପ୍ରତୀତ ହେଉଥିବା, ଅତ୍ୟନ୍ତ ଭୟଙ୍କର ଏବଂ ସମସ୍ତ ଅସୁରମାନଙ୍କୁ ସଂହାର କରୁଥିବା ତୁମ୍ଭର ତ୍ରିଶୂଳ ଆମ୍ଭଙ୍କୁ ଭୟରୁ ରକ୍ଷା କରୁ । ତୁମ୍ଭଙ୍କୁ ନମସ୍କାର ॥ ୨୬ ॥ ହେ ଦେବି ! ତୁମର ଘଣ୍ଟା ନିଜ ଧ୍ୱନିଦ୍ୱାରା ସମସ୍ତ ଜଗତ୍‌କୁ ବ୍ୟାପ୍ତ କରି ଦୈତ୍ୟଙ୍କ ତେଜ ନଷ୍ଟ କରେ । ଯେପରିକି ମାତା ପ୍ରାଣସ୍ୱରୂପ ପୁତ୍ରମାନଙ୍କୁ କୁକର୍ମରୁ ରକ୍ଷା କରନ୍ତି; ସେହିପରି ତୁମ୍ଭର ଘଣ୍ଟା ଆମ୍ଭମାନଙ୍କୁ ପାପରୁ ରକ୍ଷା କରୁ ॥ ୨୭ ॥ ହେ ଚଣ୍ଡିକେ ! ତୁମ୍ଭ ହସ୍ତରେ ସୁଶୋଭିତ ଖଡ୍‌ଗ ଯାହା ଅସୁରମାନଙ୍କ ରକ୍ତ ଓ ଚର୍ବିରେ ଚର୍ଚ୍ଚିତ ହୋଇଛି; ତାହା ଆମ୍ଭମାନଙ୍କର ମଙ୍ଗଳ କରୁ । ଆମ୍ଭେ ତୁମ୍ଭଙ୍କୁ ନମସ୍କାର କରୁଛୁ ॥ ୨୮ ॥

ରୋଗାନଶେଷାନପହଂସି ତୁଷ୍ଟା
ରୁଷ୍ଟାଂ[1] ତୁ କାମାନ୍ ସକଳାନଭୀଷ୍ଟାନ୍ ।
ତ୍ୱାମାଶ୍ରିତାନାଂ ନ ବିପନ୍ନରାଣାଂ
ତ୍ୱାମାଶ୍ରିତା ହ୍ୟାଶ୍ରୟତାଂ ପ୍ରୟାନ୍ତି ॥ ୨୯ ॥
ଏତତ୍‌କୃତଂ ଯତ୍‌କଦନଂ ତ୍ୱୟାଦ୍ୟ
ଧର୍ମଦ୍ୱିଷାଂ ଦେବି ମହାସୁରାଣାମ୍ ।
ରୂପୈରନେକୈର୍ବହୁଧାଽଽତ୍ମମୂର୍ତ୍ତିଂ
କୃତ୍ୱାମ୍ବିକେ ତତ୍‌ପ୍ରକରୋତି କାନ୍ୟା ॥ ୩୦ ॥
ବିଦ୍ୟାସୁ ଶାସ୍ତ୍ରେଷୁ ବିବେକଦୀପେ-
ଷ୍ୱାଦ୍ୟେଷୁ ବାକ୍ୟେଷୁ ଚ କା ତ୍ୱଦନ୍ୟା ।
ମମତ୍ୱଗର୍ତ୍ତେଽତିମହାନ୍ଧକାରେ
ବିଭ୍ରାମୟତ୍ୟେତଦତୀବ ବିଶ୍ୱମ୍ ॥ ୩୧ ॥

---

ହେ ଦେବି ! ତୁମେ ପ୍ରସନ୍ନ ହେଲେ ସବୁ ରୋଗକୁ ନଷ୍ଟ କରି ଦିଅ ଏବଂ କୁପିତ ହେଲେ ମନୋବାଞ୍ଛିତ ସମସ୍ତ କାମନାକୁ ନାଶ କରି ଦିଅ । ଯେଉଁ ଲୋକେ ତୁମ୍ଭର ଶରଣାପନ୍ନ ହୁଅନ୍ତି; ସେମାନଙ୍କ ଉପରେ ବିପତ୍ତି ପଡ଼େ ନାହିଁ। ତୁମ୍ଭର ଶରଣାପନ୍ନ ହୋଇଥିବା ମନୁଷ୍ୟ ଅନ୍ୟ ଲୋକକୁ ମଧ୍ୟ ଶରଣ ଦେଇପାରେ ॥ ୨୯ ॥ ହେ ଦେବି ! ହେ ଅମ୍ବିକେ !! ତୁମେ ନିଜ ସ୍ୱରୂପକୁ ଅନେକ ଭାଗରେ ବିଭକ୍ତ କରି ନାନାପ୍ରକାରର ରୂପରେ ଯେଉଁ ସମୟରେ ଏହି ଧର୍ମଦ୍ରୋହୀ ମହାଦୈତ୍ୟମାନଙ୍କୁ ସଂହାର କଲ; ସେସବୁ ଆଉ କିଏ ବା କରିପାରିଥାନ୍ତା ? ॥ ୩୦ ॥ ବିଦ୍ୟା, ଜ୍ଞାନକୁ ପ୍ରକାଶିତ କରୁଥିବା ଶାସ୍ତ୍ର ତଥା ଆଦିବାକ୍ୟ(ବେଦ)ରେ ତୁମ୍ଭ ବିନା ଆଉ କାହାର ବର୍ଣ୍ଣନା ଅଛି ? ତଥା ତୁମ୍ଭକୁ ଛାଡ଼ି ଅନ୍ୟ ଏପରି କେଉଁ ଶକ୍ତି ଅଛି; ଯାହା ଏହି ବିଶ୍ୱକୁ ଅଜ୍ଞାନମୟ ଘୋର ଅନ୍ଧକାରରେ ପରିପୂର୍ଣ୍ଣ ମମତାରୂପୀ ଗର୍ତ୍ତରେ ନିରନ୍ତର ଭ୍ରମିତ କରାଉଅଛି ॥ ୩୧ ॥

---

୧. ପା.—ଦଦାସି କାମାନ୍ ।

ରକ୍ଷାଂସି ଯତ୍ରୋଗ୍ରବିଷାଶ୍ଚ ନାଗା
ଯତ୍ରାରୟୋ ଦସ୍ୟୁବଲାନି ଯତ୍ର ।
ଦାବାନଲୋ ଯତ୍ର ତଥାବ୍ଧିମଧ୍ୟେ
ତତ୍ର ସ୍ଥିତା ତ୍ୱଂ ପରିପାସି ବିଶ୍ୱମ୍ ॥ ୩୨ ॥
ବିଶ୍ୱେଶ୍ୱରି ତ୍ୱଂ ପରିପାସି ବିଶ୍ୱଂ
ବିଶ୍ୱାତ୍ମିକା ଧାରୟସୀତି ବିଶ୍ୱମ୍ ।
ବିଶ୍ୱେଶବନ୍ଦ୍ୟା ଭବତୀ ଭବନ୍ତି
ବିଶ୍ୱାଶ୍ରୟା ଯେ ତ୍ୱୟି ଭକ୍ତିନମ୍ରାଃ ॥ ୩୩ ॥
ଦେବି ପ୍ରସୀଦ ପରିପାଳୟ ନୋଽରିଭୀତେ-
ର୍ନିତ୍ୟଂ ଯଥାସୁରବଧାଦଧୁନୈବ ସଦ୍ୟଃ ।
ପାପାନି ସର୍ବଜଗତାଂ ପ୍ରଶମଂ[୧] ନୟାଶୁ
ଉତ୍ପାତପାକଜନିତାଂଶ୍ଚ ମହୋପସର୍ଗାନ୍ ॥ ୩୪ ॥

ଯେଉଁଠାରେ ରାକ୍ଷସ, ଯେଉଁଠାରେ ଭୟଙ୍କର ବିଷଧର ସର୍ପ, ଯେଉଁଠାରେ ଦସ୍ୟୁସେନା ଓ ଯେଉଁଠାରେ ଦାବାନଳ ରହିଛି; ସେଠାରେ ତଥା ସମୁଦ୍ର ମଝିରେ ସଙ୍ଗରେ ରହି ତୁମେ ବିଶ୍ୱକୁ ରକ୍ଷା କରୁଛ ॥ ୩୨ ॥ ହେ ବିଶ୍ୱେଶ୍ୱରି ! ତୁମେ ବିଶ୍ୱକୁ ପାଳନ କରୁଛ । ବିଶ୍ୱରୂପା ଅଟ । ତେଣୁ ସମସ୍ତ ବିଶ୍ୱକୁ ଧାରଣ କରୁଛ । ତୁମେ ଭଗବାନ୍ ବିଶ୍ୱନାଥଙ୍କର ମଧ୍ୟ ବନ୍ଦନୀୟା ଅଟ । ଯେଉଁ ଲୋକେ ଭକ୍ତିପୂର୍ବକ ତୁମ୍ଭର ପୁରୋଭାଗରେ ମସ୍ତକ ଅବନତ କରନ୍ତି; ସେମାନେ ସମ୍ପୂର୍ଣ୍ଣ ବିଶ୍ୱକୁ ଆଶ୍ରୟ ଦେବାକୁ ସମର୍ଥ ହୁଅନ୍ତି ॥ ୩୩ ॥ ହେ ଦେବି ! ପ୍ରସନ୍ନ ହୁଅ । ଯେପରି ଏହି ସମୟରେ ଅସୁରମାନଙ୍କୁ ବଧ କରି ତୁମେ ଶୀଘ୍ର ଆମ୍ଭଙ୍କୁ ରକ୍ଷା କରିଛ; ସେହିପ୍ରକାର ସର୍ବଦା ଆମ୍ଭଙ୍କୁ ଶତ୍ରୁମାନଙ୍କ ଭୟରୁ ବଞ୍ଚାଅ । ସମସ୍ତ ଜଗତ୍‌ର ପାପ ନଷ୍ଟ କରି ଦିଅ । ଉତ୍ପାତ ଓ ପାପରାଶିର ଫଳସ୍ୱରୂପ ମହାମାରୀ ଆଦି ବଡ଼ ବଡ଼ ଉପଦ୍ରବକୁ ଶୀଘ୍ର ଦୂର କରି ଦିଅ ॥ ୩୪ ॥

୧. ପା.—ଚ ଶମଂ ।

ପ୍ରଣତାନାଂ ପ୍ରସୀଦ ତ୍ୱଂ ଦେବି ବିଶ୍ୱାର୍ତ୍ତିହାରିଣି ।
ତ୍ରୈଲୋକ୍ୟବାସିନାମୀଡ୍ୟେ ଲୋକାନାଂ ବରଦା ଭବ ॥ ୩୫ ॥

*ଦେବ୍ୟୁବାଚ ॥ ୩୬ ॥*

ବରଦାହଂ ସୁରଗଣା ବରଂ ଯନ୍ମନସେଚ୍ଛଥ ।
ତଂ ବୃଣୁଧ୍ୱଂ ପ୍ରଯଚ୍ଛାମି ଜଗତାମୁପକାରକମ୍ ॥ ୩୭ ॥

*ଦେବା ଊଚୁଃ ॥ ୩୮ ॥*

ସର୍ବାବାଧାପ୍ରଶମନଂ ତ୍ରୈଲୋକ୍ୟସ୍ୟାଖିଳେଶ୍ୱରି ।
ଏବମେବ ତ୍ୱୟା କାର୍ଯ୍ୟମସ୍ମଦ୍‌ବୈରିବିନାଶନମ୍ ॥ ୩୯ ॥

*ଦେବ୍ୟୁବାଚ ॥ ୪୦ ॥*

ବୈବସ୍ୱତେଽନ୍ତରେ ପ୍ରାପ୍ତେ ଅଷ୍ଟାବିଂଶତିମେ ଯୁଗେ ।
ଶୁମ୍ଭୋ ନିଶୁମ୍ଭଶ୍ଚୈବାନ୍ୟାବୁତ୍ପତ୍ସ୍ୟେତେ ମହାସୁରୌ ॥ ୪୧ ॥
ନନ୍ଦଗୋପଗୃହେ[୧] ଜାତା ଯଶୋଦାଗର୍ଭସମ୍ଭବା ।
ତତସ୍ତୌ ନାଶୟିଷ୍ୟାମି ବିନ୍ଧ୍ୟାଚଳନିବାସିନୀ ॥ ୪୨ ॥

ହେ ବିଶ୍ୱଦୁଃଖହାରିଣୀ ଦେବି ! ଆମ୍ଭେ ତୁମ୍ଭର ଚରଣ ତଳେ ଆଶ୍ରିତ । ଆମ୍ଭ ଉପରେ ପ୍ରସନ୍ନ ହୁଅ । ତ୍ରିଲୋକନିବାସୀମାନଙ୍କ ପୂଜନୀୟା ହେ ପରମେଶ୍ୱରି ! ସମସ୍ତଙ୍କୁ ବରଦାନ ଦିଅ ॥ ୩୫ ॥

**ଦେବୀ କହିଲେ**—॥ ୩୬ ॥ ହେ ଦେବଗଣ ! ମୁଁ ବର ଦେବାକୁ ପ୍ରସ୍ତୁତ ଅଛି । ତୁମ ମନରେ ଯାହା ଇଚ୍ଛା ଅଛି; ସେସବୁ ବର ପ୍ରାର୍ଥନା କର । ସଂସାର ନିମନ୍ତେ ସେହି ଉପକାରକ ବରକୁ ମୁଁ ନିଶ୍ଚିତଭାବରେ ପ୍ରଦାନ କରିବି ॥ ୩୭ ॥

**ଦେବଗଣ କହିଲେ**—॥ ୩୮ ॥ ହେ ସର୍ବେଶ୍ୱରି ! ତୁମେ ଏହିପ୍ରକାର ତ୍ରିଭୁବନର ସମସ୍ତ ବାଧାଗୁଡ଼ିକୁ ଶାନ୍ତ କର ଓ ଆମର ଶତ୍ରୁମାନଙ୍କୁ ବିନାଶ କରୁଥାଅ ॥ ୩୯ ॥

**ଦେବୀ କହିଲେ**—॥ ୪୦ ॥ ହେ ଦେବଗଣ ! ବୈବସ୍ୱତ ମନ୍ୱନ୍ତରର ଅଷ୍ଟାବିଂଶତିତମ ଯୁଗରେ ଶୁମ୍ଭ ଓ ନିଶୁମ୍ଭ ନାମକ ଦୁଇଟି ଅନ୍ୟ ମହାଦୈତ୍ୟ ଉତ୍ପନ୍ନ ହେବେ ॥ ୪୧ ॥ ସେତେବେଳେ ମୁଁ ନନ୍ଦଗୋପର ଗୃହରେ ତାର

୧. ପା.—କୁଳେ ।

ପୁନରପ୍ୟତିରୌଦ୍ରେଣ ରୂପେଣ ପୃଥିବୀତଳେ ।
ଅବତୀର୍ଯ୍ୟ ହନିଷ୍ୟାମି ବୈପ୍ରଚିତ୍ତାଂସ୍ତୁ ଦାନବାନ୍ ॥ ୪୩ ॥
ଭକ୍ଷୟନ୍ତ୍ୟାଶ୍ଚ ତାନୁଗ୍ରାନ୍ ବୈପ୍ରଚିତ୍ତାନ୍ମହାସୁରାନ୍ ।
ରକ୍ତା ଦନ୍ତା ଭବିଷ୍ୟନ୍ତି ଦାଡିମୀକୁସୁମୋପମାଃ ॥ ୪୪ ॥
ତତୋ ମାଂ ଦେବତାଃ ସ୍ୱର୍ଗେ ମର୍ତ୍ତ୍ୟଲୋକେ ଚ ମାନବାଃ ।
ସ୍ତୁବନ୍ତୋ ବ୍ୟାହରିଷ୍ୟନ୍ତି ସତତଂ ରକ୍ତଦନ୍ତିକାମ୍ ॥ ୪୫ ॥
ଭୂୟଶ୍ଚ ଶତବାର୍ଷିକ୍ୟାମନାବୃଷ୍ଟ୍ୟାମନମ୍ଭସି ।
ମୁନିଭିଃ ସଂସ୍ତୁତା ଭୂମୌ ସମ୍ଭବିଷ୍ୟାମ୍ୟଯୋନିଜା ॥ ୪୬ ॥
ତତଃ ଶତେନ ନେତ୍ରାଣାଂ ନିରୀକ୍ଷିଷ୍ୟାମି ଯନ୍ମୁନୀନ୍ ।
କୀର୍ତ୍ତୟିଷ୍ୟନ୍ତି ମନୁଜାଃ ଶତାକ୍ଷୀମିତି ମାଂ ତତଃ ॥ ୪୭ ॥
ତତୋଽହମଖିଳଂ ଲୋକମାତ୍ମଦେହସମୁଦ୍ଭବୈଃ ।
ଭରିଷ୍ୟାମି ସୁରାଃ ଶାକୈରାବୃଷ୍ଟେଃ ପ୍ରାଣଧାରକୈଃ ॥ ୪୮ ॥

---

ପତ୍ନୀ ଯଶୋଦାର ଗର୍ଭରୁ ଅବତୀର୍ଣ୍ଣ ହୋଇ ବିନ୍ଧ୍ୟାଚଳରେ ଯାଇ ବାସ କରିବି ଏବଂ ଉକ୍ତ ଅସୁରଦ୍ୱୟଙ୍କୁ ବିନାଶ କରିବି ॥ ୪୨ ॥ ପୁନଶ୍ଚ ଅତ୍ୟନ୍ତ ଭୟଙ୍କର ରୂପରେ ପୃଥିବୀରେ ଅବତାର ନେଇ ମୁଁ ବୈପ୍ରଚିତ୍ତ ନାମଧାରୀ ଦାନବଙ୍କୁ ବଧ କରିବି ॥ ୪୩ ॥ ସେହି ଭୟଙ୍କର ମହାଦୈତ୍ୟମାନଙ୍କୁ ଭକ୍ଷଣ କରିବା ସମୟରେ ମୋର ଦାନ୍ତ ଡାଳିମ୍ବ ଫୁଲସଦୃଶ ରକ୍ତିମ ହୋଇଯିବ ॥ ୪୪ ॥ ସେତେବେଳେ ସ୍ୱର୍ଗରେ ଦେବତା ଓ ମର୍ତ୍ତ୍ୟଲୋକରେ ମନୁଷ୍ୟମାନେ ସର୍ବଦା ମୋତେ ସ୍ତୁତି କରି 'ରକ୍ତଦନ୍ତିକା'ବୋଲି କହିବେ ॥ ୪୫ ॥ ପୁନଶ୍ଚ ଯେତେବେଳେ ପୃଥିବୀ ଉପରେ ଏକ ଶତ ବର୍ଷ ପର୍ଯ୍ୟନ୍ତ ବର୍ଷା ହେବ ନାହିଁ ଏବଂ ଜଳର ଅଭାବ ହେବ; ସେହି ସମୟରେ ମୁନିଗଣ ସ୍ତବ କରିବାପରେ ମୁଁ ପୃଥିବୀରେ ଅଯୋନିଜାରୂପରେ ପ୍ରକଟ ହେବି ॥ ୪୬ ॥ ତାପରେ ଏକଶତ ନେତ୍ରଦ୍ୱାରା ମୁନିମାନଙ୍କୁ ଦେଖିବି । ଅତଃ ସେହିଦିନ ଠାରୁ ମନୁଷ୍ୟ 'ଶତାକ୍ଷୀ' ନାମରେ ମୋର କୀର୍ତ୍ତନ କରିବେ ॥ ୪୭ ॥ ହେ ଦେବଗଣ ! ସେହି ସମୟରେ ମୁଁ ନିଜ ଶରୀରରୁ ଉତ୍ପନ୍ନ ହେଉଥିବା ଶାଗଦ୍ୱାରା ସମସ୍ତ ସଂସାରର ଭରଣ-

ଶାକମ୍ଭରୀତି ବିଖ୍ୟାତିଂ ତଦା ଯାସ୍ୟାମ୍ୟହଂ ଭୁବି ।
ତତ୍ରୈବ ଚ ବଧିଷ୍ୟାମି ଦୁର୍ଗମାଖ୍ୟଂ ମହାସୁରମ୍ ॥ ୪୯ ॥
ଦୁର୍ଗା ଦେବୀତି ବିଖ୍ୟାତଂ ତନ୍ମେ ନାମ ଭବିଷ୍ୟତି ।
ପୁନଶ୍ଚାହଂ ଯଦା ଭୀମଂ ରୂପଂ କୃତ୍ୱା ହିମାଚଲେ ॥ ୫୦ ॥
ରକ୍ଷାଂସି ଭକ୍ଷୟିଷ୍ୟାମି[୧] ମୁନୀନାଂ ତ୍ରାଣକାରଣାତ୍ ।
ତଦା ମାଂ ମୁନୟଃ ସର୍ବେ ସ୍ତୋଷ୍ୟନ୍ତ୍ୟାନମ୍ରମୂର୍ତ୍ତୟଃ ॥ ୫୧ ॥
ଭୀମା ଦେବୀତି ବିଖ୍ୟାତଂ ତନ୍ମେ ନାମ ଭବିଷ୍ୟତି ।
ଯଦାରୁଣାଖ୍ୟସ୍ତ୍ରୈଲୋକ୍ୟେ ମହାବାଧାଂ କରିଷ୍ୟତି ॥ ୫୨ ॥
ତଦାହଂ ଭ୍ରାମରଂ ରୂପଂ କୃତ୍ୱାଽସଂଖ୍ୟେୟଷଟ୍‌ପଦମ୍ ।
ତ୍ରୈଲୋକ୍ୟସ୍ୟ ହିତାର୍ଥାୟ ବଧିଷ୍ୟାମି ମହାସୁରମ୍ ॥ ୫୩ ॥

ପୋଷଣ କରିବି । ଯେପର୍ଯ୍ୟନ୍ତ ବର୍ଷା ହେବ ନାହିଁ; ସେପର୍ଯ୍ୟନ୍ତ ସେହି ଶାଗ ହିଁ ସମସ୍ତଙ୍କ ପ୍ରାଣରକ୍ଷା କରିବ ॥ ୪୮ ॥ ଏହିଭଳି କରିବାହେତୁ ପୃଥିବୀରେ 'ଶାକମ୍ଭରୀ' ନାମରେ ମୋର ଖ୍ୟାତି ହେବ। ସେହି ଅବତାରରେ ମୁଁ ଦୁର୍ଗମ ନାମକ ମହାଦୈତ୍ୟକୁ ବଧ କରିବି ॥ ୪୯ ॥ ଏହାଦ୍ୱାରା ମୋର ନାମ 'ଦୁର୍ଗାଦେବୀ'ରୂପରେ ପ୍ରସିଦ୍ଧ ହେବ। ପୁନଶ୍ଚ ମୁଁ ଯେତେବେଳେ ଭୀମରୂପ ଧାରଣ କରି ମୁନିମାନଙ୍କ ରକ୍ଷା ନିମନ୍ତେ ହିମାଳୟ ଉପରେ ରହିଥିବା ରାକ୍ଷସମାନଙ୍କୁ ଭକ୍ଷଣ କରିବି; ସେହି ସମୟରେ ସବୁ ମୁନି ଭକ୍ତିପୂର୍ବକ ନତମସ୍ତକ ହୋଇ ମୋର ସ୍ତୁତି କରିବେ ॥ ୫୦-୫୧ ॥ ସେତେବେଳେ ମୋର ନାମ ଭୀମାଦେବୀ ରୂପରେ ବିଖ୍ୟାତ ହେବ। ଯେତେବେଳେ ଅରୁଣ ନାମକ ଦୈତ୍ୟ ତ୍ରିଭୁବନରେ ଭୀଷଣ ଉପଦ୍ରବ କରିବ ॥ ୫୨ ॥ ସେହି ସମୟରେ ମୁଁ ତିନିଲୋକରେ ହିତ କରିବା ନିମନ୍ତେ ଛଅଟି ପାଦଯୁକ୍ତ ଅସଂଖ୍ୟ ଭ୍ରମରଙ୍କ ରୂପ ଧାରଣ କରି ସେହି ମହାଦୈତ୍ୟକୁ ବଧ କରିବି ॥ ୫୩ ॥

୧. ପା.—କ୍ଷୟୟିଷ୍ୟାମି (କ୍ଷପୟିଷ୍ୟାମି ଇତି ବା) ।

**ଭ୍ରାମରୀତି ଚ ମାଂ ଲୋକାସ୍ତଦା ସ୍ତୋଷ୍ୟନ୍ତି ସର୍ବତଃ ।**
**ଇତ୍ଥଂ ଯଦା ଯଦା ବାଧା ଦାନବୋତ୍ଥା ଭବିଷ୍ୟତି ॥ ୫୪ ॥**
**ତଦା ତଦାବତୀର୍ଯ୍ୟାହଂ କରିଷ୍ୟାମ୍ୟରିସଂକ୍ଷୟମ୍ ॥ ଓଁ ॥ ୫୫ ॥**

*ଇତି ଶ୍ରୀମାର୍କଣ୍ଡେୟପୁରାଣେ ସାବର୍ଣ୍ଣିକେ ମନ୍ୱନ୍ତରେ ଦେବୀମାହାତ୍ମ୍ୟେ*
*ଦେବ୍ୟାଃ ସ୍ତୁତିର୍ନାମୈକାଦଶୋଽଧ୍ୟାୟଃ ॥ ୧୧ ॥*
*ଉବାଚ ୪, ଅର୍ଧଶ୍ଳୋକଃ ୧, ଶ୍ଳୋକାଃ ୫୦,*
*ଏବମ୍ ୫୫, ଏବମାଦିତଃ ॥ ୬୩୦ ॥*



ସେହି ସମୟରେ ସବୁ ଲୋକ 'ଭ୍ରାମରୀ' ନାମରେ ଚତୁର୍ଦିଗରେ ମୋର ସ୍ତୁତି କରିବେ । ଏହି ପ୍ରକାର ଆଉ ଯେତେବେଳେ ବି ସଂସାରରେ ଦାନବୀ ବାଧା ଉପସ୍ଥିତ ହେବ; ସେତେବେଳେ ଅବତାର ଗ୍ରହଣ କରି ମୁଁ ଶତ୍ରୁମାନଙ୍କୁ ସଂହାର କରିବି ॥ ୫୪-୫୫ ॥

*ଏହିପରି ଶ୍ରୀମାର୍କଣ୍ଡେୟପୁରାଣରେ ସାବର୍ଣ୍ଣିକ ମନ୍ୱନ୍ତର*
*କଥାନ୍ତର୍ଗତ ଦେବୀମାହାତ୍ମ୍ୟରେ 'ଦେବୀସ୍ତୁତି' ନାମକ*
*ଏକାଦଶ ଅଧ୍ୟାୟ ସମାପ୍ତ ହେଲା ॥ ୧୧ ॥*



# ଦ୍ୱାଦଶୋଽଧ୍ୟାୟଃ

[ଦେବୀଚରିତ୍ର ପଠନର ମାହାତ୍ମ୍ୟ]

## ଧ୍ୟାନମ୍

**ଓଁ ବିଦ୍ୟୁଦ୍ଦାମସମପ୍ରଭାଂ ମୃଗପତିସ୍କନ୍ଧସ୍ଥିତାଂ ଭୀଷଣାଂ**
**କନ୍ୟାଭିଃ କରବାଲଖେଟବିଲସଦ୍ଧସ୍ତାଭିରାସେବିତାମ୍ ।**
**ହସ୍ତୈଶ୍ଚକ୍ରଗଦାସିଖେଟବିଶିଖାଂଶ୍ଚାପଂ ଗୁଣଂ ତର୍ଜନୀଂ**
**ବିଭ୍ରାଣାମନଳାତ୍ମିକାଂ ଶଶିଧରାଂ ଦୁର୍ଗାଂ ତ୍ରିନେତ୍ରାଂ ଭଜେ ॥**

*ଓଁ ଦେବ୍ୟୁବାଚ ॥ ୧ ॥*

**ଏଭିଃ ସ୍ତବୈଶ୍ଚ ମାଂ ନିତ୍ୟଂ ସ୍ତୋଷ୍ୟତେ ଯଃ ସମାହିତଃ ।**
**ତସ୍ୟାହଂ ସକଳାଂ ବାଧାଂ ନାଶଂୟିଷ୍ୟାମ୍ୟସଂଶୟମ୍ ॥ ୨ ॥**

---

ମୁଁ ତ୍ରିନେତ୍ରା ଦୁର୍ଗା ଦେବୀଙ୍କୁ ଧ୍ୟାନ କରୁଛି । ତାଙ୍କର ଶ୍ରୀଅଙ୍ଗର ପ୍ରଭା ବିଜୁଳି ସମାନ ଅଟେ । ସେ ସିଂହର ସ୍କନ୍ଧ ଉପରେ ବସିଥିବାରୁ ଭୟଙ୍କର ପ୍ରତୀତ ହୁଅନ୍ତି । ହସ୍ତରେ ଖଡ୍ଗ ଓ ଢାଲ ଧରି ଅନେକ କନ୍ୟା ତାଙ୍କର ସେବାରେ ଦଣ୍ଡାୟମାନ ହୋଇଛନ୍ତି । ସେ ନିଜ ହସ୍ତରେ ଚକ୍ର, ଗଦା, ଖଡ୍ଗ, ଢାଲ, ଶର, ଧନୁ, ପାଶ ଏବଂ ତର୍ଜନୀ ମୁଦ୍ରା ଧାରଣ କରିଛନ୍ତି । ତାଙ୍କର ସ୍ୱରୂପ ଅଗ୍ନିମୟ ଅଟେ ଏବଂ ସେ ମସ୍ତକ ଉପରେ ଚନ୍ଦ୍ରମାର ମୁକୁଟ ଧାରଣ କରିଛନ୍ତି ।

**ଦେବୀ କହିଲେ**—॥ ୧ ॥ ହେ ଦେବଗଣ ! ଯିଏ ଏକାଗ୍ରଚିତ୍ତ ହୋଇ ପ୍ରତିଦିନ ଏହି ସ୍ତବଦ୍ୱାରା ମୋତେ ସ୍ତୁତି କରିବ; ତାହାର ସମସ୍ତ ବାଧାବିଘ୍ନ ମୁଁ ନିଶ୍ଚିତ ଭାବରେ ଦୂର କରିବି ॥ ୨ ॥

---

୧. ପା.—ଶମ. ।

ମଧୁକୈଟଭନାଶଂ ଚ ମହିଷାସୁରଘାତନମ୍ ।
କୀର୍ତ୍ତୟିଷ୍ୟନ୍ତି ଯେ ତଦ୍‌ବଦ୍ ବଧଂ ଶୁମ୍ଭନିଶୁମ୍ଭୟୋଃ ॥ ୩ ।
ଅଷ୍ଟମ୍ୟାଂ ଚ ଚତୁର୍ଦ୍ଦଶ୍ୟାଂ ନବମ୍ୟାଂ ଚୈକଚେତସଃ ।
ଶ୍ରୋଷ୍ୟନ୍ତି ଚୈବ ଯେ ଭକ୍ତ୍ୟା ମମ ମାହାତ୍ମ୍ୟମୁତ୍ତମମ୍ ॥ ୪ ॥
ନ ତେଷାଂ ଦୁଷ୍କୃତଂ କିଞ୍ଚିଦ୍ ଦୁଷ୍କୃତୋତ୍ଥା ନ ଚାପଦଃ ।
ଭବିଷ୍ୟତି ନ ଦାରିଦ୍ର୍ୟଂ ନ ଚୈବେଷ୍ଟବିୟୋଜନମ୍ ॥ ୫ ॥
ଶତ୍ରୁତୋ ନ ଭୟଂ ତସ୍ୟ ଦସ୍ୟୁତୋ ବା ନ ରାଜତଃ ।
ନ ଶସ୍ତ୍ରାନଲତୋୟୌଘାତ୍‌କଦାଚିତ୍‌ସମ୍ଭବିଷ୍ୟତି ॥ ୬ ॥
ତସ୍ମାନ୍ମମୈତନ୍ମାହାତ୍ମ୍ୟଂ ପଠିତବ୍ୟଂ ସମାହିତୈଃ ।
ଶ୍ରୋତବ୍ୟଂ ଚ ସଦା ଭକ୍ତ୍ୟା ପରଂ ସ୍ୱସ୍ତ୍ୟୟନଂ ହି ତତ୍ ॥ ୭ ॥
ଉପସର୍ଗାନଶେଷାଂସ୍ତୁ ମହାମାରୀସମୁଦ୍ଭବାନ୍ ।
ତଥା ତ୍ରିବିଧମୁତ୍ପାତଂ ମାହାତ୍ମ୍ୟଂ ଶମୟେନ୍ମମ ॥ ୮ ॥

ଯିଏ ମଧୁକୈଟଭ-ନାଶ, ମହିଷାସୁର-ବଧ ତଥା ଶୁମ୍ଭ ନିଶୁମ୍ଭଙ୍କର ସଂହାର ପ୍ରସଙ୍ଗକୁ ପାଠ କରିବେ ଏବଂ ଅଷ୍ଟମୀ, ଚତୁର୍ଦ୍ଦଶୀ ତଥା ନବମୀରେ ମଧ୍ୟ ଯିଏ ଏକାଗ୍ରଚିତ୍ତ ହୋଇ ଭକ୍ତିପୂର୍ବକ ମୋର ଉତ୍ତମ ମାହାତ୍ମ୍ୟକୁ ଶ୍ରବଣ କରିବେ; ତାଙ୍କୁ କୌଣସି ପାପ ସ୍ପର୍ଶ କରିପାରିବ ନାହିଁ। ତାଙ୍କ ଉପରେ ପାପଜନିତ ବିପଦ ପଡ଼ିବ ନାହିଁ। ତାଙ୍କ ଗୃହରେ କେବେହେଲେ ଦାରିଦ୍ର୍ୟ ରହିବ ନାହିଁ ତଥା ତାଙ୍କୁ କୌଣସି ପ୍ରିୟଜନମାନଙ୍କର ବିଚ୍ଛେଦଜନିତ ଦୁଃଖ ଭୋଗିବାକୁ ପଡ଼ିବ ନାହିଁ ॥ ୩—୫ ॥ କେବଳ ସେତିକି ନୁହେଁ, ସେ ଶତ୍ରୁ, ଦସ୍ୟୁ, ରାଜା, ଶସ୍ତ୍ର, ଅଗ୍ନି ଓ ଜଳରାଶିକୁ ମଧ୍ୟ କେବେ ଭୟ କରନ୍ତି ନାହିଁ ॥ ୬ ॥ ତେଣୁ ସମସ୍ତେ ଏକାଗ୍ରଚିତ୍ତ ହୋଇ ଭକ୍ତିପୂର୍ବକ ମୋର ଏହି ମାହାତ୍ମ୍ୟକୁ ସର୍ବଦା ପଠନ ଓ ଶ୍ରବଣ କରିବା ଉଚିତ। ଏହା ପରମ କଲ୍ୟାଣକାରକ ଅଟେ ॥ ୭ ॥ ମୋର ମାହାତ୍ମ୍ୟ ମହାମାରୀଜନିତ ସମସ୍ତ ଉପଦ୍ରବ ତଥା ଆଧ୍ୟାତ୍ମିକ ଆଦି ତିନିପ୍ରକାରର ଉତ୍ପାତକୁ ଶାନ୍ତ କରିବାକୁ

ଯତ୍ରୈତତ୍ପଠ୍ୟତେ ସମ୍ୟଙ୍ନିତ୍ୟମାୟତନେ ମମ ।
ସଦା ନ ତଦ୍ୱିମୋକ୍ଷ୍ୟାମି ସାନ୍ନିଧ୍ୟଂ ତତ୍ର ମେ ସ୍ଥିତମ୍ ॥ ୯ ॥
ବଳିପ୍ରଦାନେ ପୂଜାୟାମଗ୍ନିକାର୍ଯ୍ୟେ ମହୋତ୍ସବେ ।
ସର୍ବଂ ମମୈତଚ୍ଚରିତମୁଚ୍ଚାର୍ଯ୍ୟଂ ଶ୍ରାବ୍ୟମେବ ଚ ॥ ୧୦ ॥
ଜାନତାଽଜାନତା ବାପି ବଳିପୂଜାଂ ତଥା କୃତାମ୍ ।
ପ୍ରତୀଚ୍ଛିଂ[1]ଷ୍ୟାମ୍ୟହଂ ପ୍ରୀତ୍ୟା ବହ୍ନିହୋମଂ ତଥା କୃତମ୍ ॥ ୧୧ ॥
ଶରତ୍କାଳେ ମହାପୂଜା କ୍ରିୟତେ ଯା ଚ ବାର୍ଷିକୀ ।
ତସ୍ୟାଂ ମମୈତନ୍ମାହାତ୍ମ୍ୟଂ ଶ୍ରୁତ୍ୱା ଭକ୍ତିସମନ୍ୱିତଃ ॥ ୧୨ ॥
ସ[2]ର୍ବାବାଧାବିନିର୍ମୁକ୍ତୋ ଧନଧାନ୍ୟସୁତାନ୍ୱିତଃ ।
ମନୁଷ୍ୟୋ ମତ୍ପ୍ରସାଦେନ ଭବିଷ୍ୟତି ନ ସଂଶୟଃ ॥ ୧୩ ॥
ଶ୍ରୁତ୍ୱା ମମୈତନ୍ମାହାତ୍ମ୍ୟଂ ତଥା ଚୋତ୍ପତ୍ତୟଃ ଶୁଭାଃ ।
ପରାକ୍ରମଂ ଚ ଯୁଦ୍ଧେଷୁ ଜାୟତେ ନିର୍ଭୟଃ ପୁମାନ୍ ॥ ୧୪ ॥

ସମର୍ଥ ॥ ୮ ॥ ଯେଉଁ ମନ୍ଦିରରେ ପ୍ରତିଦିନ ବିଧିପୂର୍ବକ ମୋର ଏହି ମାହାତ୍ମ୍ୟକୁ ପାଠ କରାଯାଏ; ସେହି ସ୍ଥାନକୁ ମୁଁ କେବେହେଲେ ପରିତ୍ୟାଗ କରେ ନାହିଁ। ମୁଁ ସେଠାରେ ସର୍ବଦା ନିବାସ କରେ ॥ ୯ ॥ ବଳିଦାନ, ପୂଜା, ହୋମ ତଥା ମହୋତ୍ସବ ସମୟରେ ମୋର ଏହି ଚରିତ୍ରକୁ ଆମୂଳଚୂଳ ପଠନ ଓ ଶ୍ରବଣ କରିବା ଉଚିତ ॥ ୧୦ ॥ ଏପରି କରିବାପରେ ମନୁଷ୍ୟ ବିଧିକୁ ଜାଣି ବା ନ ଜାଣି ମୋ ପାଇଁ ଯେଉଁ ବଳି, ପୂଜା ବା ହୋମ ଆଦି ଅନୁଷ୍ଠାନ କରିବ; ତାହାକୁ ମୁଁ ଅତି ପ୍ରସନ୍ନ ହୋଇ ଗ୍ରହଣ କରିବି ॥ ୧୧ ॥ ଶରତ୍କାଳରେ ଯେଉଁ ବାର୍ଷିକ ମହାପୂଜା କରାଯାଏ; ସେହି ସମୟରେ ଯିଏ ମୋର ଏହି ମାହାତ୍ମ୍ୟକୁ ଭକ୍ତିପୂର୍ବକ ଶ୍ରବଣ କରିବ; ମୋ ଅନୁଗ୍ରହରୁ ସେହି ମନୁଷ୍ୟ ସବୁ ବାଧାରୁ ମୁକ୍ତ ହେବ ତଥା ଧନ, ଧାନ୍ୟ ଏବଂ ପୁତ୍ରସଂପନ୍ନ ହେବ। ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ॥ ୧୨-୧୩ ॥ ମୋର ଏହି ମାହାତ୍ମ୍ୟ, ମୋର ପ୍ରାଦୁର୍ଭାବର ସୁନ୍ଦର କଥାମାନ ତଥା ଯୁଦ୍ଧରେ

୧. ପା.—ପ୍ରତୀକ୍ଷିଷ୍ୟାମି । ୨. ପା.—ସର୍ବବାଧା ।

ରିପବଃ ସଂକ୍ଷୟଂ ଯାନ୍ତି କଲ୍ୟାଣଂ ଚୋପପଦ୍ୟତେ ।
ନନ୍ଦତେ ଚ କୁଲଂ ପୁଂସାଂ ମାହାତ୍ମ୍ୟଂ ମମ ଶୃଣ୍ୱତାମ୍ ॥ ୧୫ ॥
ଶାନ୍ତିକର୍ମଣି ସର୍ବତ୍ର ତଥା ଦୁଃସ୍ୱପ୍ନଦର୍ଶନେ ।
ଗ୍ରହପୀଡାସୁ ଚୋଗ୍ରାସୁ ମାହାତ୍ମ୍ୟଂ ଶୃଣୁୟାନ୍ମମ ॥ ୧୬ ॥
ଉପସର୍ଗାଃ ଶମଂ ଯାନ୍ତି ଗ୍ରହପୀଡାଶ୍ଚ ଦାରୁଣାଃ ।
ଦୁଃସ୍ୱପ୍ନଂ ଚ ନୃଭିର୍ଦୃଷ୍ଟଂ ସୁସ୍ୱପ୍ନମୁପଜାୟତେ ॥ ୧୭ ॥
ବାଲଗ୍ରହାଭିଭୂତାନାଂ ବାଲାନାଂ ଶାନ୍ତିକାରକମ୍ ।
ସଂଘାତଭେଦେ ଚ ନୃଣାଂ ମୈତ୍ରୀକରଣମୁତ୍ତମମ୍ ॥ ୧୮ ॥
ଦୁର୍ବୃତ୍ତାନାମଶେଷାଣାଂ ବଲହାନିକରଂ ପରମ୍ ।
ରକ୍ଷୋଭୂତପିଶାଚାନାଂ ପଠନାଦେବ ନାଶନମ୍ ॥ ୧୯ ॥
ସର୍ବଂ ମମୈତନ୍ମାହାତ୍ମ୍ୟଂ ମମ ସନ୍ନିଧିକାରକମ୍ ।
ପଶୁପୁଷ୍ପାର୍ଘ୍ୟଧୂପୈଶ୍ଚ ଗନ୍ଧଦୀପୈସ୍ତଥୋତ୍ତମୈଃ ॥ ୨୦ ॥

---

କରିଥିବା ମୋ ପରାକ୍ରମ ଶୁଣିଲେ ମନୁଷ୍ୟ ନିର୍ଭୟ ହୋଇଯାଏ ॥ ୧୪ ॥ ମୋ ମାହାତ୍ମ୍ୟ ଶ୍ରବଣ କରୁଥିବା ପୁରୁଷର ଶତ୍ରୁ ନଷ୍ଟ ହୋଇଯାଏ । ତାହାକୁ କଲ୍ୟାଣ ପ୍ରାପ୍ତି ହୁଏ ଏବଂ ତାହାର ବଂଶ ଆନନ୍ଦରେ ରହେ ॥ ୧୫ ॥

ସର୍ବତ୍ର ଶାନ୍ତି-କର୍ମରେ, ଦୁଃସ୍ୱପ୍ନ ଦେଖାହେଲେ ତଥା ଗ୍ରହଜନିତ ଭୟଙ୍କର ପୀଡ଼ା ଉପସ୍ଥିତ ହେଲେ ମୋର ମାହାତ୍ମ୍ୟ ଶ୍ରବଣ କରିବା ଉଚିତ ॥ ୧୬ ॥ ଏହାଦ୍ୱାରା ସମସ୍ତ ବିଘ୍ନ ତଥା ଭୟଙ୍କର ଗ୍ରହପୀଡ଼ା ଶାନ୍ତ ହୋଇଯାଏ ଏବଂ ମନୁଷ୍ୟମାନଙ୍କ ଦ୍ୱାରା ଦେଖା ଯାଇଥିବା ଦୁଃସ୍ୱପ୍ନ ଶୁଭ ସ୍ୱପ୍ନରେ ପରିବର୍ତ୍ତିତ ହୋଇଯାଏ ॥ ୧୭ ॥ ବାଳଗ୍ରହମାନଙ୍କଦ୍ୱାରା ଆକ୍ରାନ୍ତ ହୋଇଥିବା ବାଳକମାନଙ୍କ ପାଇଁ ଏହି ମାହାତ୍ମ୍ୟ ଶାନ୍ତିକାରକ ଅଟେ ତଥା ମନୁଷ୍ୟମାନଙ୍କ ସଂଗଠନରେ ବିଭାଜନ ହେଲେ ମଧ୍ୟ ଏହା ସମ୍ୟଗ୍‌ରୂପେ ମିତ୍ରତା କରିବାରେ ସମର୍ଥ ॥ ୧୮ ॥ ଏହି ମାହାତ୍ମ୍ୟ ସମସ୍ତ ଦୁରାଗ୍ରହୀଙ୍କ ବଳନାଶକ ଅଟେ । ଏହାକୁ ପାଠ କରିବା ମାତ୍ରକେ ରାକ୍ଷସ, ଭୂତ ଏବଂ ପିଶାଚମାନେ ବିନଷ୍ଟ ହୋଇଯାଆନ୍ତି ॥ ୧୯ ॥ ମୋର ଏହି ସବୁ ମାହାତ୍ମ୍ୟ ମୋ ସାମୀପ୍ୟପ୍ରାପ୍ତି କରାଏ । ବର୍ଷେ କାଳ ପଶୁ,

ବିପ୍ରାଣାଂ ଭୋଜନୈର୍ହୋମୈଃ ପ୍ରୋକ୍ଷଣୀୟୈରହର୍ନିଶମ୍ ।
ଅନ୍ୟୈଶ୍ଚ ବିବିଧୈର୍ଭୋଗୈଃ ପ୍ରଦାନୈର୍ବତ୍ସରେଣ ଯା ॥ ୨୧ ॥
ପ୍ରୀତିର୍ମେ କ୍ରିୟତେ ସାସ୍ମିନ୍ ସକୃତ୍ସୁଚରିତେ ଶ୍ରୁତେ ।
ଶ୍ରୁତଂ ହରତି ପାପାନି ତଥାଽଽରୋଗ୍ୟଂ ପ୍ରୟଚ୍ଛତି ॥ ୨୨ ॥
ରକ୍ଷାଂ କରୋତି ଭୂତେଭ୍ୟୋ ଜନ୍ମନାଂ କୀର୍ତ୍ତନଂ ମମ ।
ଯୁଦ୍ଧେଷୁ ଚରିତଂ ଯନ୍ମେ ଦୁଷ୍ଟଦୈତ୍ୟନିବର୍ହଣମ୍ ॥ ୨୩ ॥
ତସ୍ମିଞ୍ଛ୍ରୁତେ ବୈରିକୃତଂ ଭୟଂ ପୁଂସାଂ ନ ଜାୟତେ ।
ଯୁଷ୍ମାଭିଃ ସ୍ତୁତୟୋ ଯାଶ୍ଚ ଯାଶ୍ଚ ବ୍ରହ୍ମର୍ଷିଭିଃ କୃତାଃ ॥ ୨୪ ॥
ବ୍ରହ୍ମଣା ଚ କୃତାସ୍ତାସ୍ତୁ ପ୍ରୟଚ୍ଛନ୍ତି ଶୁଭାଂ ମତିମ୍ ।
ଅରଣ୍ୟେ ପ୍ରାନ୍ତରେ ବାପି ଦାବାଗ୍ନିପରିବାରିତଃ ॥ ୨୫ ॥
ଦସ୍ୟୁଭିର୍ବା ବୃତଃ ଶୂନ୍ୟେ ଗୃହୀତୋ ବାପି ଶତ୍ରୁଭିଃ ।
ସିଂହବ୍ୟାଘ୍ରାନୁଯାତୋ ବା ବନେ ବା ବନହସ୍ତିଭିଃ ॥ ୨୬ ॥

---

ପୁଷ୍ପ, ଅର୍ଘ୍ୟ, ଧୂପ, ଦୀପ, ଗନ୍ଧ ଆଦି ଉତ୍ତମ ସାମଗ୍ରୀଦ୍ୱାରା ମୋତେ ପୂଜନ କଲେ, ବ୍ରାହ୍ମଣମାନଙ୍କୁ ଭୋଜନ କରାଇଲେ, ହୋମ କଲେ, ପ୍ରତିଦିନ ଅଭିଷେକ କଲେ, ନାନାପ୍ରକାରର ଅନ୍ୟ ଭୋଗସବୁ ଅର୍ପଣ କଲେ ତଥା ଦାନ ଦେଇ ମୋର ଆରାଧନା କଲେ ମୁଁ ଯେତେ ପ୍ରସନ୍ନ ହୁଏ; ମୋର ଏହି ଉତ୍ତମ ଚରିତ୍ରକୁ ଥରେ ମାତ୍ର ଶୁଣିଲେ ମଧ୍ୟ ମୁଁ ସେତିକି ପ୍ରସନ୍ନ ହୁଏ। ଏହି ମାହାତ୍ମ୍ୟ ଶ୍ରବଣ କରିବା ପରେ ପାପ ନାଶ ହୋଇଯାଏ ଏବଂ ଆରୋଗ୍ୟ ଲାଭ ହୁଏ ॥ ୨୦—୨୨ ॥ ମୋ ଆବିର୍ଭାବର କୀର୍ତ୍ତନ ସମସ୍ତ ଭୂତମାନଙ୍କଠାରୁ ରକ୍ଷା କରେ ତଥା ମୋର ଯୁଦ୍ଧବିଷୟକ ଚରିତ୍ର ଦୁଷ୍ଟ ଦୈତ୍ୟମାନଙ୍କୁ ସଂହାର କରେ ॥ ୨୩ ॥ ଏହାକୁ ଶ୍ରବଣ କଲାପରେ ମନୁଷ୍ୟର ଶତ୍ରୁଭୟ ରହେ ନାହିଁ। ହେ ଦେବଗଣ ! ତୁମେ ଏବଂ ବ୍ରହ୍ମର୍ଷିମାନେ ମୋର ଯେଉଁ ସ୍ତୁତି କରିଛ ॥ ୨୪ ॥ ତଥା ବ୍ରହ୍ମା ଯେଉଁ ସ୍ତୁତି କରିଛନ୍ତି; ସେସବୁ କଲ୍ୟାଣମୟୀ ବୁଦ୍ଧି ପ୍ରଦାନ କରନ୍ତି। ଅରଣ୍ୟ, ଶୂନ୍ୟ ମାର୍ଗ ଅଥବା ଦାବାନଳରେ ପରିବେଷ୍ଟିତ ହେଲେ, ନିର୍ଜନ ସ୍ଥାନରେ, ଦସ୍ୟୁମାନଙ୍କ ଉପଦ୍ରବରେ ପଡ଼ିଲେ ବା ଶତ୍ରୁମାନଙ୍କଦ୍ୱାରା ଧରା ପଡ଼ିଲାପରେ ଅଥବା ଅରଣ୍ୟରେ ସିଂହ, ବ୍ୟାଘ୍ର ବା ବଣୁଆ ହାତୀ ପଶ୍ଚାଦ୍‌ଧାବନ କଲେ ॥ ୨୫-୨୬ ॥

ରାଜ୍ଞା କ୍ରୁଦ୍ଧେନ ଗ୍ୱାଜ୍ଞପ୍ତୋ ବଧ୍ୟୋ ବନ୍ଧଗତୋଽପି ବା ।
ଆଘୂର୍ଣ୍ଣିତୋ ବା ବାତେନ ସ୍ଥିତଃ ପୋତେ ମହାର୍ଣ୍ଣବେ ॥ ୨୭ ॥
ପତତ୍ସୁ ଚାପି ଶସ୍ତ୍ରେଷୁ ସଂଗ୍ରାମେ ଭୃଶଦାରୁଣେ ।
ସର୍ବାବାଧାସୁ ଘୋରାସୁ ବେଦନାଭ୍ୟର୍ଦିତୋଽପି ବା ॥ ୨୮ ॥
ସ୍ମରନ୍ମମୈତଚ୍ଚରିତଂ ନରୋ ମୁଚ୍ୟେତ ସଙ୍କଟାତ୍ ।
ମମ ପ୍ରଭାବାତ୍ସିଂହାଦ୍ୟା ଦସ୍ୟବୋ ବୈରିଣସ୍ତଥା ॥ ୨୯ ॥
ଦୂରାଦେବ ପଳାୟନ୍ତେ ସ୍ମରତଶ୍ଚରିତଂ ମମ ॥ ୩୦ ॥

*ଋଷିରୁବାଚ ॥ ୩୧ ॥*

ଇତ୍ୟୁକ୍ତ୍ୱା ସା ଭଗବତୀ ଚଣ୍ଡିକା ଚଣ୍ଡବିକ୍ରମା ॥ ୩୨ ॥
ପଶ୍ୟତାମେବ[୧] ଦେବାନାଂ ତତ୍ରୈବାନ୍ତରଧୀୟତ ।
ତେଽପି ଦେବା ନିରାତଙ୍କାଃ ସ୍ୱାଧିକାରାନ୍ ଯଥା ପୁରା ॥ ୩୩ ॥

କୁପିତ ରାଜାଙ୍କ ଆଦେଶରେ ବଧସ୍ଥାନ ବା କାରାଗାରକୁ ନେବା ବେଳେ ଅଥବା ମହାସାଗରରେ ନୌକାରେ ବସିବା ପରେ ପ୍ରବଳ ତୋଫାନରେ ନୌକା ଟଳମଳ ହେଲାବେଳେ ॥ ୨୭ ॥ ଏବଂ ଅତ୍ୟନ୍ତ ଭୟଙ୍କର ଯୁଦ୍ଧରେ ଶସ୍ତ୍ର ପ୍ରହାର ହେଲେ ଅଥବା କଷ୍ଟରେ ପୀଡ଼ିତ ହେଲେ, ଏପରିକି ସମସ୍ତ ଭୟଙ୍କର ବାଧାବିଘ୍ନ ଉପସ୍ଥିତ ହେଲେ ॥ ୨୮ ॥ ଯିଏ ମୋର ଏହି ଚରିତ୍ରକୁ ସ୍ମରଣ କରେ; ସେହି ମନୁଷ୍ୟ ସଙ୍କଟମୁକ୍ତ ହୋଇଯାଏ । ମୋ ପ୍ରଭାବରୁ ସିଂହ ଆଦି ହିଂସ୍ର ଜନ୍ତୁ ନଷ୍ଟ ହୋଇ ଯାଆନ୍ତି ତଥା ଦସ୍ୟୁ ଓ ଶତ୍ରୁ ମଧ୍ୟ ମୋର ଚରିତ୍ରକୁ ସ୍ମରଣ କରୁଥିବା ପୁରୁଷଠାରୁ ବହୁ ଦୂରକୁ ପଳାୟନ କରନ୍ତି ॥ ୨୯, ୩୦ ॥

**ଋଷି କହିଲେ**—॥ ୩୧ ॥ ଏହା କହି ପ୍ରଚଣ୍ଡ ପରାକ୍ରମଶାଳିନୀ ଭଗବତୀ ଚଣ୍ଡିକା ସମସ୍ତ ଦେବତା ଦେଖୁ ଦେଖୁ ସେହିଠାରେ ଅନ୍ତର୍ଦ୍ଧାନ ହୋଇଗଲେ । ପୁନଶ୍ଚ ସମସ୍ତ ଦେବତା ମଧ୍ୟ ଶତ୍ରୁ ବିନାଶ ହେବା ଦ୍ୱାରା ନିର୍ଭୟ ହୋଇ ପୂର୍ବପରି ଯଜ୍ଞଭାଗକୁ ଉପଭୋଗ କରି ନିଜ ନିଜ ଅଧିକାରକୁ ପାଳନ କରିବାକୁ

୧. ପା.—ତାଂ ସର୍ବଦେବା. ।

ଯଜ୍ଞଭାଗଭୁଜଃ ସର୍ବେ ଚକ୍ରୁର୍ବିନିହତାରୟଃ ।
ଦୈତ୍ୟାଶ୍ଚ ଦେବ୍ୟା ନିହତେ ଶୁମ୍ଭେ ଦେବରିପୌ ଯୁଧି ॥ ୩୪ ॥
ଜଗଦ୍‌ବିଧ୍ୱଂସିନି ତସ୍ମିନ୍ ମହୋଗ୍ରେଽତୁଲବିକ୍ରମେ ।
ନିଶୁମ୍ଭେ ଚ ମହାବୀର୍ୟେ ଶେଷାଃ ପାତାଳମାୟୟୁଃ ॥ ୩୫ ॥
ଏବଂ ଭଗବତୀ ଦେବୀ ସା ନିତ୍ୟାପି ପୁନଃ ପୁନଃ ।
ସମ୍ଭୂୟ କୁରୁତେ ଭୂପ ଜଗତଃ ପରିପାଳନମ୍ ॥ ୩୬ ॥
ତୟୈତନ୍ମୋହ୍ୟତେ ବିଶ୍ୱଂ ସୈବ ବିଶ୍ୱଂ ପ୍ରସୂୟତେ ।
ସା ଯାଚିତା ଚ ବିଜ୍ଞାନଂ ତୁଷ୍ଟା ଋଦ୍ଧିଂ ପ୍ରଯଚ୍ଛତି ॥ ୩୭ ॥
ବ୍ୟାପ୍ତଂ ତୟୈତତ୍‌ସକଳଂ ବ୍ରହ୍ମାଣ୍ଡଂ ମନୁଜେଶ୍ୱର ।
ମହାକାଳ୍ୟା ମହାକାଳେ ମହାମାରୀସ୍ୱରୂପୟା ॥ ୩୮ ॥
ସୈବ କାଳେ ମହାମାରୀ ସୈବ ସୃଷ୍ଟିର୍ଭବତ୍ୟଜା ।
ସ୍ଥିତିଂ କରୋତି ଭୂତାନାଂ ସୈବ କାଳେ ସନାତନୀ ॥ ୩୯ ॥

---

ଲାଗିଲେ । ସଂସାରକୁ ବିଧ୍ୱଂସ କରୁଥିବା ମହାଭୟଙ୍କର ଅତୁଳପରାକ୍ରମୀ ଦେବଶତ୍ରୁ ଶୁମ୍ଭ ତଥା ମହାବଳୀ ନିଶୁମ୍ଭ ସଂଗ୍ରାମରେ ଦେବୀଙ୍କଦ୍ୱାରା ନିହତ ହେବାପରେ ଅନ୍ୟ ସବୁ ଦୈତ୍ୟମାନେ ପାତାଳଲୋକକୁ ଚାଲିଗଲେ ॥ ୩୨—୩୫ ॥ ହେ ରାଜନ୍ ! ଏହି ପ୍ରକାର ଭଗବତୀ ଅମ୍ବିକା ଦେବୀ ନିତ୍ୟ ହେଲେ ମଧ୍ୟ ପୁନଃ ପୁନଃ ପ୍ରକଟ ହୋଇ ଜଗତ୍‌କୁ ରକ୍ଷା କରନ୍ତି ॥ ୩୬ ॥ ସେ ହିଁ ଏହି ବିଶ୍ୱକୁ ମୋହିତ କରନ୍ତି । ସେ ଏହି ସଂସାରକୁ ଜନ୍ମ ଦିଅନ୍ତି ତଥା ପ୍ରାର୍ଥନା କଲେ ସେ ସନ୍ତୁଷ୍ଟ ହୋଇ ବିଜ୍ଞାନ ଏବଂ ସମୃଦ୍ଧି ପ୍ରଦାନ କରନ୍ତି ॥ ୩୭ ॥ ହେ ରାଜନ୍ ! ମହାପ୍ରଳୟ ସମୟରେ ମହାମାରୀ ସ୍ୱରୂପ ଧାରଣ କରୁଥିବା ସେହି ମହାକାଳୀ ହିଁ ଏହି ସମସ୍ତ ବ୍ରହ୍ମାଣ୍ଡରେ ବ୍ୟାପ୍ତ ଅଛନ୍ତି ॥ ୩୮ ॥ ସେ ବେଳେବେଳେ ମହାମାରୀ ହୁଅନ୍ତି ଏବଂ ସ୍ୱୟଂ ଅଜନ୍ମା ହୋଇ ମଧ୍ୟ ସୃଷ୍ଟି ରୂପରେ ପ୍ରକଟ ହୁଅନ୍ତି । ସେହି ସନାତନୀ ଦେବୀ ହିଁ ସମୟାନୁସାରେ ସକଳ ଭୂତଙ୍କୁ ରକ୍ଷା

**ଭବକାଲେ ନୃଣାଂ ସୈବ ଲକ୍ଷ୍ମୀର୍ବୃଦ୍ଧିପ୍ରଦା ଗୃହେ ।**
**ସୈବାଭାବେ ତଥା଼ଲକ୍ଷ୍ମୀର୍ବିନାଶାୟୋପଜାୟତେ ॥ ୪୦ ॥**
**ସ୍ତୁତା ସମ୍ପୂଜିତା ପୁଷ୍ପୈର୍ଧୂପଗନ୍ଧାଦିଭିସ୍ତଥା ।**
**ଦଦାତି ବିତ୍ତଂ ପୁତ୍ରାଂଶ୍ଚ ମତିଂ ଧର୍ମେ ଗତିଂ୧ ଶୁଭାମ୍ ॥ ଓଁ ॥ ୪୧ ॥**

*ଇତି ଶ୍ରୀମାର୍କଣ୍ଡେୟପୁରାଣେ ସାବର୍ଣ୍ଣିକେ ମନ୍ୱନ୍ତରେ ଦେବୀମାହାତ୍ମ୍ୟେ ଫଲସ୍ତୁତିର୍ନାମ ଦ୍ୱାଦଶୋଽଧ୍ୟାୟଃ ॥ ୧୨ ॥*

*ଉବାଚ ୨, ଅର୍ଧଶ୍ଳୋକୌ ୨, ଶ୍ଳୋକାଃ ୩୭,*
*ଏବମ୍ ୪୧, ଏବମାଦିତଃ ୬୭୧ ॥*



କରନ୍ତି ॥ ୩୯ ॥ ମନୁଷ୍ୟମାନଙ୍କ ଉନ୍ନତି ସମୟରେ ସେ ଗୃହରେ ଲକ୍ଷ୍ମୀ ରୂପରେ ସ୍ଥିତ ହୋଇ ଉନ୍ନତି ପ୍ରଦାନ କରନ୍ତି ଏବଂ ସେ ହିଁ ଅଭାବ ସମୟରେ ଦାରିଦ୍ର୍ୟ ପାଲଟି ଯାଇ ବିନାଶର କାରଣ ହୁଅନ୍ତି ॥ ୪୦ ॥

ପୁଷ୍ପ, ଧୂପ ଏବଂ ଗନ୍ଧ ଆଦି ଦ୍ୱାରା ପୂଜନ କରି ତାଙ୍କୁ ସ୍ତୁତି କରିବାଦ୍ୱାରା ସେ ଧନ, ପୁତ୍ର, ଧାର୍ମିକ ବୁଦ୍ଧି ତଥା ଉତ୍ତମ ଗତି ପ୍ରଦାନ କରନ୍ତି ॥ ୪୧ ॥

*ଏହିପରି ଶ୍ରୀମାର୍କଣ୍ଡେୟପୁରାଣରେ ସାବର୍ଣ୍ଣିକ ମନ୍ୱନ୍ତର କଥାନ୍ତର୍ଗତ ଦେବୀମାହାତ୍ମ୍ୟରେ 'ଫଳସ୍ତୁତି' ନାମକ ଦ୍ୱାଦଶ ଅଧ୍ୟାୟ ସମାପ୍ତ ହେଲା ॥ ୧୨ ॥*



୧. ପା.—ତଥା ।

# ତ୍ରୟୋଦଶୋଽଧ୍ୟାୟଃ

[ସୁରଥ ଓ ବୈଶ୍ୟଙ୍କୁ ଦେବୀଙ୍କର ବରଦାନ]

## ଧ୍ୟାନମ୍

**ଓଁ ବାଲାର୍କମଣ୍ଡଳାଭାସାଂ ଚତୁର୍ବାହୁଂ ତ୍ରିଲୋଚନାମ୍ ।**
**ପାଶାଙ୍କୁଶବରାଭୀତୀର୍ଧାରୟନ୍ତୀଂ ଶିବାଂ ଭଜେ ॥**

*'ଓଁ' ଋଷିରୁବାଚ ॥ ୧ ॥*

**ଏତତ୍ତେ କଥିତଂ ଭୂପ ଦେବୀମାହାତ୍ମ୍ୟମୁତ୍ତମମ୍ ।**
**ଏବଂପ୍ରଭାବା ସା ଦେବୀ ଯୟେଦଂ ଧାର୍ଯ୍ୟତେ ଜଗତ୍ ॥ ୨ ॥**
**ବିଦ୍ୟା ତଥୈବ କ୍ରିୟତେ ଭଗବଦ୍ବିଷ୍ଣୁମାୟୟା ।**
**ତୟା ତ୍ୱମେଷ ବୈଶ୍ୟଶ୍ଚ ତଥୈବାନ୍ୟେ ବିବେକିନଃ ॥ ୩ ॥**
**ମୋହ୍ୟନ୍ତେ ମୋହିତାଶ୍ଚୈବ ମୋହମେଷ୍ୟନ୍ତି ଚାପରେ ।**
**ତାମୁପୈହି ମହାରାଜ ଶରଣଂ ପରମେଶ୍ୱରୀମ୍ ॥ ୪ ॥**
**ଆରାଧିତା ସୈବ ନୃଣାଂ ଭୋଗସ୍ୱର୍ଗାପବର୍ଗଦା ॥ ୫ ॥**

---

ଯିଏ ଉଦୟକାଳର ସୂର୍ଯ୍ୟମଣ୍ଡଳ ପରି କାନ୍ତି ଧାରଣ କରିଛନ୍ତି; ଯାହାଙ୍କର ଚାରୋଟି ବାହୁ ଓ ତିନୋଟି ନେତ୍ର ଅଛି ତଥା ଯିଏ ନିଜ ହସ୍ତରେ ପାଶ, ଅଙ୍କୁଶ, ବର ଏବଂ ଅଭୟ ମୁଦ୍ରା ଧାରଣ କରିଛନ୍ତି; ସେହି ଶିବା ଦେବୀଙ୍କୁ ମୁଁ ଧ୍ୟାନ କରୁଛି ।

**ଋଷି କହିଲେ**—॥ ୧ ॥ ହେ ରାଜନ୍ ! ଏହି ପ୍ରକାର ମୁଁ ତୁମ୍ଭଙ୍କୁ ଦେବୀଙ୍କ ଉତ୍ତମ ମାହାତ୍ମ୍ୟ ବର୍ଣ୍ଣନା କଲି । ଯିଏ ଏହି ସଂସାରକୁ ଧାରଣ କରିଛନ୍ତି; ସେହି ଦେବୀଙ୍କର ଏତାଦୃଶ ପ୍ରଭାବ ରହିଛି ॥ ୨ ॥ ସେ ହିଁ ବିଦ୍ୟା (ଜ୍ଞାନ) ଉତ୍ପନ୍ନ କରନ୍ତି । ଭଗବାନ୍ ବିଷ୍ଣୁଙ୍କ ମାୟାସ୍ୱରୂପା ସେହି ଭଗବତୀଙ୍କ ଦ୍ୱାରା ତୁମେ, ଏହି ବୈଶ୍ୟ ତଥା ଅନ୍ୟାନ୍ୟ ବିବେକୀ ଜନ ମୋହିତ ହୁଅନ୍ତି; ମୋହିତ ହୋଇଛନ୍ତି ତଥା ଭବିଷ୍ୟତରେ ମଧ୍ୟ ବିମୋହିତ ହେବେ । ହେ ମହାରାଜ ! ତୁମେ ସେହି ପରମେଶ୍ୱରୀଙ୍କ ଶରଣାଗତ ହୁଅ ॥ ୩-୪ ॥ ତାଙ୍କୁ ଆରାଧନା କଲେ ସେ ମନୁଷ୍ୟମାନଙ୍କୁ ଭୋଗ, ସ୍ୱର୍ଗ ତଥା ମୋକ୍ଷ ପ୍ରଦାନ କରନ୍ତି ॥ ୫ ॥

*ମାର୍କଣ୍ଡେୟ ଉବାଚ ॥ ୬ ॥*

ଇତି ତସ୍ୟ ବଚଃ ଶ୍ରୁତ୍ୱା ସୁରଥଃ ସ ନରାଧିପଃ ॥ ୭ ॥
ପ୍ରଣିପତ୍ୟ ମହାଭାଗଂ ତମୃଷିଂ ଶଂସିତବ୍ରତମ୍ ।
ନିର୍ବିଣ୍ଣୋଽତିମମତ୍ୱେନ ରାଜ୍ୟାପହରଣେନ ଚ ॥ ୮ ॥
ଜଗାମ ସଦ୍ୟସ୍ତପସେ ସ ଚ ବୈଶ୍ୟୋ ମହାମୁନେ ।
ସଂଦର୍ଶନାର୍ଥମମ୍ବାୟା ନଦୀପୁଲିନସଂସ୍ଥିତଃ ॥ ୯ ॥
ସ ଚ ବୈଶ୍ୟସ୍ତପସ୍ତେପେ ଦେବୀସୂକ୍ତଂ ପରଂ ଜପନ୍ ।
ତୌ ତସ୍ମିନ୍ ପୁଲିନେ ଦେବ୍ୟାଃ କୃତ୍ୱା ମୂର୍ତ୍ତିଂ ମହୀମୟୀମ୍ ॥ ୧୦ ॥
ଅର୍ହଣାଂ ଚକ୍ରତୁସ୍ତସ୍ୟାଃ ପୁଷ୍ପଧୂପାଗ୍ନିତର୍ପଣୈଃ ।
ନିରାହାରୌ ଯତାହାରୌ ତନ୍ମନସ୍କୌ ସମାହିତୌ ॥ ୧୧ ॥
ଦଦତୁସ୍ତୌ ବଳିଂ ଚୈବ ନିଜଗାତ୍ରାସୃଗୁକ୍ଷିତମ୍ ।
ଏବଂ ସମାରାଧୟତୋସ୍ତ୍ରିଭିର୍ବର୍ଷୈର୍ଯତାତ୍ମନୋଃ ॥ ୧୨ ॥
ପରିତୁଷ୍ଟା ଜଗଦ୍ଧାତ୍ରୀ ପ୍ରତ୍ୟକ୍ଷଂ ପ୍ରାହ ଚଣ୍ଡିକା ॥ ୧୩ ॥

**ମାର୍କଣ୍ଡେୟ କହିଲେ—**॥ ୬ ॥ ମେଧାମୁନିଙ୍କ ଏହି ବଚନ ଶ୍ରବଣ କରି ରାଜା ସୁରଥ ଉତ୍ତମ ବ୍ରତ ପାଳନ କରୁଥିବା ସେହି ମହାଭାଗ ମହର୍ଷିଙ୍କୁ ପ୍ରଣାମ କଲେ । ସେ ଅତ୍ୟନ୍ତ ମମତା ଏବଂ ରାଜ୍ୟାପହରଣଦ୍ୱାରା ବହୁତ ଦୁର୍ବଳ ହୋଇଯାଇଥିଲେ ॥ ୭-୮ ॥ ହେ ମହାମୁନେ ! ତେଣୁ ବିରକ୍ତ ହୋଇ ସେହି ରାଜା ତଥା ବୈଶ୍ୟ ତତ୍କାଳ ତପସ୍ୟା କରିବାକୁ ଗ୍ଲଲିଗଲେ ଏବଂ ଜଗଦମ୍ବାଙ୍କ ଦର୍ଶନ ପାଇଁ ନଦୀ ତଟରେ ଅବସ୍ଥାନ କରି ତପସ୍ୟା ଆଚରଣ କଲେ ॥ ୯ ॥ ସେହି ବୈଶ୍ୟ ଉତ୍ତମ ଦେବୀସୂକ୍ତକୁ ଜପ କରି ତପସ୍ୟାରେ ପ୍ରବୃତ୍ତ ହେଲେ । ସେ ଦୁହେଁ ନଦୀତଟରେ ମାଟିରେ ଦେବୀଙ୍କର ମୂର୍ତ୍ତି ନିର୍ମାଣ କରି ପୁଷ୍ପ, ଧୂପ ଏବଂ ହୋମ ଆଦି ଦ୍ୱାରା ତାହାଙ୍କୁ ଆରାଧନା କଲେ । ସେମାନେ ସର୍ବପ୍ରଥମେ ଖାଦ୍ୟକୁ ଧୀରେ ଧୀରେ କମାଇଲେ। ପୁନଶ୍ଚ ସମ୍ପୂର୍ଣ୍ଣଭାବେ ନିରାହାର ରହି ଦେବୀଙ୍କ ଠାରେ ମନୋନିବେଶ କରି ଏକାଗ୍ରତାପୂର୍ବକ ତାଙ୍କର ଚିନ୍ତନ ଆରମ୍ଭ କଲେ ॥ ୧୦-୧୧ ॥ ସେ ଦୁହେଁ ଦେବୀଙ୍କୁ ବଳି ପ୍ରଦାନ କରି ନିରବଚ୍ଛିନ୍ନ ଭାବରେ ତିନି ବର୍ଷ ପର୍ଯ୍ୟନ୍ତ ସଂଯମପୂର୍ବକ ଆରାଧନା କଲେ ॥ ୧୨ ॥ ଏଥିରେ ପ୍ରସନ୍ନ ହୋଇ ଜଗତ୍‌କୁ ଧାରଣ କରିଥିବା ଚଣ୍ଡିକା ଦେବୀ ପ୍ରତ୍ୟକ୍ଷ ଦର୍ଶନ ଦେଇ କହିଲେ ॥ ୧୩ ॥

*ଦେବ୍ୟୁବାଚ ॥ ୧୪ ॥*

ଯତ୍ପ୍ରାର୍ଥ୍ୟତେ ତ୍ୱୟା ଭୂପ ତ୍ୱୟା ଚ କୁଳନନ୍ଦନ ।
ମତ୍ତସ୍ତତ୍ପ୍ରାପ୍ୟତାଂ ସର୍ବଂ ପରିତୁଷ୍ଟା ଦଦାମି ତତ୍ ॥ ୧୫ ॥

*ମାର୍କଣ୍ଡେୟ ଉବାଚ ॥ ୧୬ ॥*

ତତୋ ବବ୍ରେ ନୃପୋ ରାଜ୍ୟମବିଭ୍ରଂଶ୍ୟନ୍ୟଜନ୍ମନି ।
ଅତ୍ରୈବ ଚ ନିଜଂ ରାଜ୍ୟଂ ହତଶତ୍ରୁବଳଂ ବଳାତ୍ ॥ ୧୭ ॥
ସୋଽପି ବୈଶ୍ୟସ୍ତତୋ ଜ୍ଞାନଂ ବବ୍ରେ ନିର୍ବିଣ୍ଣମାନସଃ ।
ମମେତ୍ୟହମିତି ପ୍ରାଜ୍ଞଃ ସଙ୍ଗବିଚ୍ୟୁତିକାରକମ୍ ॥ ୧୮ ॥

*ଦେବ୍ୟୁବାଚ ॥ ୧୯ ॥*

ସ୍ୱଳ୍ପୈରହୋଭିର୍ନୃପତେ ସ୍ୱଂ ରାଜ୍ୟଂ ପ୍ରାପ୍ସ୍ୟତେ ଭବାନ୍ ॥ ୨୦ ॥
ହତ୍ୱା ରିପୂନସ୍ଖଳିତଂ ତବ ତତ୍ର ଭବିଷ୍ୟତି ॥ ୨୧ ॥
ମୃତଶ୍ଚ ଭୂୟଃ ସମ୍ପ୍ରାପ୍ୟ ଜନ୍ମ ଦେବାଦ୍ ବିବସ୍ୱତଃ ॥ ୨୨ ॥
ସାବର୍ଣ୍ଣିକୋ ନାମ[1] ମନୁର୍ଭବାନ୍ ଭୁବି ଭବିଷ୍ୟତି ॥ ୨୩ ॥

---

**ଦେବୀ କହିଲେ**—॥ ୧୪ ॥ ହେ ରାଜନ୍ ! ତଥା ନିଜ କୁଳକୁ ଆନନ୍ଦିତ କରୁଥିବା ହେ ବୈଶ୍ୟ ! ତୁମ୍ଭେ ଯେଉଁ ବସ୍ତୁକୁ ଅଭିଳାଷ କରୁଛ; ସେସବୁ ମୋତେ ମାଗ । ମୁଁ ବର୍ତ୍ତମାନ ସନ୍ତୁଷ୍ଟ । ଅତଃ ତୁମ୍ଭଙ୍କୁ ସେସବୁ ମୁଁ ପ୍ରଦାନ କରିବି ॥ ୧୫ ॥

**ମାର୍କଣ୍ଡେୟ କହିଲେ**—॥ ୧୬ ॥ ସେତେବେଳେ ରାଜା ଦ୍ୱିତୀୟ ଜନ୍ମରେ ନଷ୍ଟ ହେଉ ନ ଥିବା ରାଜ୍ୟ ପ୍ରାର୍ଥନା କଲେ ତଥା ଏହି ଜନ୍ମରେ ଶତ୍ରୁ ସେନାକୁ ବଳପୂର୍ବକ ନଷ୍ଟ କରି ପୁନଃ ନିଜ ରାଜ୍ୟ ପ୍ରାପ୍ତ କରିବାକୁ ବରଦାନ ପ୍ରାର୍ଥନା କଲେ ॥ ୧୭ ॥ ବୈଶ୍ୟଙ୍କ ଚିତ୍ତ ସଂସାର ପ୍ରତି ଖିନ୍ନ ଓ ବିରକ୍ତ ହୋଇଥିଲା ଏବଂ ସେ ଅତି ବୁଦ୍ଧିମାନ୍ ଥିଲେ । ଅତଃ ସେହି ସମୟରେ ସେ ମମତା ଓ ଅଂହକାରରୂପକ ଆସକ୍ତିକୁ ନାଶ କରୁଥିବା ଜ୍ଞାନକୁ ପ୍ରାର୍ଥନା କଲେ ॥ ୧୮ ॥

**ଦେବୀ କହିଲେ**—॥ ୧୯ ॥ ହେ ରାଜନ୍ ! ତୁମ୍ଭେ ଅଳ୍ପ ଦିନ ମଧ୍ୟରେ ଶତ୍ରୁମାନଙ୍କୁ ବିନାଶ କରି ନିଜ ରାଜ୍ୟ ପ୍ରାପ୍ତ ହେବ । ବର୍ତ୍ତମାନ ସେଠାରେ ତୁମ୍ଭ ରାଜ୍ୟ ସ୍ଥିର ହୋଇ ରହିବ ॥ ୨୦-୨୧ ॥ ପୁନଶ୍ଚ ମୃତ୍ୟୁ ପରେ ତୁମ୍ଭେ ଭଗବାନ୍ ବିବସ୍ୱାନ୍ (ସୂର୍ଯ୍ୟ)ଙ୍କ ଅଂଶଠାରୁ ଜନ୍ମ ନେଇ ଏହି ପୃଥିବୀ ଉପରେ

---

୧. ପା.—ମନୁର୍ନାମ ।

ବୈଶ୍ୟବର୍ଯ୍ୟ ତ୍ୱୟା ଯଶ୍ଚ ବରୋଽସ୍ମତ୍ତୋଽଭିବାଞ୍ଛିତଃ ॥ ୨୪ ॥
ତଂ ପ୍ରଯଚ୍ଛାମି ସଂସିଦ୍ଧ୍ୟୈ ତବ ଜ୍ଞାନଂ ଭବିଷ୍ୟତି ॥ ୨୫ ॥

*ମାର୍କଣ୍ଡେୟ ଉବାଚ ॥ ୨୬ ॥*

ଇତି ଦତ୍ତ୍ୱା ତୟୋର୍ଦେବୀ ଯଥାଭିଲଷିତଂ ବରମ୍ ॥ ୨୭ ॥
ବଭୂବାନ୍ତର୍ହିତା ସଦ୍ୟୋ ଭକ୍ତ୍ୟା ତାଭ୍ୟାମଭିଷ୍ଟୁତା ।
ଏବଂ ଦେବ୍ୟା ବରଂ ଲବ୍‌ଧ୍ୱା ସୁରଥଃ କ୍ଷତ୍ରିୟର୍ଷଭଃ ॥ ୨୮ ॥
ସୂର୍ଯ୍ୟାଜ୍ଜନ୍ମ ସମାସାଦ୍ୟ ସାବର୍ଣ୍ଣିର୍ଭବିତା ମନୁଃ ॥ ୨୯ ॥
ଏବଂ ଦେବ୍ୟା ବରଂ ଲବ୍‌ଧ୍ୱା ସୁରଥଃ କ୍ଷତ୍ରିୟର୍ଷଭଃ ।
ସୂର୍ଯ୍ୟାଜ୍ଜନ୍ମ ସମାସାଦ୍ୟ ସାବର୍ଣ୍ଣିର୍ଭବିତା ମନୁଃ ॥ କ୍ଲୀଂ ଓଁ ॥

*ଇତି ଶ୍ରୀମାର୍କଣ୍ଡେୟପୁରାଣେ ସାବର୍ଣ୍ଣିକେ ମନ୍ୱନ୍ତରେ ଦେବୀମାହାତ୍ମ୍ୟେ ସୁରଥବୈଶ୍ୟୟୋର୍ବରପ୍ରଦାନଂ ନାମ ତ୍ରୟୋଦଶୋଽଧ୍ୟାୟଃ ॥ ୧୩ ॥*

*ଉବାଚ ୬, ଅର୍ଦ୍ଧଶ୍ଳୋକାଃ ୧୧, ଶ୍ଳୋକାଃ ୧୨, ଏବମ୍ ୨୯,*
*ଏବମାଦିତଃ ୭୦୦ ॥ ସମସ୍ତା ଉବାଚମନ୍ତ୍ରାଃ ୫୭,*
*ଅର୍ଦ୍ଧଶ୍ଳୋକାଃ ୪୨, ଶ୍ଳୋକାଃ ୫୩୫, ଅବଦାନାନି ॥ ୬୬ ॥*



ସାବର୍ଣ୍ଣିକ ମନୁଙ୍କ ନାମରେ ବିଖ୍ୟାତ ହେବ ॥ ୨୨-୨୩ ॥ ହେ ବୈଶ୍ୟବର୍ଯ୍ୟ ! ତୁମ୍ଭେ ଯେଉଁ ବରକୁ ମୋଠାରୁ ପ୍ରାପ୍ତ କରିବାକୁ ଇଚ୍ଛା କରୁଛ; ତାହାକୁ ପ୍ରଦାନ କରୁଛି । ତୁମ୍ଭଙ୍କୁ ମୋକ୍ଷ ନିମନ୍ତେ ଜ୍ଞାନ ପ୍ରାପ୍ତ ହେବ ॥ ୨୪-୨୫ ॥

**ମାର୍କଣ୍ଡେୟ କହିଲେ**—॥ ୨୬ ॥ ଏହି ପ୍ରକାର ସେ ଦୁହିଁଙ୍କୁ ମନୋବାଞ୍ଛିତ ବର ପ୍ରଦାନ କରି ତଥା ସେମାନଙ୍କର ଭକ୍ତିପୂର୍ବକ ସ୍ତୁତି ଶ୍ରବଣ କରି ଦେବୀ ଅମ୍ବିକା ତତ୍କାଳ ଅନ୍ତର୍ଦ୍ଧାନ ହୋଇଗଲେ । ଏହି ପ୍ରକାର ଦେବୀଙ୍କଠାରୁ ବର ପାଇ କ୍ଷତ୍ରିୟମାନଙ୍କ ମଧ୍ୟରେ ଶ୍ରେଷ୍ଠ ସୁରଥ ସୂର୍ଯ୍ୟଙ୍କଠାରୁ ଜନ୍ମ ନେଇ ସାବର୍ଣ୍ଣି ନାମକ ମନୁ ହେବେ ॥ ୨୭—୨୯ ॥

*ଏହିପରି ଶ୍ରୀମାର୍କଣ୍ଡେୟପୁରାଣରେ ସାବର୍ଣ୍ଣିକ ମନ୍ୱନ୍ତର କଥାନ୍ତର୍ଗତ ଦେବୀମାହାତ୍ମ୍ୟରେ 'ସୁରଥ ଓ ବୈଶ୍ୟକୁ ବରଦାନ' ନାମକ ତ୍ରୟୋଦଶ ଅଧ୍ୟାୟ ସମାପ୍ତ ହେଲା ॥ ୧୩ ॥*



## ଉପସଂହାରଃ

ଏହି ପ୍ରକାର ସପ୍ତଶତୀର ପାଠ ସମ୍ପୂର୍ଣ୍ଣ ହେବା ପରେ ପ୍ରଥମେ ନବାର୍ଣ୍ଣ ଜପ କରି ପୁନଶ୍ଚ ଦେବୀସୂକ୍ତ ପାଠର ବିଧାନ ଅଛି। ଏଣୁ ଏଠାରେ ମଧ୍ୟ ନବାର୍ଣ୍ଣ-ବିଧି ଉଦ୍ଧୃତ କରାଯାଇଛି। ଏହାର ସମସ୍ତ କାର୍ଯ୍ୟ ପୂର୍ବପରି ହେବ।

## ବିନିଯୋଗଃ

ଶ୍ରୀଗଣପତିର୍ଜୟତି। ଓଁ ଅସ୍ୟ ଶ୍ରୀନବାର୍ଣ୍ଣମନ୍ତ୍ରସ୍ୟ ବ୍ରହ୍ମବିଷ୍ଣୁରୁଦ୍ରା ଋଷୟଃ, ଗାୟତ୍ର୍ୟୁଷ୍ଣିଗନୁଷ୍ଟୁଭଶ୍ଛନ୍ଦାଂସି, ଶ୍ରୀମହାକାଳୀମହାଲକ୍ଷ୍ମୀମହାସରସ୍ୱତ୍ୟୋ ଦେବତାଃ, ଐଂ ବୀଜମ୍, ହ୍ରୀଂ ଶକ୍ତିଃ, କ୍ଲୀଂ କୀଳକମ୍, ଶ୍ରୀମହାକାଳୀମହାଲକ୍ଷ୍ମୀମହାସରସ୍ୱତୀପ୍ରୀତ୍ୟର୍ଥେ ଜପେ ବିନିଯୋଗଃ।

## ଋଷ୍ୟାଦିନ୍ୟାସଃ

ବ୍ରହ୍ମବିଷ୍ଣୁରୁଦ୍ରଋଷିଭ୍ୟୋ ନମଃ, ଶିରସି। ଗାୟତ୍ର୍ୟୁଷ୍ଣିଗନୁଷ୍ଟୁପ୍ଛନ୍ଦୋଭ୍ୟୋ ନମଃ, ମୁଖେ। ମହାକାଳୀମହାଲକ୍ଷ୍ମୀମହାସରସ୍ୱତୀଦେବତାଭ୍ୟୋ ନମଃ, ହୃଦି। ଐଂ ବୀଜାୟ ନମଃ, ଗୁହ୍ୟେ। ହ୍ରୀଂ ଶକ୍ତୟେ ନମଃ, ପାଦୟୋଃ। କ୍ଲୀଂ କୀଳକାୟ ନମଃ, ନାଭୌ।

'ଓଁ ଐଂ ହ୍ରୀଂ କ୍ଲୀଂ ଚାମୁଣ୍ଡାୟୈ ବିଚ୍ଚେ'—ଇତି ମୂଳେନ କରୌ ସଂଶୋଧ୍ୟ—

## କରନ୍ୟାସଃ

ଓଁ ଐଂ ଅଙ୍ଗୁଷ୍ଠାଭ୍ୟାଂ ନମଃ। ଓଁ ହ୍ରୀଂ ତର୍ଜନୀଭ୍ୟାଂ ନମଃ। ଓଁ କ୍ଲୀଂ ମଧ୍ୟମାଭ୍ୟାଂ ନମଃ। ଓଁ ଚାମୁଣ୍ଡାୟୈ ଅନାମିକାଭ୍ୟାଂ ନମଃ। ଓଁ ବିଚ୍ଚେ କନିଷ୍ଠିକାଭ୍ୟାଂ ନମଃ। ଓଁ ଐଂ ହ୍ରୀଂ କ୍ଲୀଂ ଚାମୁଣ୍ଡାୟୈ ବିଚ୍ଚେ କରତଳକରପୃଷ୍ଠାଭ୍ୟାଂ ନମଃ।

## ହୃଦୟାଦିନ୍ୟାସଃ

ଓଁ ଐଂ ହୃଦୟାୟ ନମଃ। ଓଁ ହ୍ରୀଂ ଶିରସେ ସ୍ୱାହା। ଓଁ କ୍ଲୀଂ ଶିଖାୟୈ ବଷଟ୍। ଓଁ ଚାମୁଣ୍ଡାୟୈ କବଚାୟ ହୁମ୍। ଓଁ ବିଚ୍ଚେ ନେତ୍ରତ୍ରୟାୟ ବୌଷଟ୍। ଓଁ ଐଂ ହ୍ରୀଂ କ୍ଲୀଂ ଚାମୁଣ୍ଡାୟୈ ବିଚ୍ଚେ ଅସ୍ତ୍ରାୟ ଫଟ୍।

## ଅକ୍ଷରନ୍ୟାସଃ

ଓଁ ଐଂ ନମଃ, ଶିଖାୟାମ୍। ଓଁ ହ୍ରୀଂ ନମଃ, ଦକ୍ଷିଣନେତ୍ରେ। ଓଁ କ୍ଲୀଂ ନମଃ, ବାମନେତ୍ରେ। ଓଁ ଚାଂ ନମଃ, ଦକ୍ଷିଣକର୍ଣ୍ଣେ। ଓଁ ମୁଂ ନମଃ, ବାମକର୍ଣ୍ଣେ। ଓଁ ଡାଂ ନମଃ, ଦକ୍ଷିଣନାସାପୁଟେ। ଓଁ ୟୈଂ ନମଃ, ବାମନାସାପୁଟେ। ଓଁ ବିଂ ନମଃ, ମୁଖେ। ଓଁ ଚ୍ଚେଂ ନମଃ, ଗୁହ୍ୟେ।

'ଏବଂ ବିନ୍ୟସ୍ୟାଷ୍ଟବାରଂ ମୂଳେନ ବ୍ୟାପକଂ କୁର୍ଯ୍ୟାତ୍'

## ଦିଙ୍ନ୍ୟାସଃ

ଓଁ ଐଂ ପ୍ରାଚ୍ୟୈ ନମଃ। ଓଁ ଐଂ ଆଗ୍ନେୟ୍ୟୈ ନମଃ। ଓଁ ହ୍ରୀଂ ଦକ୍ଷିଣାୟୈ ନମଃ। ଓଁ ହ୍ରୀଂ ନୈର୍ଋତ୍ୟୈ ନମଃ। ଓଁ କ୍ଲୀଂ ପ୍ରତୀଚ୍ୟୈ ନମଃ। ଓଁ କ୍ଲୀଂ ବାୟବ୍ୟୈ ନମଃ। ଓଁ

ଗ୍ମୁଣ୍ଡାୟୈ ଉଦୀଚ୍ୟୈ ନମଃ । ଓଁ ଗ୍ମୁଣ୍ଡାୟୈ ଐଶାନ୍ୟୈ ନମଃ । ଓଁ ଐଂ ହ୍ରୀଂ କ୍ଲୀଂ ଗ୍ମୁଣ୍ଡାୟୈ ବିଚ୍ଚେ ଊର୍ଧ୍ୱାୟୈ ନମଃ । ଓଁ ଐଂ ହ୍ରୀଂ କ୍ଲୀଂ ଗ୍ମୁଣ୍ଡାୟୈ ବିଚ୍ଚେ ଭୂମ୍ୟୈ ନମଃ ।

## ଧ୍ୟାନମ୍

ଖଡ୍ଗଂ ଚକ୍ରଗଦେଷୁଗ୍ୱପପରିଘାଞ୍ଛୂଳଂ ଭୁଶୁଣ୍ଡୀଂ ଶିରଃ
ଶଙ୍ଖଂ ସଂଦଧତୀଂ କରୈସ୍ତ୍ରିନୟନାଂ ସର୍ବାଙ୍ଗଭୂଷାବୃତାମ୍ ।
ନୀଳାଶ୍ମଦ୍ୟୁତିମାସ୍ୟପାଦଦଶକାଂ ସେବେ ମହାକାଳିକାଂ
ଯାମସ୍ତୌତ୍‌ସ୍ୱପିତେ ହରୌ କମଳଜୋ ହନ୍ତୁଂ ମଧୁଂ କୈଟଭମ୍ ॥ ୧ ॥
ଅକ୍ଷସ୍ରକ୍‌ପରଶୁଂ ଗଦେଷୁକୁଳିଶଂ ପଦ୍ମଂ ଧନୁଷ୍କୁଣ୍ଡିକାଂ ।
ଦଣ୍ଡଂ ଶକ୍ତିମସିଞ୍ଚ ଚର୍ମ ଜଳଜଂ ଘଣ୍ଟାଂ ସୁରାଭାଜନମ୍ ।
ଶୂଳଂ ପାଶସୁଦର୍ଶନେ ଚ ଦଧତୀଂ ହସ୍ତୈଃ ପ୍ରସନ୍ନାନନାଂ
ସେବେ ସୈରିଭମର୍ଦିନୀମିହ ମହାଲକ୍ଷ୍ମୀଂ ସରୋଜସ୍ଥିତାମ୍ ॥ ୨ ॥
ଘଣ୍ଟାଶୂଳହଳାନି ଶଙ୍ଖମୁସଳେ ଚକ୍ରଂ ଧନୁଃ ସାୟକଂ
ହସ୍ତାବ୍‌ଜୈର୍ଦଧତୀଂ ଘନାନ୍ତବିଲସଚ୍ଛୀତାଂଶୁତୁଲ୍ୟପ୍ରଭାମ୍ ।
ଗୌରୀଦେହସମୁଦ୍ଭବାଂ ତ୍ରିଜଗତାମାଧାରଭୂତାଂ ମହା-
ପୂର୍ବାମତ୍ର ସରସ୍ୱତୀମନୁଭଜେ ଶୁମ୍ଭାଦିଦୈତ୍ୟାର୍ଦିନୀମ୍ ॥ ୩ ॥*

ଏହି ପ୍ରକାର ନ୍ୟାସ ଓ ଧ୍ୟାନ କରି ମାନସିକ ଉପଚାର ଦ୍ୱାରା ଦେବୀଙ୍କ ପୂଜା କରିବା ଉଚିତ । ପୁନଶ୍ଚ ୧୦୮ ବା ୧୦୦୮ ଥର ନବାର୍ଣ୍ଣ ମନ୍ତ୍ର ଜପ କରିବା ଉଚିତ । ଜପ ଆରମ୍ଭ କରିବା ପୂର୍ବରୁ '**ଐଂ ହ୍ରୀଂ ଅକ୍ଷମାଳିକାୟୈ ନମଃ**' ମନ୍ତ୍ରରେ ମାଳାକୁ ପୂଜା କରି ଏହି ପ୍ରକାର ପ୍ରାର୍ଥନା କରିବା ଉଚିତ—

ଓଁ ମାଂ ମାଳେ ମହାମାୟେ ସର୍ବଶକ୍ତିସ୍ୱରୂପିଣି ।
ଚତୁର୍ବର୍ଗସ୍ତ୍ୱୟି ନ୍ୟସ୍ତସ୍ତସ୍ମାନ୍ମେ ସିଦ୍ଧିଦା ଭବ ॥
ଓଁ ଅବିଘ୍ନଂ କୁରୁ ମାଳେ ତ୍ୱଂ ଗୃହ୍‌ଣାମି ଦକ୍ଷିଣେ କରେ ।
ଜପକାଳେ ଚ ସିଦ୍ଧ୍ୟର୍ଥଂ ପ୍ରସୀଦ ମମ ସିଦ୍ଧୟେ ॥

ଓଁ ଅକ୍ଷମାଳାଧିପତୟେ ସୁସିଦ୍ଧିଂ ଦେହି ଦେହି ସର୍ବମନ୍ତ୍ରାର୍ଥସାଧିନି ସାଧୟ ସାଧୟ ସର୍ବସିଦ୍ଧିଂ ପରିକଳ୍ପୟ ପରିକଳ୍ପୟ ମେ ସ୍ୱାହା ।

ଏହି ପ୍ରକାର ପ୍ରାର୍ଥନା କରି ଜପ ଆରମ୍ଭ କରିବା ଉଚିତ । ଜପ ସମ୍ପୂର୍ଣ୍ଣ କରି ତାହାକୁ ଭଗବତୀଙ୍କୁ ସମର୍ପଣ କରି ଏପରି କହିବା ଉଚିତ—

* ବିନିଯୋଗ ନ୍ୟାସବାକ୍ୟ ତଥା ଧ୍ୟାନସମ୍ବନ୍ଧୀ ଶ୍ଲୋକର ଅର୍ଥ ପ୍ରଥମରୁ ଦିଆଯାଇଛି ।

ଗୁହ୍ୟାତିଗୁହ୍ୟଗୋପ୍ତ୍ରୀ ତ୍ୱଂ ଗୃହାଣାସ୍ମତ୍‌କୃତଂ ଜପମ୍ ।
ସିଦ୍ଧିର୍ଭବତୁ ମେ ଦେବି ତ୍ୱତ୍‌ପ୍ରସାଦାନ୍ମହେଶ୍ୱରି ॥

ତତ୍‌ପଶ୍ଚାତ୍ ପୁନଃ ନିମ୍ନ ଲିଖନାନୁସାରେ ନ୍ୟାସ କରିବା ଉଚିତ ।

## କରନ୍ୟାସଃ

ଓଁ ହ୍ରୀଂ ଅଙ୍ଗୁଷ୍ଠାଭ୍ୟାଂ ନମଃ । ଓଁ ଚଂ ତର୍ଜନୀଭ୍ୟାଂ ନମଃ । ଓଁ ଡିଂ ମଧ୍ୟମାଭ୍ୟାଂ ନମଃ । ଓଁ କାଂ ଅନାମିକାଭ୍ୟାଂ ନମଃ । ଓଁ ୟୈଂ କନିଷ୍ଠିକାଭ୍ୟାଂ ନମଃ । ଓଁ ହ୍ରୀଂ ଚଣ୍ଡିକାୟୈ କରତଳକରପୃଷ୍ଠାଭ୍ୟାଂ ନମଃ ।

## ହୃଦୟାଦିନ୍ୟାସଃ

ଓଁ ଖଡ୍‌ଗିନୀ ଶୂଳିନୀ ଘୋରା ଗଦିନୀ ଚକ୍ରିଣୀ ତଥା ।
ଶଙ୍ଖିନୀ ଚାପିନୀ ବାଣଭୁଶୁଣ୍ଡୀପରିଘାୟୁଧା[୧] ॥ ହୃଦୟାୟ ନମଃ ।
ଓଁ ଶୂଳେନ ପାହି ନୋ ଦେବି ପାହି ଖଡ୍‌ଗେନ ଚାମ୍ବିକେ ।
ଘଣ୍ଟାସ୍ୱନେନ ନଃ ପାହି ଚାପଜ୍ୟାନିଃସ୍ୱନେନ ଚ ॥ ଶିରସେ ସ୍ୱାହା ।
ଓଁ ପ୍ରାଚ୍ୟାଂ ରକ୍ଷ ପ୍ରତୀଚ୍ୟାଂ ଚ ଚଣ୍ଡିକେ ରକ୍ଷ ଦକ୍ଷିଣେ ।
ଭ୍ରାମଣେନାତ୍ମଶୂଳସ୍ୟ ଉତ୍ତରସ୍ୟାଂ ତଥେଶ୍ୱରି ॥ ଶିଖାୟୈ ବଷଟ୍ ।
ଓଁ ସୌମ୍ୟାନି ଯାନି ରୂପାଣି ତ୍ରୈଲୋକ୍ୟେ ବିଚରନ୍ତି ତେ ।
ଯାନି ଚାତ୍ୟର୍ଥଘୋରାଣି ତୈ ରକ୍ଷାସ୍ମାଂସ୍ତଥା ଭୁବମ୍ ॥ କବଚାୟ ହୁମ୍ ।
ଓଁ ଖଡ୍‌ଗଶୂଳଗଦାଦୀନି ଯାନି ଚାସ୍ତ୍ରାଣି ତେଽମ୍ବିକେ ।
କରପଲ୍ଲବସଙ୍ଗୀନି ତୈରସ୍ମାନ୍ ରକ୍ଷ ସର୍ବତଃ[୨] ॥ ନେତ୍ରତ୍ରୟାୟ ବୌଷଟ୍ ।
ଓଁ ସର୍ବସ୍ୱରୂପେ ସର୍ବେଶେ ସର୍ବଶକ୍ତିସମନ୍ୱିତେ ।
ଭୟେଭ୍ୟସ୍ତ୍ରାହି ନୋ ଦେବି ଦୁର୍ଗେ ଦେବି ନମୋଽସ୍ତୁ ତେ[୩] ॥ ଅସ୍ତ୍ରାୟ ଫଟ୍ ।

## ଧ୍ୟାନମ୍

ଓଁ ବିଦ୍ୟୁଦ୍ଦାମସମପ୍ରଭାଂ ମୃଗପତିସ୍କନ୍ଧସ୍ଥିତାଂ ଭୀଷଣାଂ
କନ୍ୟାଭିଃ କରବାଳଖେଟବିଲସଦ୍ଧସ୍ତାଭିରାସେବିତାମ୍ ।
ହସ୍ତୈଶ୍ଚକ୍ରଗଦାସିଖେଟବିଶିଖାଂଶ୍ଚାପଂ ଗୁଣଂ ତର୍ଜନୀଂ
ବିଭ୍ରାଣାମନଳାତ୍ମିକାଂ ଶଶିଧରାଂ ଦୁର୍ଗାଂ ତ୍ରିନେତ୍ରାଂ ଭଜେ[୪] ॥

୧. ଏହାର ଅର୍ଥ ପୃଷ୍ଠା ୭୧ରେ ଅଛି । ୨. ଏହି ଚାରୋଟି ଶ୍ଳୋକର ଅର୍ଥ ପୃଷ୍ଠା ୧୦୫-୧୦୬ରେ ଅଛି । ୩. ଏହାର ଅର୍ଥ ପୃଷ୍ଠା ୧୬୪ରେ ଅଛି । ୪. ଏହାର ଅର୍ଥ ୧୭୧ରେ ରହିଛି ।

# ଋଗ୍‌ବେଦୋକ୍ତଂ ଦେବୀସୂକ୍ତମ୍

ଓଁ ଅହମିତ୍ୟଷ୍ଟର୍ଚସ୍ୟ ସୂକ୍ତସ୍ୟ ବାଗାମ୍ଭୃଣୀ ଋଷିଃ, ସଚ୍ଚିତ୍‌ସୁଖାତ୍ମକଃ ସର୍ବଗତଃ ପରମାତ୍ମା ଦେବତା, ଦ୍ୱିତୀୟାୟା ଋଗ୍ଜେ ଜଗତୀ, ଶିଷ୍ଟାନାଂ ତ୍ରିଷ୍ଟୁପ୍ ଛନ୍ଦଃ, ଦେବୀମାହାତ୍ମ୍ୟପାଠେ ବିନିୟୋଗଃ ।*

## ଧ୍ୟାନମ୍

**ଓଁ ସିଂହସ୍ଥା ଶଶିଶେଖରା ମରକତପ୍ରଖ୍ୟୈଶ୍ଚତୁର୍ଭିର୍ଭୁଜୈଃ**
**ଶଙ୍ଖଂ ଚକ୍ରଧନୁଃଶରାଂଶ୍ଚ ଦଧତୀ ନେତ୍ରୈସ୍ତ୍ରିଭିଃ ଶୋଭିତା ।**
**ଆମୁକ୍ତାଙ୍ଗଦହାରକଙ୍କଣରଣତ୍‌କାଞ୍ଚୀରଣନ୍ନୂପୁରା**
**ଦୁର୍ଗା ଦୁର୍ଗତିହାରିଣୀ ଭବତୁ ନୋ ରତ୍ନୋଲ୍ଲସତ୍‌କୁଣ୍ଡଳା ।।ψ**

## ଦେବୀସୂକ୍ତମ୍✦

**ଓଁ ଅହଂ ରୁଦ୍ରେଭିର୍ବସୁଭିଶ୍ଚରାମ୍ୟହମାଦିତ୍ୟୈରୁତ ବିଶ୍ୱଦେବୈଃ ।**
**ଅହଂ ମିତ୍ରାବରୁଣୋଭା ବିଭର୍ମ୍ୟହମିନ୍ଦ୍ରାଗ୍ନୀ ଅହମଶ୍ୱିନୋଭା ।। ୧ ।।**

ଯିଏ ସିଂହପୃଷ୍ଠରେ ବିରାଜମାନ ଅଛନ୍ତି; ଯାହାଙ୍କ ମସ୍ତକ ଉପରେ ଚନ୍ଦ୍ରମାର ମୁକୁଟ ରହିଛି; ଯିଏ ମରକତମଣି ସମାନ କାନ୍ତିଯୁକ୍ତା ହୋଇ ନିଜର ଚାରୋଟି ଭୁଜରେ ଶଙ୍ଖ, ଚକ୍ର, ଧନୁ ଓ ଶର ଧାରଣ କରିଛନ୍ତି; ତିନୋଟି ନେତ୍ରରେ ସୁଶୋଭିତା ଅଟନ୍ତି; ଯାହାଙ୍କର ଭିନ୍ନ ଭିନ୍ନ ଅଙ୍ଗ ବନ୍ଧା ହୋଇଥିବା ବାଜୁବନ୍ଧ, ହାର, କଙ୍କଣ, ରୁଣୁଝୁଣୁ ଶବ୍ଦ କରୁଥିବା ଅଣ୍ଟାସୂତା ଏବଂ ରୁଣୁଝୁଣୁ କରୁଥିବା ନୂପୁରଦ୍ୱାରା ବିଭୂଷିତ ଅଟନ୍ତି ତଥା ଯାହାଙ୍କ କର୍ଣ୍ଣରେ ରତ୍ନଖଚିତ କୁଣ୍ଡଳ ଝିଲ୍‌ମିଲ୍ ହୋଇ ରହିଛି; ସେହି ଭଗବତୀ ଦୁର୍ଗା ଆମ୍ଭ ଦୁର୍ଗତି ଦୂର କରନ୍ତୁ ।

(ମହର୍ଷି ଅମ୍ଭୃଣଙ୍କ କନ୍ୟାଙ୍କ ନାମ ଥିଲା ବାକ୍ । ସେ ଅତି ବ୍ରହ୍ମଜ୍ଞାନିନୀ ଥିଲେ । ସେ ଦେବୀଙ୍କ ସହ ଅଭିନ୍ନତା ପ୍ରାପ୍ତ କରିଥିଲେ । ତାଙ୍କର ଏହି ଉଦ୍‌ଗାର ଅଛି—) ମୁଁ ସଚ୍ଚିଦାନନ୍ଦମୟୀ ସର୍ବାତ୍ମା ଦେବୀ ରୁଦ୍ର, ବସୁ, ଆଦିତ୍ୟ ତଥା ବିଶ୍ୱେଦେବଗଣଙ୍କ ରୂପରେ ବିଚରଣ କରୁଛି । ମୁଁ ହିଁ ମିତ୍ର ଓ ବରୁଣ ଦୁହିଁଙ୍କୁ,

* ଏହାକୁ ବିନିୟୋଗ କରି ନିମ୍ନାଙ୍କିତ ରୂପକୁ ଧ୍ୟାନ କରିବା ଉଚିତ ।

ψ ଧ୍ୟାନ ପରେ ନିମ୍ନାନୁସାରେ ବେଦୋକ୍ତ ଦେବୀସୂକ୍ତ ପାଠ କରିବା ଉଚିତ ।

✦ ଦେବୀସୂକ୍ତର ଏହି ଆଠଟିମନ୍ତ୍ର ଋଗ୍‌ବେଦ ଅନ୍ତର୍ଗତ ଦଶମ ମଣ୍ଡଳ ଦଶମ ଅଧ୍ୟାୟ ୧୨୫ ସୂକ୍ତର ଆଠୋଟି ଋଗ୍ ଅଟେ ।

ଅହଂ ସୋମମାହନସଂ ବିଭର୍ମ୍ୟହଂ ତ୍ୱଷ୍ଟାରମୁତ ପୂଷଣଂ ଭଗମ୍ ।
ଅହଂ ଦଧାମି ଦ୍ରବିଣଂ ହବିଷ୍ମତେ ସୁପ୍ରାବ୍ୟେ ଯଜମାନାୟ ସୁନ୍ୱତେ ॥ ୨ ॥
ଅହଂ ରାଷ୍ଟ୍ରୀ ସଂଗମନୀ ବସୂନାଂ ଚିକିତୁଷୀ ପ୍ରଥମା ଯଜ୍ଞିୟାନାମ୍ ।
ତାଂ ମା ଦେବା ବ୍ୟଦଧୁଃ ପୁରୁତ୍ରା ଭୂରିସ୍ଥାତ୍ରାଂ ଭୂର୍ଯ୍ୟାବେଶୟନ୍ତୀମ୍ ॥ ୩ ॥
ମୟା ସୋ ଅନ୍ନମତ୍ତି ଯୋ ବିପଶ୍ୟତି ଯଃ
ପ୍ରାଣିତି ଯ ଈଂ ଶୃଣୋତ୍ୟୁକ୍ତମ୍ ।
ଅମନ୍ତବୋ ମାଂ ତ ଉପ କ୍ଷିୟନ୍ତି ଶ୍ରୁଧି
ଶ୍ରୁତ ଶ୍ରଦ୍ଧିବଂ ତେ ବଦାମି ॥ ୪ ॥
ଅହମେବ ସ୍ୱୟମିଦଂ ବଦାମି ଜୁଷ୍ଟଂ
ଦେବେଭିରୁତ ମାନୁଷେଭିଃ ।

---

ଇନ୍ଦ୍ର ଏବଂ ଅଗ୍ନିଙ୍କୁ ତଥା ଦୁଇ ଅଶ୍ୱିନୀକୁମାରଙ୍କୁ ଧାରଣ କରିଛି ॥ ୧ ॥ ମୁଁ ହିଁ ଶତ୍ରୁମାନଙ୍କ ନାଶକ ଆକାଶଗ୍ରରୀ ଦେବତା ସୋମଙ୍କୁ, ତ୍ୱଷ୍ଟା ପ୍ରଜାପତିଙ୍କୁ ତଥା ପୂଷା ଏବଂ ଭଗଙ୍କୁ ଧାରଣ କରିଛି । ଯେଉଁ ଯଜମାନ ହବିଷ୍ୟଦ୍ୱାରା ସମ୍ପନ୍ନ ହୋଇ ଦେବତାମାନଙ୍କୁ ଉତ୍ତମ ହବିଷ୍ୟର ପ୍ରାପ୍ତି କରାଏ ତଥା ସେମାନଙ୍କୁ ସୋମରସଦ୍ୱାରା ତୃପ୍ତ କରାଏ; ତା'ପାଇଁ ମୁଁ ହିଁ ଉତ୍ତମ ଯଜ୍ଞଫଳ ଓ ଧନ ପ୍ରଦାନ କରେ ॥ ୨ ॥ ମୁଁ ସାରା ଜଗତ୍‌ର ଅଧୀଶ୍ୱରୀ, ନିଜ ଉପାସକମାନଙ୍କୁ ଧନପ୍ରଦାନକାରିଣୀ, ସାକ୍ଷାତ୍‌କାରଯୋଗ୍ୟ ପରବ୍ରହ୍ମଙ୍କୁ ନିଜଠାରୁ ଅଭିନ୍ନ ରୂପରେ ଜ୍ଞାନକାରିଣୀ ତଥା ପୂଜନୀୟ ଦେବତାମାନଙ୍କ ମଧ୍ୟରେ ପ୍ରଧାନ ଅଟେ । ମୁଁ ପ୍ରପଞ୍ଚରୂପରେ ଅନେକଭାବରେ ସ୍ଥିତ ଅଛି । ସମସ୍ତ ଭୂତ ମଧ୍ୟରେ ମୋର ପ୍ରବେଶ ରହିଛି । ଅନେକ ସ୍ଥାନରେ ରହିଥିବା ଦେବତା ଯେକୌଣସି ସ୍ଥାନରେ ଯାହା କିଛି ବି କରନ୍ତି; ସେସବୁ ମୋପାଇଁ କରନ୍ତି ॥ ୩ ॥ ଯିଏ ଅନ୍ନ ଭକ୍ଷଣ କରେ; ସେ ମୋ ଶକ୍ତିଦ୍ୱାରା ହିଁ ଭକ୍ଷଣ କରେ (କାରଣ ମୁଁ ହିଁ ଭୋକ୍ତୃ-ଶକ୍ତି ଅଟେ); ଏହିପ୍ରକାର ଯିଏ ଦେଖେ; ଯିଏ ଶ୍ୱାସ ପ୍ରଶ୍ୱାସ ଗ୍ରହଣ କରେ ତଥା ଯେ କଥିତ ବଚନକୁ ଶ୍ରବଣ କରେ; ସେ ମୋ ସହାୟତାରେ ଉକ୍ତ ସମସ୍ତ କର୍ମ କରିବାକୁ ସମର୍ଥ ହୁଏ । ଯେଉଁମାନେ ମୋତେ ଏହି ରୂପରେ ଜାଣନ୍ତି ନାହିଁ; ସେମାନେ ନ ଜାଣିବାଯୋଗୁଁ ହିଁ ଦୀନ ଦଶାକୁ ପ୍ରାପ୍ତ ହୁଅନ୍ତି । ମୁଁ ତୁମ୍ଭଙ୍କୁ ଶ୍ରଦ୍ଧାରେ ପ୍ରାପ୍ତ ହେଉଥିବା ବ୍ରହ୍ମତତ୍ତ୍ୱକୁ ଉପଦେଶ କରୁଛି । ତାହା ଶ୍ରବଣ କର—॥ ୪ ॥ ମୁଁ ସ୍ୱୟଂ ହିଁ ଦେବତା ଓ ମନୁଷ୍ୟମାନଙ୍କଦ୍ୱାରା ସେବିତ ଏହି

ଯଂ କାମୟେ ତଂ ତମୁଗ୍ରଂ କୃଣୋମି
ତଂ ବ୍ରହ୍ମାଣଂ ତମୃଷିଂ ତଂ ସୁମେଧାମ୍ ॥ ୫ ॥
ଅହଂ ରୁଦ୍ରାୟ ଧନୁରା ତନୋମି ବ୍ରହ୍ମଦ୍ୱିଷେ ଶରବେ ହନ୍ତବା ଉ ।
ଅହଂ ଜନାୟ ସମଦଂ କୃଣୋମ୍ୟହଂ ଦ୍ୟାବାପୃଥିବୀ ଆ ବିବେଶ ॥ ୬ ॥
ଅହଂ ସୁବେ ପିତରମସ୍ୟ ମୂର୍ଧନ୍ମମ
ଯୋନିରପ୍ସ୍ୱନ୍ତଃ ସମୁଦ୍ରେ ।
ତତୋ ବି ତିଷ୍ଠେ ଭୁବନାନୁ ବିଶ୍ୱୋ-
ତାମୂଂ ଦ୍ୟାଂ ବର୍ଷ୍ମଣୋପ ସ୍ପୃଶାମି ॥ ୭ ॥
ଅହମେବ ବାତ ଇବ ପ୍ରବାମ୍ୟାରଭମାଣା ଭୁବନାନି ବିଶ୍ୱା ।
ପରୋ ଦିବା ପର ଏନା ପୃଥିବ୍ୟୈତାବତୀ ମହିନା ସଂବଭୂବ ॥ ୮ ॥*

ଦୁର୍ଲଭ ତତ୍ତ୍ୱକୁ ବର୍ଣ୍ଣନା କରୁଛି । ମୁଁ ଯେଉଁ ଯେଉଁ ପୁରୁଷଙ୍କୁ ରକ୍ଷା କରିବାକୁ ଇଚ୍ଛା କରେ; ସେମାନଙ୍କୁ ସର୍ବାପେକ୍ଷା ଅଧିକ ଶକ୍ତିଶାଳୀ କରିଦିଏ । ସେମାନଙ୍କୁ ସୃଷ୍ଟିକର୍ତ୍ତା ବ୍ରହ୍ମା, ପରୋକ୍ଷଜ୍ଞାନସଂପନ୍ନ ଋଷି ତଥା ଉତ୍ତମ ମେଧାଶକ୍ତିସଂପନ୍ନ କରେ ॥ ୫ ॥ ମୁଁ ହିଁ ବ୍ରହ୍ମଦ୍ୱେଷୀ ହିଂସ୍ର ଅସୁରମାନଙ୍କୁ ବଧ କରିବା ନିମନ୍ତେ ରୁଦ୍ରଙ୍କ ଧନୁ ଉତ୍ତୋଳନ କରେ । ମୁଁ ଶରଣାଗତଜନଙ୍କ ରକ୍ଷା ନିମନ୍ତେ ଶତ୍ରୁମାନଙ୍କ ସହ ଯୁଦ୍ଧ କରେ ତଥା ଅନ୍ତର୍ଯାମୀ ରୂପରେ ପୃଥିବୀ ଓ ଆକାଶ ମଧ୍ୟରେ ବ୍ୟାପ୍ତ ରହେ ॥ ୬ ॥ ମୁଁ ଏହି ଜଗତ୍‌ର ପିତାରୂପକ ଆକାଶକୁ ସର୍ବାଧିଷ୍ଠାନସ୍ୱରୂପ ପରମାତ୍ମାଙ୍କ ଉପରେ ଉତ୍ପନ୍ନ କରେ । ସମୁଦ୍ର (ସମସ୍ତ ଭୂତଗୁଡ଼ିକର ଉତ୍ପତ୍ତିସ୍ଥାନ ପରମାତ୍ମା)ରେ ତଥା ଜଳ (ବୁଦ୍ଧିର ବ୍ୟାପକ ବୃତ୍ତିମାନଙ୍କ)ରେ ମୋ ହେତୁ (କାରଣସ୍ୱରୂପ ଚୈତନ୍ୟ ବ୍ରହ୍ମ)ର ସ୍ଥିତି ଅଛି । ଅତଏବ ମୁଁ ସମସ୍ତ ଭୁବନରେ ବ୍ୟାପ୍ତ ଅଛି ତଥା ସେହି ସ୍ୱର୍ଗଲୋକକୁ ମଧ୍ୟ ନିଜ ଶରୀରଦ୍ୱାରା ସ୍ପର୍ଶ କରୁଛି ॥ ୭ ॥ ମୁଁ କାରଣରୂପରେ ଯେତେବେଳେ ସମସ୍ତ ବିଶ୍ୱର ରଚନା ଆରମ୍ଭ କରେ; ସେତେବେଳେ ଅନ୍ୟର ପ୍ରେରଣା ବିନା ସ୍ୱୟଂ ବାୟୁସଦୃଶ ଗମନ କରେ; ସ୍ୱତଃ ହିଁ କର୍ମରେ ପ୍ରବୃତ୍ତ ହୁଏ । ମୁଁ ପୃଥିବୀ ଓ ଆକାଶ ଉଭୟଠାରୁ ବହୁ ଉର୍ଦ୍ଧ୍ୱରେ । ନିଜ ମହିମାଦ୍ୱାରା ମୁଁ ଏତାଦୃଶୀ ହୋଇଛି ॥ ୮ ॥



* ଏହାପରେ ତନ୍ତ୍ରୋକ୍ତ ଦେବୀସୂକ୍ତ ଦିଆଗଲା । ତାହାକୁ ମଧ୍ୟ ପାଠ କରିବା ଉଚିତ ।

# ଅଥ ତନ୍ତ୍ରୋକ୍ତଂ ଦେବୀସୂକ୍ତମ୍*

ନମୋ ଦେବ୍ୟୈ ମହାଦେବ୍ୟୈ ଶିବାୟୈ ସତତଂ ନମଃ ।
ନମଃ ପ୍ରକୃତ୍ୟୈ ଭଦ୍ରାୟୈ ନିୟତାଃ ପ୍ରଣତାଃ ସ୍ମ ତାମ୍ ॥ ୧ ॥
ରୌଦ୍ରାୟୈ ନମୋ ନିତ୍ୟାୟୈ ଗୌର୍ଯ୍ୟୈ ଧାତ୍ର୍ୟୈ ନମୋ ନମଃ ।
ଜ୍ୟୋତ୍ସ୍ନାୟୈ ଚେନ୍ଦୁରୂପିଣ୍ୟୈ ସୁଖାୟୈ ସତତଂ ନମଃ ॥ ୨ ॥
କଲ୍ୟାଣ୍ୟୈ ପ୍ରଣତାଂ ବୃଦ୍ଧ୍ୟୈ ସିଦ୍ଧ୍ୟୈ କୁର୍ମୋ ନମୋ ନମଃ ।
ନୈର୍ଋତ୍ୟୈ ଭୂଭୃତାଂ ଲକ୍ଷ୍ମ୍ୟୈ ଶର୍ବାଣ୍ୟୈ ତେ ନମୋ ନମଃ ॥ ୩ ॥
ଦୁର୍ଗାୟୈ ଦୁର୍ଗପାରାୟୈ ସାରାୟୈ ସର୍ବକାରିଣ୍ୟୈ ।
ଖ୍ୟାତ୍ୟୈ ତଥୈବ କୃଷ୍ଣାୟୈ ଧୂମ୍ରାୟୈ ସତତଂ ନମଃ ॥ ୪ ॥
ଅତିସୌମ୍ୟାତିରୌଦ୍ରାୟୈ ନତାସ୍ତସ୍ୟୈ ନମୋ ନମଃ ।
ନମୋ ଜଗତ୍‌ପ୍ରତିଷ୍ଠାୟୈ ଦେବ୍ୟୈ କୃତ୍ୟୈ ନମୋ ନମଃ ॥ ୫ ॥
ଯା ଦେବୀ ସର୍ବଭୂତେଷୁ ବିଷ୍ଣୁମାୟେତି ଶବ୍ଦିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୬ ॥
ଯା ଦେବୀ ସର୍ବଭୂତେଷୁ ଚେତନେତ୍ୟଭିଧୀୟତେ ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୭ ॥
ଯା ଦେବୀ ସର୍ବଭୂତେଷୁ ବୁଦ୍ଧିରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୮ ॥
ଯା ଦେବୀ ସର୍ବଭୂତେଷୁ ନିଦ୍ରାରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୯ ॥
ଯା ଦେବୀ ସର୍ବଭୂତେଷୁ କ୍ଷୁଧାରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥୧୦ ॥

---

* ଦେବୀସୂକ୍ତର ଅର୍ଥ ପଞ୍ଚମ ଅଧ୍ୟାୟ (ପୃଷ୍ଠା ୧୧୦—୧୧୫)ରେ ଦିଆଯାଇଛି ।

ଯା ଦେବୀ ସର୍ବଭୂତେଷୁଚ୍ଛାୟାରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୧୧ ॥
ଯା ଦେବୀ ସର୍ବଭୂତେଷୁ ଶକ୍ତିରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୧୨ ॥
ଯା ଦେବୀ ସର୍ବଭୂତେଷୁ ତୃଷ୍ଣାରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୧୩ ॥
ଯା ଦେବୀ ସର୍ବଭୂତେଷୁ କ୍ଷାନ୍ତିରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୧୪ ॥
ଯା ଦେବୀ ସର୍ବଭୂତେଷୁ ଜାତିରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୧୫ ॥
ଯା ଦେବୀ ସର୍ବଭୂତେଷୁ ଲଜ୍ଜାରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୧୬ ॥
ଯା ଦେବୀ ସର୍ବଭୂତେଷୁ ଶାନ୍ତିରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୧୭ ॥
ଯା ଦେବୀ ସର୍ବଭୂତେଷୁ ଶ୍ରଦ୍ଧାରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୧୮ ॥
ଯା ଦେବୀ ସର୍ବଭୂତେଷୁ କାନ୍ତିରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୧୯ ॥
ଯା ଦେବୀ ସର୍ବଭୂତେଷୁ ଲକ୍ଷ୍ମୀରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୨୦ ॥
ଯା ଦେବୀ ସର୍ବଭୂତେଷୁ ବୃତ୍ତିରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୨୧ ॥
ଯା ଦେବୀ ସର୍ବଭୂତେଷୁ ସ୍ମୃତିରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୨୨ ॥

ଯା ଦେବୀ ସର୍ବଭୂତେଷୁ ଦୟାରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୨୩ ॥
ଯା ଦେବୀ ସର୍ବଭୂତେଷୁ ତୁଷ୍ଟିରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୨୪ ॥
ଯା ଦେବୀ ସର୍ବଭୂତେଷୁ ମାତୃରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୨୫ ॥
ଯା ଦେବୀ ସର୍ବଭୂତେଷୁ ଭ୍ରାନ୍ତିରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୨୬ ॥
ଇନ୍ଦ୍ରିୟାଣାମଧିଷ୍ଠାତ୍ରୀ ଭୂତାନାଂ ଚାଖିଳେଷୁ ଯା ।
ଭୂତେଷୁ ସତତଂ ତସ୍ୟୈ ବ୍ୟାପ୍ତିଦେବ୍ୟୈ ନମୋ ନମଃ ॥ ୨୭ ॥
ଚିତିରୂପେଣ ଯା କୃତ୍ସ୍ନମେତଦ୍‌ବ୍ୟାପ୍ୟ ସ୍ଥିତା ଜଗତ୍ ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୨୮ ॥
ସ୍ତୁତା ସୁରୈଃ ପୂର୍ବମଭୀଷ୍ଟସଂଶ୍ରୟା-
ତ୍ତଥା ସୁରେନ୍ଦ୍ରେଣ ଦିନେଷୁ ସେବିତା ।
କରୋତୁ ସା ନଃ ଶୁଭହେତୁରୀଶ୍ୱରୀ
ଶୁଭାନି ଭଦ୍ରାଣ୍ୟଭିହନ୍ତୁ ଚାପଦଃ ॥ ୨୯ ॥
ଯା ସାମ୍ପ୍ରତଂ ଚୋଦ୍ଧତଦୈତ୍ୟତାପିତୈ-
ରସ୍ମାଭିରୀଶା ଚ ସୁରୈର୍ନମସ୍ୟତେ ।
ଯା ଚ ସ୍ମୃତା ତତ୍କ୍ଷଣମେବ ହନ୍ତି ନଃ
ସର୍ବାପଦୋ ଭକ୍ତିବିନମ୍ରମୂର୍ତ୍ତିଭିଃ ॥ ୩୦ ॥*



* ଏହାପରେ 'ପ୍ରାଧାନିକ' ଆଦି ତିନୋଟି ରହସ୍ୟକୁ ପାଠ କରିବା ଉଚିତ ।

# ଅଥ ପ୍ରାଧାନିକଂ ରହସ୍ୟମ୍

ଓଁ ଅସ୍ୟ ଶ୍ରୀସପ୍ତଶତୀରହସ୍ୟତ୍ରୟସ୍ୟ ନାରାୟଣ ଋଷିରନୁଷ୍ଟୁପ୍ଛନ୍ଦଃ, ମହାକାଳୀ-ମହାଲକ୍ଷ୍ମୀମହାସରସ୍ୱତ୍ୟୋ ଦେବତା ଯଥୋକ୍ତଫଳାବାପ୍ତ୍ୟର୍ଥଂ ଜପେ ବିନିୟୋଗଃ ।

*ରାଜୋବାଚ*

ଭଗବନ୍ନବତାରା ମେ ଚଣ୍ଡିକାୟାସ୍ତ୍ୱୟୋଦିତାଃ ।
ଏତେଷାଂ ପ୍ରକୃତିଂ ବ୍ରହ୍ମନ୍ ପ୍ରଧାନଂ ବକ୍ତୁମର୍ହସି ॥ ୧ ॥
ଆରାଧ୍ୟଂ ଯନ୍ମୟା ଦେବ୍ୟାଃ ସ୍ୱରୂପଂ ଯେନ ଚ ଦ୍ୱିଜ ।
ବିଧିନା ବ୍ରୂହି ସକଳଂ ଯଥାବତ୍ପ୍ରଣତସ୍ୟ ମେ ॥ ୨ ॥

*ଋଷିରୁବାଚ*

ଇଦଂ ରହସ୍ୟଂ ପରମମନାଖ୍ୟେୟଂ ପ୍ରଚକ୍ଷତେ ।
ଭକ୍ତୋଽସୀତି ନ ମେ କିଞ୍ଚିତ୍ତବାବାଚ୍ୟଂ ନରାଧିପ ॥ ୩ ॥
ସର୍ବସ୍ୟାଦ୍ୟା ମହାଲକ୍ଷ୍ମୀସ୍ତ୍ରିଗୁଣା ପରମେଶ୍ୱରୀ ।
ଲକ୍ଷ୍ୟାଲକ୍ଷ୍ୟସ୍ୱରୂପା ସା ବ୍ୟାପ୍ୟ କୃତ୍ସ୍ନଂ ବ୍ୟବସ୍ଥିତା ॥ ୪ ॥

---

॥ ଓଁ ॥ ସପ୍ତଶତୀଙ୍କ ଏହି ତିନୋଟି ରହସ୍ୟର ନାରାୟଣ ଋଷି, ଅନୁଷ୍ଟୁପ୍ ଛନ୍ଦ ତଥା ମହାକାଳୀ, ମହାଲକ୍ଷ୍ମୀ ଏବଂ ମହାସରସ୍ୱତୀ ଦେବତା ଅଟନ୍ତି । ଶାସ୍ତ୍ରୋକ୍ତ ଫଳ ପ୍ରାପ୍ତି ନିମନ୍ତେ ଜପରେ ଏମାନଙ୍କ ବିନିଯୋଗ ହୁଏ ।

**ରାଜା କହିଲେ**—ହେ ଭଗବନ୍ ! ଆପଣ ଚଣ୍ଡିକାଙ୍କ ଅବତାରମାନଙ୍କର କଥା ମୋତେ କହିଲେ । ହେ ବ୍ରହ୍ମନ୍ ! ସଂପ୍ରତି ଏହି ଅବତାରମାନଙ୍କର ପ୍ରଧାନ ପ୍ରକୃତିର ନିରୂପଣ କରନ୍ତୁ ॥ ୧ ॥ ହେ ଦ୍ୱିଜଶ୍ରେଷ୍ଠ ! ମୁଁ ଆପଣଙ୍କ ଶରଣାଗତ । ଦେବୀଙ୍କ ଯେଉଁ ସ୍ୱରୂପକୁ ଯେଉଁ ବିଧିରେ ଆରାଧନା କରିବା ବିଧେୟ; ମୋତେ ସେସବୁ ଯଥାର୍ଥରୂପରେ ନିର୍ଦ୍ଦେଶ କରନ୍ତୁ ॥ ୨ ॥

**ଋଷି କହିଲେ**—ହେ ରାଜନ୍ ! ଏହି ରହସ୍ୟ ଅତି ଗୋପନୀୟ ଅଟେ । ଏହାକୁ କାହାରିକୁ କହିବାଯୋଗ୍ୟ ନୁହେଁ ବୋଲି କୁହାଯାଇଛି । କିନ୍ତୁ ତୁମେ ମୋର ଭକ୍ତ । ତେଣୁ ତୁମ୍ଭଙ୍କୁ ନ କହିବା ବିଷୟ ମୋ ପାଖରେ ଆଉ କିଛି ନାହିଁ ॥ ୩ ॥ ତ୍ରିଗୁଣମୟୀ ପରମେଶ୍ୱରୀ ମହାଲକ୍ଷ୍ମୀ ହିଁ ସମସ୍ତଙ୍କ ଆଦିକାରଣ ଅଟନ୍ତି । ସେ ହିଁ ଦୃଶ୍ୟ ଏବଂ ଅଦୃଶ୍ୟରୂପରେ ସମସ୍ତ ବିଶ୍ୱକୁ ବ୍ୟାପ୍ତ କରି ସ୍ଥିତ ଅଛନ୍ତି ॥ ୪ ॥

ମାତୁଲୁଙ୍ଗଂ ଗଦାଂ ଖେଟଂ ପାନପାତ୍ରଂ ଚ ବିଭ୍ରତୀ ।
ନାଗଂ ଲିଙ୍ଗଂ ଚ ଯୋନିଂ ଚ ବିଭ୍ରତୀ ନୃପ ମୂର୍ଧନି ॥ ୫ ॥
ତପ୍ତକାଞ୍ଚନବର୍ଣ୍ଣାଭା ତପ୍ତକାଞ୍ଚନଭୂଷଣା ।
ଶୂନ୍ୟଂ ତଦଖିଲଂ ସ୍ୱେନ ପୂରୟାମାସ ତେଜସା ॥ ୬ ॥
ଶୂନ୍ୟଂ ତଦଖିଲଂ ଲୋକଂ ବିଲୋକ୍ୟ ପରମେଶ୍ୱରୀ ।
ବଭାର ପରମଂ ରୂପଂ ତମସା କେବଲେନ ହି ॥ ୭ ॥
ସା ଭିନ୍ନାଞ୍ଜନସଂକାଶା ଦଂଷ୍ଟ୍ରାଙ୍କିତବରାନନା ।
ବିଶାଳଲୋଚନା ନାରୀ ବଭୂବ ତନୁମଧ୍ୟମା ॥ ୮ ॥
ଖଡ୍ଗପାତ୍ରଶିରଃଖେଟୈରଲଂକୃତଚତୁର୍ଭୁଜା ।
କବନ୍ଧହାରଂ ଶିରସା ବିଭ୍ରାଣା ହି ଶିରଃସ୍ରଜମ୍ ॥ ୯ ॥
ସା ପ୍ରୋବାଚ ମହାଲକ୍ଷ୍ମୀଂ ତାମସୀ ପ୍ରମଦୋତ୍ତମା ।
ନାମ କର୍ମ ଚ ମେ ମାତର୍ଦେହି ତୁଭ୍ୟଂ ନମୋ ନମଃ ॥ ୧୦ ॥
ତାଂ ପ୍ରୋବାଚ ମହାଲକ୍ଷ୍ମୀସ୍ତାମସୀଂ ପ୍ରମଦୋତ୍ତମାମ୍ ।

---

ହେ ରାଜନ୍ ! ସେ ନିଜ ଚାରୋଟି ହାତରେ ମାତୁଲୁଙ୍ଗ (ଟଭା ଲେମ୍ବୁ), ଗଦା, ଖେଟ (ଢାଲ) ଏବଂ ପାନପାତ୍ର ଓ ମସ୍ତକରେ ନାଗ, ଲିଙ୍ଗ ତଥା ଯୋନି ଏହି ବସ୍ତୁଗୁଡ଼ିକୁ ଧାରଣ କରିଛନ୍ତି ॥ ୫ ॥ ତପ୍ତ ହୋଇଥିବା ସୁବର୍ଣ୍ଣ ସମାନ ତାଙ୍କର କାନ୍ତି ଅଟେ। ତପ୍ତ ସୁବର୍ଣ୍ଣ ତାଙ୍କର ଭୂଷଣ ଅଟେ। ସେ ନିଜ ତେଜରେ ଏହି ଶୂନ୍ୟ ଜଗତ୍‌କୁ ପରିପୂର୍ଣ୍ଣ କରିଛନ୍ତି ॥ ୬ ॥ ପରମେଶ୍ୱରୀ ମହାଲକ୍ଷ୍ମୀ ଏହି ସମସ୍ତ ଜଗତ୍‌କୁ ଶୂନ୍ୟ ଦେଖି କେବଳ ତମୋଗୁଣରୂପ ଉପାଧିଦ୍ୱାରା ଏକ ଅନ୍ୟ ଉତ୍କୃଷ୍ଟ ରୂପ ଧାରଣ କଲେ ॥ ୭ ॥ ସେହି ରୂପ ଏକ ନାରୀ ରୂପରେ ପ୍ରକଟ ହେଲେ। ତାଙ୍କ ଶରୀରର କାନ୍ତି ଅସାଧାରଣ କଜ୍ଜ୍ୱଳ ସମାନ କୃଷ୍ଣରଙ୍ଗର ଥିଲା। ତାଙ୍କର ଶ୍ରେଷ୍ଠ ମୁଖ ଦାନ୍ତଦ୍ୱାରା ସୁଶୋଭିତ ଥିଲା। ନେତ୍ର ବଡ଼ ବଡ଼ ଓ କମର ପତଳା ଥିଲା ॥ ୮ ॥ ତାଙ୍କର ଚାରୋଟି ବାହୁ ଢାଲ, ଖଡ୍ଗ, ପାତ୍ର ଏବଂ ଛିନ୍ନମସ୍ତକଦ୍ୱାରା ସୁଶୋଭିତ ଥିଲା। ସେ ବକ୍ଷଃସ୍ଥଳରେ କବନ୍ଧ ତଥା ମସ୍ତକରେ ମୁଣ୍ଡର ମାଳା ଧାରଣ କରିଥିଲେ ॥ ୯ ॥ ଏହିପ୍ରକାର ପ୍ରକଟ ହୋଇଥିବା ସ୍ତ୍ରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ତାମସୀ ଦେବୀ ମହାଲକ୍ଷ୍ମୀଙ୍କୁ କହିଲେ—ହେ ମାତଃ ! ଆପଣଙ୍କୁ ନମସ୍କାର। ମୋତେ ମୋର ନାମ ଓ କର୍ମ ନିର୍ଦ୍ଦେଶ କରନ୍ତୁ ॥ ୧୦ ॥ ସେତେବେଳେ ମହାଲକ୍ଷ୍ମୀ

ଦଦାମି ତବ ନାମାନି ଯାନି କର୍ମାଣି ତାନି ତେ ॥ ୧୧ ॥
ମହାମାୟା ମହାକାଲୀ ମହାମାରୀ କ୍ଷୁଧା ତୃଷା ।
ନିଦ୍ରା ତୃଷ୍ଣା ଚୈକବୀରା କାଲରାତ୍ରିର୍ଦୁରତ୍ୟୟା ॥ ୧୨ ॥
ଇମାନି ତବ ନାମାନି ପ୍ରତିପାଦ୍ୟାନି କର୍ମଭିଃ ।
ଏଭିଃ କର୍ମାଣି ତେ ଜ୍ଞାତ୍ୱା ଯୋଽଧୀତେ ସୋଽଶ୍ନୁତେ ସୁଖମ୍ ॥ ୧୩ ॥
ତାମିତ୍ୟୁକ୍ତ୍ୱା ମହାଲକ୍ଷ୍ମୀଃ ସ୍ୱରୂପମପରଂ ନୃପ ।
ସତ୍ତ୍ୱାଖ୍ୟେନାତିଶୁଦ୍ଧେନ ଗୁଣେନେନ୍ଦୁପ୍ରଭଂ ଦଧୌ ॥ ୧୪ ॥
ଅକ୍ଷମାଲାଙ୍କୁଶଧରା ବୀଣାପୁସ୍ତକଧାରିଣୀ ।
ସା ବଭୂବ ବରା ନାରୀ ନାମାନ୍ୟସ୍ୟୈ ଚ ସା ଦଦୌ ॥ ୧୫ ॥
ମହାବିଦ୍ୟା ମହାବାଣୀ ଭାରତୀ ବାକ୍ ସରସ୍ୱତୀ ।
ଆର୍ଯ୍ୟା ବ୍ରାହ୍ମୀ କାମଧେନୁର୍ବେଦଗର୍ଭା ଚ ଧୀଶ୍ୱରୀ ॥ ୧୬ ॥
ଅଥୋବାଚ ମହାଲକ୍ଷ୍ମୀର୍ମହାକାଲୀଂ ସରସ୍ୱତୀମ୍ ।
ଯୁବାଂ ଜନୟତାଂ ଦେବ୍ୟୌ ମିଥୁନେ ସ୍ୱାନୁରୂପତଃ ॥ ୧୭ ॥

ସ୍ତ୍ରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ସେହି ତାମସୀ ଦେବୀଙ୍କୁ କହିଲେ—'ମୁଁ ତୁମ୍ଭଙ୍କୁ ନାମ ପ୍ରଦାନ କରୁଛି ଏବଂ ତୁମ ନିମନ୍ତେ ଯେଉଁ ଯେଉଁ କର୍ମ ରହିଛି; ସେଗୁଡ଼ିକୁ ମଧ୍ୟ କହୁଛି ॥ ୧୧ ॥ ମହାମାୟା, ମହାକାଳୀ, ମହାମାରୀ, କ୍ଷୁଧା, ତୃଷା, ନିଦ୍ରା, ତୃଷ୍ଣା, ଏକବୀରା, କାଳରାତ୍ରି ତଥା ଦୁରତ୍ୟୟା—॥ ୧୨ ॥ ଏଗୁଡ଼ିକ ତୁମ୍ଭର ନାମ ଅଟେ; ଯାହା କର୍ମଦ୍ୱାରା ସଂସାରରେ ଚରିତାର୍ଥ ହେବେ । ଏହି ନାମ ଦ୍ୱାରା ତୁମ୍ଭର କର୍ମକୁ ଜାଣି ଯେଉଁ ପୁରୁଷ ଏସବୁ ପାଠ କରେ; ସେ ସୁଖ ଭୋଗ କରେ' ॥ ୧୩ ॥ ହେ ରାଜନ୍ ! ମହାକାଳୀଙ୍କୁ ଏହିପରି କହି ମହାଲକ୍ଷ୍ମୀ ଅତ୍ୟନ୍ତ ଶୁଦ୍ଧ ସତ୍ତ୍ୱଗୁଣ ଦ୍ୱାରା ଅନ୍ୟ ରୂପ ଧାରଣ କଲେ; ଯାହା ଚନ୍ଦ୍ରମାସମାନ ଗୌରବର୍ଣ୍ଣ ଥିଲା ॥ ୧୪ ॥ ସେହି ଶ୍ରେଷ୍ଠ ନାରୀ ସ୍ୱହସ୍ତରେ ଅକ୍ଷମାଳା, ଅଙ୍କୁଶ, ବୀଣା ତଥା ପୁସ୍ତକ ଧାରଣ କରିଥିଲେ । ମହାଲକ୍ଷ୍ମୀ ତାହାଙ୍କୁ ମଧ୍ୟ ନାମ ପ୍ରଦାନ କଲେ ॥ ୧୫ ॥ ମହାବିଦ୍ୟା, ମହାବାଣୀ, ଭାରତୀ, ବାକ୍, ସରସ୍ୱତୀ, ଆର୍ଯ୍ୟା, ବ୍ରାହ୍ମୀ, କାମଧେନୁ, ବେଦଗର୍ଭା ଓ ଧୀଶ୍ୱରୀ (ବୁଦ୍ଧିର ସ୍ୱାମିନୀ)—ଏଗୁଡ଼ିକ ତୁମ୍ଭର ନାମ ହେବ ॥ ୧୬ ॥ ତାପରେ ମହାଲକ୍ଷ୍ମୀ ମହାକାଳୀ ଓ ମହାସରସ୍ୱତୀଙ୍କୁ କହିଲେ—'ହେ ଦେବୀଗଣ ! ତୁମେ ଦୁଇଜଣ ନିଜ ନିଜ ଗୁଣଯୋଗ୍ୟ ସ୍ତ୍ରୀ ପୁରୁଷଙ୍କ ଯୁଗଳ ଉତ୍ପନ୍ନ କର' ॥ ୧୭ ॥

ଇତ୍ୟୁକ୍ତ୍ୱା ତେ ମହାଲକ୍ଷ୍ମୀଃ ସସର୍ଜ ମିଥୁନଂ ସ୍ୱୟମ୍ ।
ହିରଣ୍ୟଗର୍ଭୌ ରୁଚିରୌ ସ୍ତ୍ରୀପୁଂସୌ କମଳାସନୌ ॥ ୧୮ ॥
ବ୍ରହ୍ମନ୍ ବିଧେ ବିରିଞ୍ଚେତି ଧାତରିତ୍ୟାହ ତଂ ନରମ୍ ।
ଶ୍ରୀଃ ପଦ୍ମେ କମଳେ ଲକ୍ଷ୍ମୀତ୍ୟାହ ମାତା ଚ ତାଂ ସ୍ତ୍ରିୟମ୍ ॥ ୧୯ ॥
ମହାକାଳୀ ଭାରତୀ ଚ ମିଥୁନେ ସୃଜତଃ ସହ ।
ଏତୟୋରପି ରୂପାଣି ନାମାନି ଚ ବଦାମି ତେ ॥ ୨୦ ॥
ନୀଳକଣ୍ଠଂ ରକ୍ତବାହୁଂ ଶ୍ୱେତାଙ୍ଗଂ ଚନ୍ଦ୍ରଶେଖରମ୍ ।
ଜନୟାମାସ ପୁରୁଷଂ ମହାକାଳୀ ସିତାଂ ସ୍ତ୍ରିୟମ୍ ॥ ୨୧ ॥
ସ ରୁଦ୍ରଃ ଶଙ୍କରଃ ସ୍ଥାଣୁଃ କପର୍ଦ୍ଦୀ ଚ ତ୍ରିଲୋଚନଃ ।
ତ୍ରୟୀ ବିଦ୍ୟା କାମଧେନୁଃ ସା ସ୍ତ୍ରୀ ଭାଷାକ୍ଷରା ସ୍ୱରା ॥ ୨୨ ॥
ସରସ୍ୱତୀ ସ୍ତ୍ରିୟଂ ଗୌରୀଂ କୃଷ୍ଣଂ ଚ ପୁରୁଷଂ ନୃପ ।
ଜନୟାମାସ ନାମାନି ତୟୋରପି ବଦାମି ତେ ॥ ୨୩ ॥

ସେହି ଦୁହିଁଙ୍କୁ ଏହିପରି କହି ମହାଲକ୍ଷ୍ମୀ ପ୍ରଥମେ ସ୍ୱୟଂ ହିଁ ସ୍ତ୍ରୀ-ପୁରୁଷର ଏକ ଯୁଗଳ ଉତ୍ପନ୍ନ କଲେ । ସେ ଦୁହେଁ ହିରଣ୍ୟଗର୍ଭ (ନିର୍ମଳ ଜ୍ଞାନସଂପନ୍ନ) ସୁନ୍ଦର ତଥା କମଳାସନ ଉପରେ ବିରାଜମାନ ଥିଲେ । ସେମାନଙ୍କ ମଧ୍ୟରୁ ଜଣେ ସ୍ତ୍ରୀ ଥିଲେ ଏବଂ ଅନ୍ୟଜଣକ ପୁରୁଷ ॥ ୧୮ ॥ ତତ୍‌ପଶ୍ଚାତ୍ ମାତା ମହାଲକ୍ଷ୍ମୀ ପୁରୁଷଙ୍କୁ ହେ ବ୍ରହ୍ମନ୍ ! ହେ ବିଧି ! ହେ ବିରଞ୍ଚି ! ତଥା ହେ ଧାତଃ ! ଏହିପ୍ରକାର ସମ୍ବୋଧନ କଲେ ଏବଂ ସ୍ତ୍ରୀଜଣକୁ ହେ ଶ୍ରୀ ! ହେ ପଦ୍ମା ! ହେ କମଳା ! ହେ ଲକ୍ଷ୍ମୀ ! ଇତ୍ୟାଦି ନାମରେ ଡାକିଲେ ॥ ୧୯ ॥ ଏହାପରେ ମହାକାଳୀ ଏବଂ ମହାସରସ୍ୱତୀ ଗୋଟିଏ ଲେଖାଏଁ ଯୁଗଳ ଉତ୍ପନ୍ନ କଲେ । ସେମାନଙ୍କ ରୂପ ଏବଂ ନାମ ମୁଁ ତୁମ୍ଭଙ୍କୁ କହୁଛି ॥ ୨୦ ॥ ମହାକାଳୀ କଣ୍ଠରେ ନୀଳ ଚିହ୍ନଯୁକ୍ତ, ରକ୍ତିମ ଭୁଜ, ଶ୍ୱେତ ଶରୀର ଏବଂ ମସ୍ତକରେ ଚନ୍ଦ୍ରମାର ମୁକୁଟ ଧାରଣ କରିଥିବା ପୁରୁଷଙ୍କୁ ତଥା ଗୌର ରଙ୍ଗର ସ୍ତ୍ରୀଙ୍କୁ ଜନ୍ମ ଦେଲେ ॥ ୨୧ ॥ ସେହି ପୁରୁଷ ରୁଦ୍ର, ଶଙ୍କର, ସ୍ଥାଣୁ, ଜଟାଧାରୀ ଏବଂ ତ୍ରିଲୋଚନ ନାମରେ ପ୍ରସିଦ୍ଧ ହେଲେ ତଥା ସ୍ତ୍ରୀ ତ୍ରୟୀ, ବିଦ୍ୟା, କାମଧେନୁ, ଭାଷା, ଅକ୍ଷରା ଏବଂ ସ୍ୱରା—ଏହିସବୁ ନାମ ବହନ କଲେ ॥ ୨୨ ॥ ହେ ରାଜନ୍ ! ମହାସରସ୍ୱତୀ ଗୌର ରଙ୍ଗର ସ୍ତ୍ରୀ ଏବଂ ଶ୍ୟାମ ରଙ୍ଗର ପୁରୁଷକୁ ପ୍ରକଟ କଲେ । ସେ

ବିଷ୍ଣୁଃ କୃଷ୍ଣୋ ହୃଷୀକେଶୋ ବାସୁଦେବୋ ଜନାର୍ଦ୍ଦନଃ ।
ଉମା ଗୌରୀ ସତୀ ଚଣ୍ଡୀ ସୁନ୍ଦରୀ ସୁଭଗା ଶିବା ॥ ୨୪ ॥
ଏବଂ ଯୁବତୟଃ ସଦ୍ୟଃ ପୁରୁଷତ୍ୱଂ ପ୍ରପେଦିରେ ।
ଚକ୍ଷୁଷ୍ମନ୍ତୋ ନୁ ପଶ୍ୟନ୍ତି ନେତରେଽତଦ୍‌ବିଦୋ ଜନାଃ ॥ ୨୫ ॥
ବ୍ରହ୍ମଣେ ପ୍ରଦଦୌ ପତ୍ନୀଂ ମହାଲକ୍ଷ୍ମୀର୍ନୃପ ତ୍ରୟୀମ୍ ।
ରୁଦ୍ରାୟ ଗୌରୀଂ ବରଦାଂ ବାସୁଦେବାୟ ଚ ଶ୍ରିୟମ୍ ॥ ୨୬ ॥
ସ୍ୱରୟା ସହ ସମ୍ଭୂୟ ବିରିଞ୍ଚୋଽଣ୍ଡମଜୀଜନତ୍ ।
ବିଭେଦ ଭଗବାନ୍ ରୁଦ୍ରସ୍ତଦ୍ ଗୌର୍ଯ୍ୟା ସହ ବୀର୍ଯ୍ୟବାନ୍ ॥ ୨୭ ॥
ଅଣ୍ଡମଧ୍ୟେ ପ୍ରଧାନାଦି କାର୍ଯ୍ୟଜାତମଭୂନ୍ନୃପ ।
ମହାଭୂତାତ୍ମକଂ ସର୍ବଂ ଜଗତ୍‌ସ୍ଥାବରଜଙ୍ଗମମ୍ ॥ ୨୮ ॥
ପୁପୋଷ ପାଳୟାମାସ ତଲ୍ଲକ୍ଷ୍ମ୍ୟା ସହ କେଶବଃ ।
ସଂଜହାର ଜଗତ୍‌ସର୍ବଂ ସହ ଗୌର୍ଯ୍ୟା ମହେଶ୍ୱରଃ ॥ ୨୯ ॥

---

ଦୁହିଁଙ୍କର ନାମ ମଧ୍ୟ ମୁଁ ତୁମ୍ଭଙ୍କୁ କହୁଛି ॥ ୨୩ ॥ ସେମାନଙ୍କ ମଧ୍ୟରେ ପୁରୁଷଙ୍କ ନାମ ବିଷ୍ଣୁ, କୃଷ୍ଣ, ହୃଷୀକେଶ, ବାସୁଦେବ ଏବଂ ଜନାର୍ଦ୍ଦନ ହେଲା ତଥା ସ୍ତ୍ରୀ ଉମା, ଗୌରୀ, ସତୀ, ଚଣ୍ଡୀ, ସୁନ୍ଦରୀ, ସୁଭଗା ଓ ଶିବା ଇତ୍ୟାଦି ନାମରେ ପ୍ରସିଦ୍ଧ ହେଲେ ॥ ୨୪ ॥ ଏହି ପ୍ରକାର ତିନୋଟି ଯୁବତୀ ତତ୍କାଳ ପୁରୁଷ ରୂପକୁ ପ୍ରାପ୍ତ ହେଲେ । ଏହି କଥାକୁ ଜ୍ଞାନନେତ୍ରଯୁକ୍ତ ଲୋକମାନେ କେବଳ ବୁଝିପାରନ୍ତି । ଅନ୍ୟ ଅଜ୍ଞାନୀଜନ ଏହି ରହସ୍ୟକୁ ଜାଣିପାରନ୍ତି ନାହିଁ ॥ ୨୫ ॥ ହେ ରାଜନ୍ ! ମହାଲକ୍ଷ୍ମୀ ତ୍ରୟୀବିଦ୍ୟାରୂପା ସରସ୍ୱତୀଙ୍କୁ ବ୍ରହ୍ମାଙ୍କପାଇଁ ପତ୍ନୀରୂପରେ ସମର୍ପିତ କଲେ; ରୁଦ୍ରଙ୍କୁ ବରଦାୟିନୀ ଗୌରୀ ତଥା ଭଗବାନ୍ ବାସୁଦେବଙ୍କୁ ଲକ୍ଷ୍ମୀ ପ୍ରଦାନ କଲେ ॥ ୨୬ ॥ ଏହିପ୍ରକାର ସରସ୍ୱତୀଙ୍କ ସହିତ ସଂଯୁକ୍ତ ହୋଇ ବ୍ରହ୍ମା ବ୍ରହ୍ମାଣ୍ଡକୁ ଉତ୍ପନ୍ନ କଲେ ଏବଂ ପରମ ପରାକ୍ରମୀ ଭଗବାନ୍ ରୁଦ୍ର ଗୌରୀଙ୍କ ସହ ମିଶି ତାହାକୁ ଭେଦ କଲେ ॥ ୨୭ ॥ ହେ ରାଜନ୍ ! ସେହି ବ୍ରହ୍ମାଣ୍ଡରେ ପ୍ରଧାନ (ମହତ୍ତତ୍ତ୍ୱ) ଆଦି କାର୍ଯ୍ୟସମୂହ ଅର୍ଥାତ୍ ପଞ୍ଚମହାଭୂତାତ୍ମକ ସମସ୍ତ ସ୍ଥାବର-ଜଙ୍ଗମରୂପକ ଜଗତ୍‌ର ଉତ୍ପତ୍ତି ହେଲା ॥ ୨୮ ॥ ପୁନଶ୍ଚ ଲକ୍ଷ୍ମୀଙ୍କ ସହ ଭଗବାନ୍ ବିଷ୍ଣୁ ସେହି ଜଗତ୍‌ର ପାଳନ-ପୋଷଣ କଲେ ଏବଂ ପ୍ରଳୟକାଳରେ ଗୌରୀଙ୍କ ସହିତ ମହେଶ୍ୱର ସେହି ସମଗ୍ର ସଂସାରକୁ ସଂହାର କଲେ ॥ ୨୯ ॥

**ମହାଲକ୍ଷ୍ମୀର୍ମହାରାଜ ସର୍ବସତ୍ତ୍ୱମୟୀଶ୍ୱରୀ ।**
**ନିରାକାରା ଚ ସାକାରା ସୈବ ନାନାଭିଧାନଭୃତ୍ ॥ ୩୦ ॥**
**ନାମାନ୍ତରୈର୍ନିରୂପ୍ୟୈଷା ନାମ୍ନା ନାନ୍ୟେନ କେନଚିତ୍ ॥ ଓଁ ॥ ୩୧ ॥**

॥ ଇତି ପ୍ରାଧାନିକଂ* ରହସ୍ୟଂ ସମ୍ପୂର୍ଣ୍ଣମ୍ ॥



ହେ ମହାରାଜ ! ମହାଲକ୍ଷ୍ମୀ ହିଁ ସର୍ବସତ୍ତ୍ୱମୟୀ ତଥା ସବୁ ସତ୍ତ୍ୱର ଅଧୀଶ୍ୱରୀ ଅଟନ୍ତି । ସେ ନିରାକାର ଓ ସାକାରରୂପରେ ରହି ନାନାପ୍ରକାରର ନାମ ଧାରଣ କରନ୍ତି ॥ ୩୦ ॥ ସଗୁଣବାଚକ ସତ୍ୟ, ଜ୍ଞାନ, ଚିତ୍, ମହାମାୟା ଆଦି ନାମାନ୍ତରଦ୍ୱାରା ଏହି ମହାଲକ୍ଷ୍ମୀଙ୍କୁ ନିରୂପଣ କରିବା ଉଚିତ । କେବଳ ଗୋଟିଏ ନାମ (ମହାଲକ୍ଷ୍ମୀମାତ୍ର) ଦ୍ୱାରା ଅଥବା ଅନ୍ୟ ପ୍ରତ୍ୟକ୍ଷ ଆଦି ପ୍ରମାଣଦ୍ୱାରା ତାଙ୍କର ବର୍ଣ୍ଣନା କରାଯାଇ ପାରେ ନାହିଁ ॥ ୩୧ ॥



* ପ୍ରଥମ ରହସ୍ୟରେ ପରାଶକ୍ତି ମହାଲକ୍ଷ୍ମୀଙ୍କ ସ୍ୱରୂପ ପ୍ରତିପାଦନ କରାଯାଇଛି । ମହାଲକ୍ଷ୍ମୀ ହିଁ ଦେବୀଙ୍କ ସମସ୍ତ ବିକୃତି(ଅବତାର)ର ପ୍ରଧାନ ପ୍ରକୃତି ଅଟନ୍ତି । ଅତଏବ ଏହି ପ୍ରକରଣକୁ ପ୍ରାକୃତିକ ବା ପ୍ରାଧାନିକ ରହସ୍ୟ କହନ୍ତି । ଏହା ଅନୁସାରେ ମହାଲକ୍ଷ୍ମୀ ହିଁ ସମସ୍ତ ପ୍ରପଞ୍ଚ ତଥା ସମସ୍ତ ଅବତାରର ଆଦି କାରଣ ଅଟନ୍ତି । ତିନୋଟି ଗୁଣର ସାମ୍ୟାବସ୍ଥାରୂପା ପ୍ରକୃତି ମଧ୍ୟ ତାଙ୍କଠାରୁ ଭିନ୍ନ ନୁହେଁ । ସ୍ଥୂଳ-ସୂକ୍ଷ୍ମ, ଦୃଶ୍ୟ-ଅଦୃଶ୍ୟ ଅଥବା ବ୍ୟକ୍ତ-ଅବ୍ୟକ୍ତ ସବୁ ତାଙ୍କରି ସ୍ୱରୂପ । ସେ ସର୍ବତ୍ର ବ୍ୟାପକ ଅଟନ୍ତି । ଅସ୍ତି, ଭାତି, ପ୍ରିୟ, ନାମ ଓ ରୂପ—ଏ ସବୁ ସେ ହିଁ ଅଟନ୍ତି । ସେହି ସଚ୍ଚିଦାନନ୍ଦମୟୀ ପରମେଶ୍ୱରୀ ସୂକ୍ଷ୍ମରୂପରେ ସର୍ବତ୍ର ବ୍ୟାପ୍ତ ହୋଇ ମଧ୍ୟ ଭକ୍ତମାନଙ୍କ ଉପରେ ଅନୁଗ୍ରହ କରିବା ପାଇଁ ପରମ ଦିବ୍ୟ ଚିନ୍ମୟ ସଗୁଣରୂପରେ ସର୍ବଦା ବିରାଜମାନ ରହନ୍ତି । ତାଙ୍କର ସେହି ଶ୍ରୀବିଗ୍ରହର କାନ୍ତି ତପ୍ତ ସୁବର୍ଣ୍ଣ ସଦୃଶ ଅଟେ । ସେ ନିଜ ଚାରୋଟି ହସ୍ତରେ ମାତୁଲୁଙ୍ଗ, ଗଦା, ଖେଟ (ଢାଲ) ଏବଂ ପାନପାତ୍ର ଧାରଣ କରନ୍ତି ତଥା ମସ୍ତକରେ ନାଗ, ଲିଙ୍ଗ ଏବଂ ଯୋନି ଧାରଣ କରି ରହନ୍ତି । ଭୁବନେଶ୍ୱରୀ-ସଂହିତା ଅନୁସାରେ ମାତୁଲୁଙ୍ଗ କର୍ମରାଶିର, ଗଦା କ୍ରିୟାଶକ୍ତିର ଏବଂ ଖେଟ ଜ୍ଞାନଶକ୍ତିର ଏବଂ ପାନପାତ୍ର ତୁରୀୟ ବୃତ୍ତି (ନିଜ ସଚ୍ଚିଦାନନ୍ଦମୟ ସ୍ୱରୂପରେ ସ୍ଥିତି)ର ସୂଚକ ଅଟେ । ଏହି ପ୍ରକାର ନାଗଦ୍ୱାରା କାଳର, ଯୋନିଦ୍ୱାରା ପ୍ରକୃତିର ଏବଂ ଲିଙ୍ଗଦ୍ୱାରା ପୁରୁଷର ଗ୍ରହଣ ହୁଏ । ତାତ୍ପର୍ଯ୍ୟ ଏହି ଯେ ପ୍ରକୃତି, ପୁରୁଷ ଓ କାଳ—ଏହି ତିନୋଟିର ଅଧିଷ୍ଠାନ ପରମେଶ୍ୱରୀ ମହାଲକ୍ଷ୍ମୀ ହିଁ ଅଟନ୍ତି । ଉକ୍ତ ଚତୁର୍ଭୁଜା ମହାଲକ୍ଷ୍ମୀଙ୍କ କେଉଁ ହସ୍ତରେ କେଉଁ ଆୟୁଧ ଅଛି; ଏହି ବିଷୟରେ ମଧ୍ୟ ମତଭେଦ ରହିଛି ।

# ଅଥ ବୈକୃତିକଂ ରହସ୍ୟମ୍

*ଋଷିରୁବାଚ*

**ଓଁ ତ୍ରିଗୁଣା ତାମସୀ ଦେବୀ ସାତ୍ତ୍ୱିକୀ ଯା ତ୍ରିଧୋଦିତା ।**
**ସା ଶର୍ବା ଚଣ୍ଡିକା ଦୁର୍ଗା ଭଦ୍ରା ଭଗବତୀର୍ଯ୍ୟତେ ॥ ୧ ॥**
**ଯୋଗନିଦ୍ରା ହରେରୁକ୍ତା ମହାକାଳୀ ତମୋଗୁଣା ।**
**ମଧୁକୈଟଭନାଶାର୍ଥଂ ଯାଂ ତୁଷ୍ଟାବାମ୍ବୁଜାସନଃ ॥ ୨ ॥**

**ଋଷି କହିଲେ**—ହେ ରାଜନ୍ ! ପ୍ରଥମେ ଯେଉଁ ସତ୍ତ୍ୱପ୍ରଧାନା ତ୍ରିଗୁଣମୟୀ ମହାଲକ୍ଷ୍ମୀଙ୍କର ତାମସୀ ଆଦି ଭେଦରେ ତିନୋଟି ସ୍ୱରୂପ ବିଷୟରେ କୁହାଯାଇଛି; ସେମାନଙ୍କୁ ଶର୍ବା, ଚଣ୍ଡିକା, ଦୁର୍ଗା, ଭଦ୍ରା ଏବଂ ଭଗବତୀ ଆଦି ଅନେକ ନାମରେ କୁହାଯାଏ ॥ ୧ ॥ ତମୋଗୁଣମୟୀ ମହାକାଳୀ ଭଗବାନ୍ ବିଷ୍ଣୁଙ୍କ ଯୋଗନିଦ୍ରା ବୋଲି କୁହାଯାଇଛି । ମଧୁ ଏବଂ କୈଟଭଙ୍କୁ ବିନାଶ କରିବା ପାଇଁ ବ୍ରହ୍ମା ଯାହାଙ୍କୁ ସ୍ତୁତି କରିଥିଲେ; ତାଙ୍କର ନାମ ମହାକାଳୀ ଅଟେ ॥ ୨ ॥

ରେଣୁକା-ମାହାତ୍ମ୍ୟରେ କୁହାଯାଇଛି ଯେ ଦକ୍ଷିଣ ପାର୍ଶ୍ୱର ତଳ ହସ୍ତରେ ପାନପାତ୍ର ଓ ଉପର ହସ୍ତରେ ଗଦା ଅଛି । ବାମ ପାର୍ଶ୍ୱର ଉପର ହସ୍ତରେ ଖେଟ ତଥା ତଳ ହସ୍ତରେ ଶ୍ରୀଫଳ ରହିଛି । ପରନ୍ତୁ ବୈକୃତିକ ରହସ୍ୟରେ 'ଦକ୍ଷିଣାଧଃକରକ୍ରମାତ୍' କହି ଯେଉଁ କ୍ରମ ଦର୍ଶାଯାଇଛି; ତାହା ଅନୁସାରେ ଦକ୍ଷିଣ ପାର୍ଶ୍ୱର ନିମ୍ନ ହସ୍ତରେ ମାତୁଲୁଙ୍ଗ, ଉପର ହସ୍ତରେ ଗଦା, ବାମ ପାର୍ଶ୍ୱର ଉପର ହସ୍ତରେ ଖେଟ ତଥା ନିମ୍ନ ହସ୍ତରେ ପାନପାତ୍ର ଅଛି । ଚତୁର୍ଭୁଜା ମହାଲକ୍ଷ୍ମୀ କ୍ରମଶଃ ତମୋଗୁଣ ଏବଂ ସତ୍ତ୍ୱଗୁଣରୂପ ଉପାଧିଦ୍ୱାରା ନିଜର ଆଉ ଦୁଇଟି ରୂପ ପ୍ରକଟ କଲେ; ଯେଉଁମାନେ କ୍ରମଶଃ ମହାକାଳୀ ଓ ମହାସରସ୍ୱତୀଙ୍କ ନାମରେ ପ୍ରସିଦ୍ଧ ହେଲେ । ଏ ଦୁହେଁ ସପ୍ତଶତୀର ପ୍ରଥମ ଚରିତ୍ର ଏବଂ ଉତ୍ତର ଚରିତ୍ରରେ ବର୍ଣ୍ଣିତ ମହାକାଳୀ ଓ ମହାସରସ୍ୱତୀଙ୍କ ଠାରୁ ଭିନ୍ନ ଅଟନ୍ତି; କାରଣ ଏ ଦୁହେଁ ହିଁ ଚତୁର୍ଭୁଜା ଏବଂ ଉକ୍ତ ଚରିତ୍ରରେ ବର୍ଣ୍ଣିତ ମହାକାଳୀଙ୍କ ଦଶଟି ତଥା ମହାସରସ୍ୱତୀଙ୍କର ଆଠଟି ଭୁଜ ଅଛି । ଚତୁର୍ଭୁଜା ମହାକାଳୀଙ୍କ ହସ୍ତରେ ଖଡ୍‌ଗ, ପାନପାତ୍ର, ମସ୍ତକ ଏବଂ ଢାଲ ଅଛି; ଏମାନଙ୍କ କ୍ରମ ମଧ୍ୟ ପୂର୍ବବତ୍ ଅଟେ । ଚତୁର୍ଭୁଜା ସରସ୍ୱତୀଙ୍କ ହସ୍ତରେ ଅକ୍ଷମାଳା, ଅଙ୍କୁଶ, ବୀଣା ତଥା ପୁସ୍ତକ ଶୋଭା ପାଉଛି । ଏମାନଙ୍କର ମଧ୍ୟ ପୂର୍ବପରି କ୍ରମ ରହିଛି । ପୁନଶ୍ଚ ଏହି ତିନିଦେବୀ ସ୍ତ୍ରୀ-ପୁରୁଷଙ୍କ ଗୋଟିଏ ଲେଖାଏଁ ଯୁଗଳ ଉତ୍ପନ୍ନ କଲେ । ମହାକାଳୀଙ୍କଦ୍ୱାରା ଶଙ୍କର ଏବଂ ସରସ୍ୱତୀ, ମହାଲକ୍ଷ୍ମୀଙ୍କଦ୍ୱାରା ବ୍ରହ୍ମା ଓ ଲକ୍ଷ୍ମୀ ତଥା ମହାସରସ୍ୱତୀଙ୍କ ଦ୍ୱାରା ବିଷ୍ଣୁ ଓ ଗୌରୀ ଉତ୍ପନ୍ନ ହେଲେ । ଏମାନଙ୍କମଧ୍ୟରେ ଲକ୍ଷ୍ମୀ ବିଷ୍ଣୁଙ୍କୁ, ଗୌରୀ ଶଙ୍କରଙ୍କୁ ତଥା ସରସ୍ୱତୀ

ଦଶବକ୍ତ୍ରା ଦଶଭୁଜା ଦଶପାଦାଞ୍ଜନପ୍ରଭା ।
ବିଶାଳୟା ରାଜମାନା ତ୍ରିଂଶଲ୍ଲୋଚନମାଳୟା ॥ ୩ ॥
ସ୍ଫୁରଦ୍ଦଶନଦଂଷ୍ଟ୍ରା ସା ଭୀମରୂପାପି ଭୂମିପ ।
ରୂପସୌଭାଗ୍ୟକାନ୍ତୀନାଂ ସା ପ୍ରତିଷ୍ଠା ମହାଶ୍ରିୟଃ ॥ ୪ ॥
ଖଡ୍‌ଗବାଣଗଦାଶୂଳଚକ୍ରଶଙ୍ଖଭୁଶୁଣ୍ଡିଭୃତ୍ ।
ପରିଘଂ କାର୍ମୁକଂ ଶୀର୍ଷଂ ନିଶ୍ଚ୍ୟୋତଦ୍‌ରୁଧିରଂ ଦଧୌ ॥ ୫ ॥
ଏଷା ସା ବୈଷ୍ଣବୀ ମାୟା ମହାକାଳୀ ଦୁରତ୍ୟୟା ।
ଆରାଧିତା ବଶୀକୁର୍ଯ୍ୟାତ୍ ପୂଜାକର୍ତ୍ତୁଶ୍ଚରାଚରମ୍ ॥ ୬ ॥

---

ତାଙ୍କର ଦଶଟି ମୁଖ, ଦଶଟି ଭୁଜ ଏବଂ ଦଶଟି ପାଦ ରହିଛି । ସେ କଜ୍ୱଳ ସମାନ କୃଷ୍ଣ ରଙ୍ଗର ଅଟନ୍ତି ତଥା ତିରିଶଟି ନେତ୍ରର ବିଶାଳ ପଂକ୍ତିଦ୍ୱାରା ସୁଶୋଭିତା ହୁଅନ୍ତି ॥ ୩ ॥ ହେ ଭୂପାଳ ! ତାଙ୍କର ଦାନ୍ତ ଓ ଚିବୁକ ଚକ୍‌ମକ୍ କରୁଥାଏ । ଯଦ୍ୟପି ତାଙ୍କର ରୂପ ଭୟଙ୍କର; ତଥାପି ସେ ରୂପ, ସୌଭାଗ୍ୟ, କାନ୍ତି ଏବଂ ମହାନ୍ ସଂପଦର ଅଧିଷ୍ଠାନ (ପ୍ରାପ୍ତିସ୍ଥାନ) ଅଟନ୍ତି ॥ ୪ ॥ ସେ ନିଜ ହସ୍ତରେ ଖଡ୍‌ଗ, ବାଣ, ଗଦା, ଶୂଳ, ଚକ୍ର, ଶଙ୍ଖ, ଭୁଶୁଣ୍ଡି, ପରିଘ, ଧନୁ ତଥା ରକ୍ତ ନିର୍ଗତ ହେଉଥିବା ଛିନ୍ନମସ୍ତକ ଧାରଣ କରନ୍ତି ॥ ୫ ॥

ଏହି ମହାକାଳୀ ଭଗବାନ୍ ବିଷ୍ଣୁଙ୍କ ଅନତିକ୍ରମ୍ୟ ମାୟା ଅଟନ୍ତି । ଆରାଧନା କଲେ ଏହି ଚରାଚର ଜଗତ୍‌କୁ ନିଜ ଉପାସକଙ୍କ ଅଧୀନ କରିଦିଅନ୍ତି ॥ ୬ ॥

---

ବ୍ରହ୍ମାଙ୍କୁ ପ୍ରାପ୍ତ ହେଲେ । ପତ୍ନୀ ସହ ବ୍ରହ୍ମା ସୃଷ୍ଟି, ବିଷ୍ଣୁ ପାଳନ ଏବଂ ରୁଦ୍ର ସଂହାରକାର୍ଯ୍ୟ ନିଷ୍ପାଦନ କଲେ । ଏହି ଅବତାରମାନଙ୍କର କ୍ରମ ଏହିପ୍ରକାର ଅଟେ ।



ସର୍ବଦେବଶରୀରେଭ୍ୟୋ ଯାଽଽବିର୍ଭୂତାମିତପ୍ରଭା ।
ତ୍ରିଗୁଣା ସା ମହାଲକ୍ଷ୍ମୀଃ ସାକ୍ଷାନ୍ମହିଷମର୍ଦ୍ଦିନୀ ॥ ୭ ॥
ଶ୍ୱେତାନନା ନୀଲଭୁଜା ସୁଶ୍ୱେତସ୍ତନମଣ୍ଡଲା ।
ରକ୍ତମଧ୍ୟା ରକ୍ତପାଦା ନୀଳଜଙ୍ଘୋରୁରୁନ୍ମଦା ॥ ୮ ॥
ସୁଚିତ୍ରଜଘନା ଚିତ୍ରମାଲ୍ୟାମ୍ବରବିଭୂଷଣା ।
ଚିତ୍ରାନୁଲେପନା କାନ୍ତିରୂପସୌଭାଗ୍ୟଶାଳିନୀ ॥ ୯ ॥
ଅଷ୍ଟାଦଶଭୁଜା ପୂଜ୍ୟା ସା ସହସ୍ରଭୁଜା ସତୀ ।
ଆୟୁଧାନ୍ୟତ୍ର ବକ୍ଷ୍ୟନ୍ତେ ଦକ୍ଷିଣାଧଃକରକ୍ରମାତ୍ ॥ ୧୦ ॥
ଅକ୍ଷମାଲା ଚ କମଲଂ ବାଣୋଽସିଃ କୁଲିଶଂ ଗଦା ।
ଚକ୍ରଂ ତ୍ରିଶୂଳଂ ପରଶୁଃ ଶଙ୍ଖୋ ଘଣ୍ଟା ଚ ପାଶକଃ ॥ ୧୧ ॥
ଶକ୍ତିର୍ଦ୍ଦଣ୍ଡଶ୍ଚର୍ମ ଚାପଂ ପାନପାତ୍ରଂ କମଣ୍ଡଲୁଃ ।
ଅଲଂକୃତଭୁଜାମେଭିରାୟୁଧୈଃ କମଲାସନାମ୍ ॥ ୧୨ ॥

ସମସ୍ତ ଦେବତାଙ୍କ ଅଙ୍ଗରୁ ଯାହାଙ୍କର ଆବିର୍ଭାବ ହୋଇଥିଲା; ସେ ଅନନ୍ତ କାନ୍ତିଯୁକ୍ତ ସାକ୍ଷାତ୍ ମହାଲକ୍ଷ୍ମୀ ଅଟନ୍ତି । ତାହାଙ୍କୁ ତ୍ରିଗୁଣମୟୀ ପ୍ରକୃତି କହନ୍ତି ତଥା ସେ ମହିଷାସୁରର ମର୍ଦ୍ଦନକାରିଣୀ ଅଟନ୍ତି ॥ ୭ ॥ ତାଙ୍କ ମୁଖ ଗୌର, ଭୁଜଗୁଡ଼ିକ ଶ୍ୟାମ, ସ୍ତନମଣ୍ଡଳ ଅତ୍ୟନ୍ତ ଶ୍ୱେତ, କଟିଭାଗ ଓ ଚରଣ ରକ୍ତ ତଥା ଜଙ୍ଘ ଓ ପିଣ୍ଡା ନୀଳ ରଙ୍ଗର ଅଟେ । ଅଜେୟ ହୋଇଥିବାରୁ ତାଙ୍କର ନିଜ ଶୌର୍ଯ୍ୟର ଅଭିମାନ ରହିଛି ॥ ୮ ॥ କଟିର ପୁରୋଭାଗ ବହୁରଙ୍ଗୀ ବସ୍ତ୍ରଦ୍ୱାରା ଆଚ୍ଛାଦିତ ହୋଇଥିବାରୁ ଅତ୍ୟନ୍ତ ସୁନ୍ଦର ଏବଂ ବିଚିତ୍ର ଦେଖାଯାଏ । ତାଙ୍କ ମାଳ, ବସ୍ତ୍ର, ଆଭୂଷଣ ତଥା ଅଙ୍ଗରାଗ ସବୁ ବିଚିତ୍ର । ସେ କାନ୍ତି, ରୂପ ଏବଂ ସୌଭାଗ୍ୟଦ୍ୱାରା ସୁଶୋଭିତା ଅଟନ୍ତି ॥ ୯ ॥ ଯଦ୍ୟପି ତାଙ୍କର ହଜାର ହଜାର ବାହୁ ରହିଛି; ତଥାପି ତାଙ୍କୁ ଅଷ୍ଟାଦଶ ବାହୁଯୁକ୍ତା ସ୍ୱୀକାର କରି ତାଙ୍କୁ ପୂଜା କରିବା ଉଚିତ । ବର୍ତ୍ତମାନ ତାଙ୍କ ଦକ୍ଷିଣ ପାର୍ଶ୍ୱର ନିମ୍ନ ବାହୁଠାରୁ ବାମ ପାର୍ଶ୍ୱର ନିମ୍ନ ବାହୁ ପର୍ଯ୍ୟନ୍ତ କ୍ରମଶଃ ଯେଉଁ ଅସ୍ତ୍ର ରହିଛି; ସେସବୁର ବର୍ଣ୍ଣନା କରାଯାଉଛି ॥ ୧୦ ॥ ଅକ୍ଷମାଳା, କମଳ, ବାଣ, ଖଡ୍ଗ, ବଜ୍ର, ଗଦା, ଚକ୍ର, ତ୍ରିଶୂଳ, ପରଶୁ, ଶଙ୍ଖ, ଘଣ୍ଟା, ପାଶ, ଶକ୍ତି, ଦଣ୍ଡ, ଚର୍ମ (ଢାଲ), ଧନୁ, ପାନପାତ୍ର ଏବଂ କମଣ୍ଡଳୁ—ଏହି ଆୟୁଧମାନ ଦ୍ୱାରା ତାଙ୍କର ବାହୁସବୁ ବିଭୂଷିତ ହୋଇଛି ।

ସର୍ବଦେବମୟୀମୀଶାଂ ମହାଲକ୍ଷ୍ମୀମିମାଂ ନୃପ ।
ପୂଜୟେତ୍‌ସର୍ବଲୋକାନାଂ ସ ଦେବାନାଂ ପ୍ରଭୁର୍ଭବେତ୍ ॥ ୧୩ ॥
ଗୌରୀଦେହାତ୍‌ସମୁଦ୍ଭୂତା ଯା ସତ୍ତ୍ୱୈକଗୁଣାଶ୍ରୟା ।
ସାକ୍ଷାତ୍‌ସରସ୍ୱତୀ ପ୍ରୋକ୍ତା ଶୁମ୍ଭାସୁରନିବର୍ହିଣୀ ॥ ୧୪ ॥
ଦଧୌ ଗ୍ଷ୍ଟଭୁଜା ବାଣମୁସଲେ ଶୂଳଚକ୍ରଭୃତ୍ ।
ଶଙ୍ଖଂ ଘଣ୍ଟାଂ ଲାଙ୍ଗଲଂ ଚ କାର୍ମୁକଂ ବସୁଧାଧିପ ॥ ୧୫ ॥
ଏଷା ସମ୍ପୂଜିତା ଭକ୍ତ୍ୟା ସର୍ବଜ୍ଞତ୍ୱଂ ପ୍ରଯଚ୍ଛତି ।
ନିଶୁମ୍ଭମଥିନୀ ଦେବୀ ଶୁମ୍ଭାସୁରନିବର୍ହିଣୀ ॥ ୧୬ ॥
ଇତ୍ୟୁକ୍ତାନି ସ୍ୱରୂପାଣି ମୂର୍ତ୍ତୀନାଂ ତବ ପାର୍ଥିବ ।
ଉପାସନଂ ଜଗନ୍ମାତୁଃ ପୃଥଗାସାଂ ନିଶାମୟ ॥ ୧୭ ॥
ମହାଲକ୍ଷ୍ମୀର୍ଯଦା ପୂଜ୍ୟା ମହାକାଳୀ ସରସ୍ୱତୀ ।
ଦକ୍ଷିଣୋତ୍ତରୟୋଃ ପୂଜ୍ୟେ ପୃଷ୍ଠତୋ ମିଥୁନତ୍ରୟମ୍ ॥ ୧୮ ॥

---

ସେ କମଳ ଆସନରେ ବିରାଜମାନ କରିଛନ୍ତି । ସେ ସର୍ବଦେବମୟୀ ଓ ସମସ୍ତଙ୍କର ଈଶ୍ୱରୀ ଅଟନ୍ତି । ହେ ରାଜନ୍ ! ଯିଏ ଏହି ମହାଲକ୍ଷ୍ମୀ ଦେବୀଙ୍କୁ ପୂଜା କରନ୍ତି; ସେ ସକଳ ସଂସାର ତଥା ଦେବତାମାନଙ୍କ ସ୍ୱାମୀ ହୁଅନ୍ତି ॥ ୧୧—୧୩ ॥

ଯିଏ ଏକମାତ୍ର ସତ୍ତ୍ୱଗୁଣର ଆଶ୍ରିତ ହୋଇ ପାର୍ବତୀଙ୍କ ଶରୀରରୁ ପ୍ରକଟ ହୋଇଥିଲେ ତଥା ଯିଏ ଶୁମ୍ଭ ନାମକ ଦୈତ୍ୟକୁ ସଂହାର କରିଥିଲେ; ସେ ସାକ୍ଷାତ୍ ସରସ୍ୱତୀ ବୋଲି କୁହାଯାଇଛି ॥ ୧୪ ॥ ହେ ପୃଥିବୀପତି ! ତାଙ୍କର ଆଠଟି ବାହୁ ରହିଛି ତଥା ସେ ନିଜ ହସ୍ତରେ କ୍ରମଶଃ ଶର, ମୁସଳ, ଶୂଳ, ଚକ୍ର, ଶଙ୍ଖ, ଘଣ୍ଟା, ହଳ ଏବଂ ଧନୁ ଧାରଣ କରନ୍ତି ॥ ୧୫ ॥ ଏହି ଶୁମ୍ଭାସୁରର ସଂହାରକର୍ତ୍ତ୍ରୀ, ନିଶୁମ୍ଭର ମର୍ଦ୍ଦନକାରିଣୀ ସରସ୍ୱତୀ ଦେବୀଙ୍କୁ ଭକ୍ତିପୂର୍ବକ ପୂଜା କଲେ ସେ ସର୍ବଜ୍ଞତା ପ୍ରଦାନ କରନ୍ତି ॥ ୧୬ ॥

ହେ ରାଜନ୍ ! ଏହିପ୍ରକାର ତୁମକୁ ମହାକାଳୀ ଆଦି ତିନୋଟି ମୂର୍ତ୍ତିର ସ୍ୱରୂପ ବିଷୟ କହିଲି । ବର୍ତ୍ତମାନ ଜଗଦମ୍ବା ମହାଲକ୍ଷ୍ମୀଙ୍କ ତଥା ଏହି ମହାକାଳୀ ଆଦି ତିନୋଟି ମୂର୍ତ୍ତିର ପୃଥକ୍ ପୃଥକ୍ ଉପାସନା ବିଷୟରେ ଶ୍ରବଣ କର ॥ ୧୭ ॥ ଯେତେବେଳେ ମହାଲକ୍ଷ୍ମୀଙ୍କ ପୂଜା କରାଯାଏ; ସେତେବେଳେ ତାଙ୍କୁ ମଧ୍ୟ-ଭାଗରେ ସ୍ଥାପନ କରି ତାଙ୍କର ଦକ୍ଷିଣ ଏବଂ ବାମ ଭାଗରେ କ୍ରମଶଃ ମହାକାଳୀ

ବିରଞ୍ଚିଃ ସ୍ୱରୟା ମଧ୍ୟେ ରୁଦ୍ରୋ ଗୌର୍ଯ୍ୟା ଚ ଦକ୍ଷିଣେ ।
ବାମେ ଲକ୍ଷ୍ମ୍ୟା ହୃଷୀକେଶଃ ପୁରତୋ ଦେବତାତ୍ରୟମ୍ ॥ ୧୯ ॥
ଅଷ୍ଟାଦଶଭୁଜା ମଧ୍ୟେ ବାମେ ଚାସ୍ୟା ଦଶାନନା ।
ଦକ୍ଷିଣେଽଷ୍ଟଭୁଜା ଲକ୍ଷ୍ମୀର୍ମହତୀତି ସମର୍ଚ୍ଚୟେତ୍ ॥ ୨୦ ॥
ଅଷ୍ଟାଦଶଭୁଜା ଚୈଷା ଯଦା ପୂଜ୍ୟା ନରାଧିପ ।
ଦଶାନନା ଚାଷ୍ଟଭୁଜା ଦକ୍ଷିଣୋତ୍ତରୟୋସ୍ତଦା ॥ ୨୧ ॥
କାଲମୃତ୍ୟୁ ଚ ସମ୍ପୂଜ୍ୟୌ ସର୍ବାରିଷ୍ଟପ୍ରଶାନ୍ତୟେ ।
ଯଦା ଚାଷ୍ଟଭୁଜା ପୂଜ୍ୟା ଶୁମ୍ଭାସୁରନିବର୍ହିଣୀ ॥ ୨୨ ॥
ନବାସ୍ୟାଃ ଶକ୍ତୟଃ ପୂଜ୍ୟାସ୍ତଦା ରୁଦ୍ରବିନାୟକୌ ।
ନମୋ ଦେବ୍ୟା ଇତି ସ୍ତୋତ୍ରୈର୍ମହାଲକ୍ଷ୍ମୀଂ ସମର୍ଚ୍ଚୟେତ୍ ॥ ୨୩ ॥

---

ଏବଂ ମହାସରସ୍ୱତୀଙ୍କୁ ପୂଜା କରିବା ଉଚିତ ଏବଂ ପୃଷ୍ଠଭାଗରେ ତିନିଟି ଯୁଗଳ ଦେବତାଙ୍କୁ ପୂଜା କରିବା ଉଚିତ ॥ ୧୮ ॥ ମହାଲକ୍ଷ୍ମୀଙ୍କ ଠିକ୍ ପଶ୍ଚାଦ୍ ପଟେ ମଧ୍ୟଭାଗରେ ସରସ୍ୱତୀଙ୍କ ସହିତ ବ୍ରହ୍ମାଙ୍କୁ ପୂଜା କରିବା ଉଚିତ। ତାଙ୍କର ଦକ୍ଷିଣ ଭାଗରେ ଗୌରୀଙ୍କ ସହ ରୁଦ୍ରଙ୍କୁ ପୂଜା କରିବା ଉଚିତ ତଥା ବାମ ଭାଗରେ ଲକ୍ଷ୍ମୀଙ୍କ ସହିତ ବିଷ୍ଣୁଙ୍କୁ ପୂଜା କରିବା ଉଚିତ। ମହାଲକ୍ଷ୍ମୀ ଆଦି ତିନି ଦେବୀଙ୍କ ସମ୍ମୁଖରେ ନିମ୍ନଲିଖିତ ତିନି ଦେବୀଙ୍କୁ ମଧ୍ୟ ପୂଜା କରିବା ଉଚିତ ॥ ୧୯ ॥ ମଧ୍ୟସ୍ଥ ମହାଲକ୍ଷ୍ମୀଙ୍କ ସମ୍ମୁଖସ୍ଥ ମଧ୍ୟଭାଗରେ ଅଷ୍ଟାଦଶ ଭୁଜଯୁକ୍ତା ମହାଲକ୍ଷ୍ମୀଙ୍କୁ ପୂଜା କରିବା ବିଧେୟ। ତାଙ୍କର ବାମଭାଗରେ ଦଶମୁଖୀଯୁକ୍ତା ମହାକାଳୀ ତଥା ଦକ୍ଷିଣଭାଗରେ ଅଷ୍ଟବାହୁଯୁକ୍ତା ମହାସରସ୍ୱତୀଙ୍କୁ ପୂଜା କରିବା ଉଚିତ ॥ ୨୦ ॥ ହେ ରାଜନ୍ ! ଯେତେବେଳେ କେବଳ ଅଷ୍ଟାଦଶ ଭୁଜଯୁକ୍ତା ମହାଲକ୍ଷ୍ମୀଙ୍କୁ ଅଥବା ଦଶମୁଖୀ କାଳୀଙ୍କୁ ବା ଅଷ୍ଟଭୁଜା ସରସ୍ୱତୀଙ୍କୁ ପୂଜା କରିବାର ଥିବ; ସେତେବେଳେ ସମସ୍ତ ବିପଦକୁ ଶାନ୍ତ କରିବା ନିମନ୍ତେ ତାଙ୍କ ଦକ୍ଷିଣଭାଗରେ କାଳ ଓ ବାମ ଭାଗରେ ମୃତ୍ୟୁକୁ ଭଲଭାବରେ ପୂଜା କରିବା ଉଚିତ। ଯେତେବେଳେ ଶୁମ୍ଭାସୁରକୁ ସଂହାର କରିଥିବା ଅଷ୍ଟଭୁଜା ଦେବୀଙ୍କୁ ପୂଜା କରିବାର ଥିବ; ସେତେବେଳେ ତାଙ୍କ ସହ ନଅଟି ଶକ୍ତିଙ୍କୁ ଏବଂ ଦକ୍ଷିଣଭାଗରେ ରୁଦ୍ର ତଥା ବାମଭାଗରେ ଗଣେଶଙ୍କୁ ମଧ୍ୟ ପୂଜା କରିବା ଉଚିତ। (ବ୍ରାହ୍ମୀ, ମାହେଶ୍ୱରୀ, କୌମାରୀ, ବୈଷ୍ଣବୀ, ବାରାହୀ, ନାରସିଂହୀ, ଐନ୍ଦ୍ରୀ, ଶିବଦୂତୀ ତଥା ଚାମୁଣ୍ଡା—ଏମାନେ ନବଶକ୍ତି ଅଟନ୍ତି।)

ଅବତାରତ୍ରୟାର୍ଚ୍ଚାୟାଂ ସ୍ତୋତ୍ରମନ୍ତ୍ରାସ୍ତଦାଶ୍ରୟାଃ ।
ଅଷ୍ଟାଦଶଭୁଜା ଚୈଷା ପୂଜ୍ୟା ମହିଷମର୍ଦ୍ଦିନୀ ॥ ୨୪ ॥
ମହାଲକ୍ଷ୍ମୀର୍ମହାକାଳୀ ସୈବ ପ୍ରୋକ୍ତା ସରସ୍ୱତୀ ।
ଈଶ୍ୱରୀ ପୁଣ୍ୟପାପାନାଂ ସର୍ବଲୋକମହେଶ୍ୱରୀ ॥ ୨୫ ॥
ମହିଷାନ୍ତକରୀ ଯେନ ପୂଜିତା ସ ଜଗତ୍ପ୍ରଭୁଃ ।
ପୂଜୟେଜ୍ଜଗତାଂ ଧାତ୍ରୀଂ ଚଣ୍ଡିକାଂ ଭକ୍ତବତ୍ସଳାମ୍ ॥ ୨୬ ॥
ଅର୍ଘ୍ୟାଦିଭିରଲଂକାରୈର୍ଗନ୍ଧପୁଷ୍ପୈସ୍ତଥାକ୍ଷତୈଃ ।
ଧୂପୈର୍ଦ୍ଦୀପୈଶ୍ଚ ନୈବେଦ୍ୟୈର୍ନାନାଭକ୍ଷ୍ୟସମନ୍ୱିତୈଃ ॥ ୨୭ ॥
ରୁଧିରାକ୍ତେନ ବଳିନା ମାଂସେନ ସୁରୟା ନୃପ ।
(ବଳିମାଂସାଦିପୂଜେୟଂ ବିପ୍ରବର୍ଜ୍ୟା ମୟେରିତା ॥

'ନମୋ ଦେବ୍ୟୈ..........' ଏହି ସ୍ତୋତ୍ରଦ୍ୱାରା ମହାଲକ୍ଷ୍ମୀଙ୍କୁ ପୂଜା କରିବା ଉଚିତ ॥ ୨୧—୨୩ ॥ ତଥା ତାଙ୍କର ତିନୋଟି ଅବତାରର ପୂଜା ସମୟରେ ସେମାନଙ୍କ ଚରିତ୍ରରେ ଯେଉଁ ସ୍ତୋତ୍ର ଏବଂ ମନ୍ତ୍ର ରହିଛି; ସେସବୁକୁ ଉପଯୋଗ କରିବା ଉଚିତ । ଅଷ୍ଟାଦଶ ଭୁଜଯୁକ୍ତା ମହିଷାସୁରମର୍ଦ୍ଦିନୀ ମହାଲକ୍ଷ୍ମୀ ହିଁ ବିଶେଷରୂପରେ ପୂଜନୀୟା ଅଟନ୍ତି; କାରଣ ତାଙ୍କୁ ମହାଲକ୍ଷ୍ମୀ, ମହାକାଳୀ ତଥା ମହାସରସ୍ୱତୀ ବୋଲି କୁହାଯାଏ । ସେ ହିଁ ପାପପୁଣ୍ୟର ଅଧୀଶ୍ୱରୀ ତଥା ସାରା ସଂସାରର ମହେଶ୍ୱରୀ ଅଟନ୍ତି ॥ ୨୪-୨୫ ॥ ଯିଏ ମହିଷାସୁରକୁ ଅନ୍ତ କରିଥିବା ମହାଲକ୍ଷ୍ମୀଙ୍କୁ ଭକ୍ତିପୂର୍ବକ ଆରାଧନା କରିଛି; ସେ ହିଁ ସଂସାରର ସ୍ୱାମୀ ଅଟନ୍ତି । ତେଣୁ ଜଗତ୍‌କୁ ଧାରଣ କରିଥିବା ଭକ୍ତବତ୍ସଳା ଭଗବତୀ ଚଣ୍ଡିକାଙ୍କୁ ନିଶ୍ଚିତଭାବରେ ପୂଜା କରିବା ଉଚିତ ॥ ୨୬ ॥

ଅର୍ଘ୍ୟ ଆଦିଦ୍ୱାରା, ଆଭୂଷଣମାନଦ୍ୱାରା, ଗନ୍ଧ, ପୁଷ୍ପ, ଅକ୍ଷତ, ଧୂପ, ଦୀପ ତଥା ନାନାପ୍ରକାରର ଭକ୍ଷ୍ୟ ପଦାର୍ଥଯୁକ୍ତ ନୈବେଦ୍ୟଦ୍ୱାରା ପୂଜା କରିବା ଉଚିତ । ପକ୍ୱାନ୍ନ, ମଧୁ, ଦହି, ଡାଲି ଓ ପୁଷ୍ପାଦି ଅର୍ଚ୍ଚନା ଉପହାର ଦ୍ୱାରା ଦେବୀଙ୍କୁ ପୂଜା କରାଯାଏ* । (ହେ ରାଜନ୍ ! ଆସୁରୀ ପ୍ରବୃତ୍ତିଯୁକ୍ତ ଲୋକମାନଙ୍କର ସ୍ୱାଭାବିକ ଭାବେ ମଦିରା ମାଂସାଦିରେ ପ୍ରବୃତ୍ତି ରହିଥାଏ; ସେମାନଙ୍କର ଏହି ଉଚ୍ଛୃଙ୍ଖଳ

* ଦେବୀ କରୁଣାମୂର୍ତ୍ତି, ସର୍ବପ୍ରାଣଦାତ୍ରୀ ଓ ଜଗନ୍ମାତା ଅଟନ୍ତି । ଅତଃ ଦେବୀପୂଜାରେ ମାଂସମଦିରାଦି ତାମସିକ ଦ୍ରବ୍ୟର ନିଷେଧ କରାଯାଇଛି । ଶ୍ରଦ୍ଧାପୂର୍ବକ ସାତ୍ତ୍ୱିକ ଦ୍ରବ୍ୟାର୍ପଣ ବ୍ୟବସ୍ଥାଦ୍ୱାରା ବରଂ ଦେବୀ ପ୍ରସନ୍ନା ହୁଅନ୍ତି ।

ତେଷାଂ କିଳ ସୁରାମାଂସୈର୍ନୋକ୍ତା ପୂଜା ନୃପ କ୍ୱଚିତ୍ ।)
ପ୍ରଣାମାଚମନୀୟେନ ଚନ୍ଦନେନ ସୁଗନ୍ଧିନା ॥ ୨୮ ॥
ସକର୍ପୂରୈଶ୍ଚ ତାମ୍ବୂଲୈର୍ଭକ୍ତିଭାବସମନ୍ୱିତୈଃ ।
ବାମଭାଗେଽଗ୍ରତୋ ଦେବ୍ୟାଶ୍ଛିନ୍ନଶୀର୍ଷଂ ମହାସୁରମ୍ ॥ ୨୯ ॥
ପୂଜୟେନ୍ମହିଷଂ ଯେନ ପ୍ରାପ୍ତଂ ସାୟୁଜ୍ୟମୀଶୟା ।
ଦକ୍ଷିଣେ ପୁରତଃ ସିଂହଂ ସମଗ୍ରଂ ଧର୍ମମୀଶ୍ୱରମ୍ ॥ ୩୦ ॥
ବାହନଂ ପୂଜୟେଦ୍ଦେବ୍ୟା ଧୃତଂ ଯେନ ଚରାଚରମ୍ ।
କୁର୍ଯ୍ୟାଚ୍ଚ ସ୍ତବନଂ ଧୀମାଂସ୍ତସ୍ୟା ଏକାଗ୍ରମାନସଃ ॥ ୩୧ ॥
ତତଃ କୃତାଞ୍ଜଳିର୍ଭୂତ୍ୱା ସ୍ତୁବୀତ ଚରିତୈରିମୈଃ ।
ଏକେନ ବା ମଧ୍ୟମେନ ନୈକେନେତରୟୋରିହ ॥ ୩୨ ॥

ପ୍ରବୃତ୍ତିକୁ ପ୍ରତିରୋଧ କରିବା ପାଇଁ ବ୍ୟତିରେକମୁଖରେ ବଳି, ମାଂସ ଓ ମଦ୍ୟ କଥା କୁହାଯାଇଛି; ଅର୍ଥାତ୍ ଦେବୀଙ୍କ ପୂଜାଦ୍ୱାରା ନିଜ ଅନ୍ତଃକରଣ ଶୁଦ୍ଧ କରି ଏହି ପ୍ରବୃତ୍ତିକୁ ତ୍ୟାଗ କରିବା ଉଚିତ ।) ପ୍ରଣାମ, ଆଚମନଯୋଗ୍ୟ ଜଳ, ସୁଗନ୍ଧିତ ଚନ୍ଦନ, କର୍ପୂର ତଥା ତାମ୍ବୂଳ ଆଦି ସାତ୍ତ୍ୱିକ ସାମଗ୍ରୀକୁ ଭକ୍ତି ଭାବରେ ନିବେଦନ କରି ଦେବୀଙ୍କୁ ପୂଜା କରିବା ଉଚିତ । ଦେବୀଙ୍କ ସମ୍ମୁଖସ୍ଥ ବାମପାର୍ଶ୍ୱରେ ଛିନ୍ନମସ୍ତକ ମହାଦୈତ୍ୟ ମହିଷାସୁରକୁ ପୂଜା କରିବା ଉଚିତ, କାରଣ ସେ ଭଗବତୀଙ୍କ ସହିତ ସାୟୁଜ୍ୟ ପ୍ରାପ୍ତ କରିନେଇଛି । ଏହି ପ୍ରକାର ଦେବୀଙ୍କ ସମ୍ମୁଖସ୍ଥ ଦକ୍ଷିଣ ପାର୍ଶ୍ୱରେ ତାଙ୍କ ବାହନ ଏବଂ ସମସ୍ତ ଧର୍ମର ପ୍ରତୀକ ତଥା ଷଡ୍‌ବିଧ ଐଶ୍ୱର୍ଯ୍ୟଯୁକ୍ତ ସିଂହକୁ ପୂଜା କରିବା ଉଚିତ । ସେ ଏହି ଚରାଚର ଜଗତ୍‌କୁ ଧାରଣ କରିରଖିଛି । ତାପରେ ବୁଦ୍ଧିମାନ୍ ପୁରୁଷ ଏକାଗ୍ରଚିତ୍ତ ହୋଇ ଦେବୀଙ୍କୁ ସ୍ତୁତି କରିବା ଉଚିତ । ପୁନଶ୍ଚ ହସ୍ତ ଯୋଡ଼ି ପୂର୍ବୋକ୍ତ ତିନୋଟି ଚରିତ୍ରଦ୍ୱାରା ଭଗବତୀଙ୍କୁ ସ୍ତବ କରିବା ଉଚିତ । ଯଦି କୌଣସି ଗୋଟିଏ ଚରିତ୍ରଦ୍ୱାରା ସ୍ତୁତି କରିବାକୁ ଚାହିଁବେ; ତେବେ କେବଳ ମଧ୍ୟମ ଚରିତ୍ରର ପାଠଦ୍ୱାରା କରିବା ଉଚିତ । କିନ୍ତୁ ପ୍ରଥମ ଏବଂ ଉତ୍ତର ଚରିତ୍ରମାନଙ୍କ ମଧ୍ୟରୁ

ସର୍ବେଽସ୍ମୈ ଦେବା ବଳିମାବହନ୍ତି ଇତି ତୈ.ଉ ୧.୫.୩ ମନ୍ତ୍ରେ ବଳିର୍ନାମ ଉପହାରବିଶେଷଃ ଇତି ଶାଙ୍କରଭାଷ୍ୟସ୍ୟ ପ୍ରମାଣମ୍ । ନ ଚ ପ୍ରାଣୀବଧଃ ସ୍ୱର୍ଗ୍ୟୋସ୍ତସ୍ମାତ୍ତନ୍ମାଂସଂ ବିବର୍ଜୟେତ୍-ଇତି ଶବ୍ଦପ୍ରମାଣମ୍ ॥

ଚରିତାର୍ଧଂ ତୁ ନ ଜପେଜ୍ଜପଞ୍ଛିଦ୍ରମବାପ୍ନୁୟାତ୍ ।
ପ୍ରଦକ୍ଷିଣାନମସ୍କାରାନ୍ କୃତ୍ୱା ମୂର୍ଧ୍ନି କୃତାଞ୍ଜଳିଃ ॥ ୩୩ ॥
କ୍ଷମାପୟେଜ୍ଜଗଦ୍ଧାତ୍ରୀଂ ମୁହୁର୍ମୁହୁରତନ୍ଦ୍ରିତଃ ।
ପ୍ରତିଶ୍ଳୋକଂ ଚ ଜୁହୁୟାତ୍ପାୟସଂ ତିଲସର୍ପିଷା ॥ ୩୪ ॥
ଜୁହୁୟାତ୍ସ୍ତୋତ୍ରମନ୍ତ୍ରୈର୍ବା ଚଣ୍ଡିକାୟୈ ଶୁଭଂ ହବିଃ ।
ଭୂୟୋ ନାମପଦୈର୍ଦେବୀଂ ପୂଜୟେତ୍ସୁସମାହିତଃ ॥ ୩୫ ॥
ପ୍ରୟତଃ ପ୍ରାଞ୍ଜଳିଃ ପ୍ରହ୍ୱଃ ପ୍ରଣମ୍ୟାରୋପ୍ୟ ଚାତ୍ମନି ।
ସୁଚିରଂ ଭାବୟେଦୀଶାଂ ଚଣ୍ଡିକାଂ ତନ୍ମୟୋ ଭବେତ୍ ॥ ୩୬ ॥
ଏବଂ ଯଃ ପୂଜୟେଦ୍ଭକ୍ତ୍ୟା ପ୍ରତ୍ୟହଂ ପରମେଶ୍ୱରୀମ୍ ।
ଭୁକ୍ତ୍ୱା ଭୋଗାନ୍ ଯଥାକାମଂ ଦେବୀସାୟୁଜ୍ୟମାପ୍ନୁୟାତ୍ ॥ ୩୭ ॥

ଗୋଟିକର ପାଠ କରିବା ଅନୁଚିତ । ଚରିତ୍ରର ଅର୍ଦ୍ଧେକ ମଧ୍ୟ ପାଠ କରିବା ନିଷେଧ କରାଯାଇଛି । ଯେଉଁ ବ୍ୟକ୍ତି ଅର୍ଦ୍ଧ ଚରିତ୍ରକୁ ପାଠ କରେ; ତାହାର ପାଠ ସଫଳ ହୁଏ ନାହିଁ । ପାଠ ସମାପ୍ତି ପରେ ସାଧକ ପ୍ରଦକ୍ଷିଣ କରି ଏବଂ ନମସ୍କାର କରି ତଥା ଆଳସ୍ୟ ପରିତ୍ୟାଗ କରି ଜଗଦମ୍ବାଙ୍କ ଉଦ୍ଦେଶ୍ୟରେ ମସ୍ତକ ଉପରେ ହସ୍ତ ଯୋଡ଼ି ତାଙ୍କୁ ବାରମ୍ବାର ତ୍ରୁଟି ବା ଅପରାଧ ପାଇଁ କ୍ଷମା ପ୍ରାର୍ଥନା କରିବା ଉଚିତ । ସପ୍ତଶତୀର ପ୍ରତ୍ୟେକ ଶ୍ଳୋକ ମନ୍ତ୍ରରୂପକ ଅଟେ । ତାହାଦ୍ୱାରା ତିଳ ଓ ଘୃତମିଶ୍ରିତ ଖିରି ଆହୁତି ଦେବା ଉଚିତ ॥ ୨୭—୩୪ ॥ ଅଥବା ସପ୍ତଶତୀରେ ଯେଉଁ ସବୁ ସ୍ତୋତ୍ର ଅଛି; ତାହାରି ମନ୍ତ୍ରଦ୍ୱାରା ଚଣ୍ଡିକାଙ୍କ ନିମନ୍ତେ ପବିତ୍ର ହବିଷ୍ୟର ହୋମ କରିବା ଉଚିତ । ହୋମ ପରେ ଏକାଗ୍ରଚିତ୍ତ ହୋଇ ମହାଲକ୍ଷ୍ମୀ ଦେବୀଙ୍କ ନାମମନ୍ତ୍ରକୁ ଉଚ୍ଚାରଣ କରି ପୁନଃ ତାଙ୍କରି ପୂଜା କରିବା ଉଚିତ ॥ ୩୫ ॥ ତାପରେ ମନ ଓ ଇନ୍ଦ୍ରିୟଗୁଡ଼ିକୁ ବଶରେ ରଖି ହାତ ଯୋଡ଼ି ବିନୀତ ଭାବରେ ଦେବୀଙ୍କୁ ପ୍ରଣାମ କରିବା ଉଚିତ ଏବଂ ଅନ୍ତଃକରଣରେ ସ୍ଥାପିତ କରି ସେହି ସର୍ବେଶ୍ୱରୀ ଚଣ୍ଡିକା ଦେବୀଙ୍କୁ ବହୁ ସମୟ ପର୍ଯ୍ୟନ୍ତ ଚିନ୍ତନ କରିବା ଉଚିତ । ଚିନ୍ତନ କରୁ କରୁ ତାଙ୍କ ମଧ୍ୟରେ ତନ୍ମୟ ହୋଇଯିବା ବିଧେୟ ॥ ୩୬ ॥ ଯେଉଁ ମନୁଷ୍ୟ ପ୍ରତିଦିନ ଭକ୍ତିପୂର୍ବକ ପରମେଶ୍ୱରୀଙ୍କୁ ଏହିପ୍ରକାର ପୂଜା କରେ; ସେ ମନୋବାଞ୍ଛିତ ଭୋଗ ଉପଭୋଗ କରି ଶେଷରେ ଦେବୀଙ୍କ ସାୟୁଜ୍ୟ ପ୍ରାପ୍ତ କରେ ॥ ୩୭ ॥

**ଯୋ ନ ପୂଜୟତେ ନିତ୍ୟଂ ଚଣ୍ଡିକାଂ ଭକ୍ତବତ୍ସଳାମ୍ ।**
**ଭସ୍ମୀକୃତ୍ୟାସ୍ୟ ପୁଣ୍ୟାନି ନିର୍ଦହେତ୍ପରମେଶ୍ୱରୀ ॥ ୩୮ ॥**
**ତସ୍ମାତ୍ପୂଜୟ ଭୂପାଳ ସର୍ବଲୋକମହେଶ୍ୱରୀମ୍ ।**
**ଯଥୋକ୍ତେନ ବିଧାନେନ ଚଣ୍ଡିକାଂ ସୁଖମାପ୍ସ୍ୟସି ॥ ୩୯ ॥**

॥ ଇତି ବୈକୃତିକଂ ରହସ୍ୟଂ ସମ୍ପୂର୍ଣ୍ଣମ୍ ॥



ଯିଏ ଭକ୍ତବତ୍ସଳା ଚଣ୍ଡିକାଙ୍କୁ ପ୍ରତିଦିନ ପୂଜା କରେ ନାହିଁ; ଭଗବତୀ ପରମେଶ୍ୱରୀ ତାହାର ପୁଣ୍ୟକୁ ଭସ୍ମ କରିଦିଅନ୍ତି ॥ ୩୮ ॥ ତେଣୁ ହେ ରାଜନ୍ ! ତୁମ୍ଭେ ସର୍ବଲୋକ-ମହେଶ୍ୱରୀ ଚଣ୍ଡିକାଙ୍କୁ ଶାସ୍ତ୍ରୋକ୍ତ ବିଧିରେ ପୂଜା କରିବା ଉଚିତ । ଏହାଦ୍ୱାରା ତୁମ୍ଭଙ୍କୁ ସୁଖ ପ୍ରାପ୍ତ ହେବ ॥ ୩୯ ॥*



* ପୂର୍ବୋକ୍ତ ପ୍ରାକୃତିକ ବା ପ୍ରାଧାନିକ ରହସ୍ୟରେ କାରଣାତ୍ମକ ପ୍ରକୃତିଭୂତା ମହାଲକ୍ଷ୍ମୀଙ୍କ ସ୍ୱରୂପ ତଥା ଅବତାରମାନଙ୍କର ବର୍ଣ୍ଣନା କରାଯାଇଛି । ଏହି ପ୍ରକରଣରେ ବିଶେଷରୂପରେ ପ୍ରକୃତି ସହିତ ବିକୃତିଗୁଡ଼ିକର ଧ୍ୟାନ, ପୂଜା, ପୂଜାଉପଗ୍ରହ ତଥା ପୂଜନର ମହିମା ବର୍ଣ୍ଣନା କରାଯାଇଛି । ତେଣୁ ଏହାକୁ ବୈକୃତିକ ରହସ୍ୟ କହନ୍ତି । ଏଠାରେ ପ୍ରଥମେ ସପ୍ତଶତୀର ତିନୋଟି ଚରିତ୍ରରେ ବର୍ଣ୍ଣିତ ମହାକାଳୀ, ମହାଲକ୍ଷ୍ମୀ ତଥା ମହାସରସ୍ୱତୀଙ୍କ ଧ୍ୟାନର ବର୍ଣ୍ଣନା ଅଛି । ଏଠାରେ ମହାକାଳୀ ଦଶଭୁଜା, ମହାଲକ୍ଷ୍ମୀ ଅଷ୍ଟାଦଶଭୁଜା ତଥା ମହାସରସ୍ୱତୀ ଅଷ୍ଟଭୁଜା ଅଟନ୍ତି । ଏମାନଙ୍କ ଆୟୁଧଗୁଡ଼ିକର କ୍ରମ ପୂର୍ବରୁ କୁହାଯାଇଥିବା ଅନୁସାରେ ଦକ୍ଷିଣ ଭାଗସ୍ଥ ତଳ ହସ୍ତରୁ କ୍ରମଶଃ ଉପର ହସ୍ତମାନଙ୍କରେ, ପୁନଶ୍ଚ ବାମପାର୍ଶ୍ୱର ଉପରିସ୍ଥ ହାତଠାରୁ ଆରମ୍ଭ କରି ନିମ୍ନ ହସ୍ତ ପର୍ଯ୍ୟନ୍ତ ବୁଝିବା ଉଚିତ । ମହାକାଳୀଙ୍କ ଦଶହସ୍ତରୁ ପାଞ୍ଚୋଟି ଦକ୍ଷିଣ ପଟେ ଏବଂ ପାଞ୍ଚୋଟି ବାମ ପଟେ ରହିଛି । ଦକ୍ଷିଣ ପଟ ହସ୍ତରେ କ୍ରମଶଃ ତଳୁ ଉପର ପର୍ଯ୍ୟନ୍ତ ଖଡ୍ଗ, ବାଣ, ଗଦା, ଶୂଳ ଓ ଚକ୍ର ରହିଛି ତଥା ବାମ ହସ୍ତଗୁଡ଼ିକରେ ଉପରୁ ତଳପର୍ଯ୍ୟନ୍ତ କ୍ରମଶଃ ଶଙ୍ଖ, ଭୁଶୁଣ୍ଡି, ପରିଘ, ଧନୁ ଓ ମସ୍ତକ ରହିଛି । ଏହିପ୍ରକାର ଅଷ୍ଟାଦଶଭୁଜା ମହାଲକ୍ଷ୍ମୀଙ୍କ ନଅଟି ଦକ୍ଷିଣ ହସ୍ତରେ ନିମ୍ନ ଆଡୁ କ୍ରମଶଃ ଅକ୍ଷମାଳା, ପଦ୍ମ, ବାଣ, ଖଡ୍ଗ, ବଜ୍ର, ଗଦା, ଚକ୍ର, ତ୍ରିଶୂଳ ଏବଂ ପରଶୁ ରହିଛି ତଥା ବାମ ହସ୍ତରେ ଉପରୁ ତଳପର୍ଯ୍ୟନ୍ତ ଶଙ୍ଖ, ଘଣ୍ଟା, ପାଶ, ଶକ୍ତି, ଦଣ୍ଡ, ଢାଲ, ଧନୁ, ପାନପାତ୍ର ଓ କମଣ୍ଡଳୁ ରହିଛି । ଅଷ୍ଟଭୁଜା ମହାସରସ୍ୱତୀଙ୍କର ମଧ୍ୟ ଚାରୋଟି ଦକ୍ଷିଣ ହସ୍ତରେ ପୂର୍ବୋକ୍ତ କ୍ରମରେ ବାଣ, ମୁସଳ, ଶୂଳ ଏବଂ ଚକ୍ର ରହିଛି ତଥା ବାମ ହସ୍ତରେ ଶଙ୍ଖ, ଘଣ୍ଟା, ହଳ ଏବଂ ଧନୁ ରହିଛି । ଏହି ତିନିଙ୍କ ଧ୍ୟାନ ବିଷୟରେ କୁହାଯାଇଥିବା ଅନ୍ୟ ସମସ୍ତ କଥା ସ୍ପଷ୍ଟ ଅଟେ । ତତ୍ପଶ୍ଚାତ୍ ଏହି ସବୁ ଉପାସନାର କ୍ରମ ଏହିପରି ବୋଲି କୁହାଯାଇଛି । ମଧ୍ୟଭାଗରେ ଚତୁର୍ଭୁଜା ମହାଲକ୍ଷ୍ମୀଙ୍କୁ ସ୍ଥାପନ କରି ତାଙ୍କ ଦକ୍ଷିଣ ଭାଗରେ

ଚତୁର୍ଭୁଜା ମହାକାଳୀ ତଥା ବାମ ଭାଗରେ ଚତୁର୍ଭୁଜା ମହାସରସ୍ୱତୀଙ୍କୁ ସ୍ଥାପନ କରିବା ବିଧେୟ । ମହାକାଳୀଙ୍କ ପୃଷ୍ଠଭାଗରେ ରୁଦ୍ର-ଗୌରୀ, ମହାଲକ୍ଷ୍ମୀଙ୍କ ପୃଷ୍ଠଭାଗରେ ବ୍ରହ୍ମା-ସରସ୍ୱତୀ ତଥା ମହାସରସ୍ୱତୀଙ୍କ ପୃଷ୍ଠଭାଗରେ ବିଷ୍ଣୁ-ଲକ୍ଷ୍ମୀଙ୍କୁ ପୂଜା କରିବା ଉଚିତ । ପୁନଶ୍ଚ ଚତୁର୍ଭୁଜା ମହାଲକ୍ଷ୍ମୀଙ୍କ ସମ୍ମୁଖସ୍ଥ ମଧ୍ୟଭାଗରେ ଅଷ୍ଟାଦଶଭୁଜାଙ୍କୁ ସ୍ଥାପନ କରିବା ଉଚିତ । ତାଙ୍କର ମୁଖ ଚତୁର୍ଭୁଜା ମହାଲକ୍ଷ୍ମୀଙ୍କ ଆଡ଼କୁ ରହିବ । ଅଷ୍ଟାଦଶଭୁଜାଙ୍କ ଦକ୍ଷିଣଭାଗରେ ଅଷ୍ଟଭୁଜା ମହାସରସ୍ୱତୀ ଏବଂ ବାମଭାଗରେ ଦଶାନନା ମହାକାଳୀ ରହିବେ । ଯଦି କେବଳ ଅଷ୍ଟାଦଶଭୁଜା ବା ଦଶାନନା ଅଥବା ଅଷ୍ଟଭୁଜାଙ୍କୁ ପୂଜା କରିବାର ଥିବ; ତେବେ ଏମାନଙ୍କ ମଧ୍ୟରୁ କୌଣସି ଏକ ଅଭୀଷ୍ଟ ଦେବୀଙ୍କୁ ସ୍ଥାପନ କରି ତାଙ୍କ ଦକ୍ଷିଣଭାଗରେ କାଳ ଓ ବାମଭାଗରେ ମୃତ୍ୟୁକୁ ସ୍ଥାପନ କରିବା ଉଚିତ । ଅଷ୍ଟଭୁଜାଙ୍କ ପୂଜାରେ କେତେକ ବିଶେଷତ୍ୱ ରହିଛି । ଯଦି କେବଳ ଅଷ୍ଟଭୁଜାଙ୍କୁ ପୂଜା କରିବାର ଥିବ; ତେବେ ତାଙ୍କ ସହ ତାଙ୍କର ବ୍ରାହ୍ମୀ, ମାହେଶ୍ୱରୀ, କୌମାରୀ, ବୈଷ୍ଣବୀ, ବାରାହୀ, ନାରସିଂହୀ, ଐନ୍ଦ୍ରୀ, ଶିବଦୂତୀ ଓ ଚାମୁଣ୍ଡା—ଏହି ନବଶକ୍ତିଙ୍କୁ ମଧ୍ୟ ପୂଜା କରିବା ଉଚିତ । ଏହା ସହିତ ଦକ୍ଷିଣଭାଗରେ ରୁଦ୍ର ଓ ବାମଭାଗରେ ବିନାୟକଙ୍କୁ ପୂଜା କରିବା ଆବଶ୍ୟକ । କାଳ ଓ ମୃତ୍ୟୁର ପୂଜା ବିଷୟରେ ଯାହା ପୂର୍ବରୁ କୁହାଯାଇଛି; ତାହା ହେବା ଉଚିତ । କେତେକ ଲୋକ ଶୈଳପୁତ୍ରୀ ଆଦି ନବଦୁର୍ଗାଙ୍କୁ ନଅଟି ଶକ୍ତିମଧ୍ୟରେ ଗ୍ରହଣ କରନ୍ତି । କିନ୍ତୁ ଏହା ଠିକ୍ ନୁହେଁ; କାରଣ ସେମାନଙ୍କୁ ଅଷ୍ଟଭୁଜାଙ୍କ ଶକ୍ତିରୂପରେ କେଉଁଠାରେ କୁହାଯାଇ ନାହିଁ । ଏହି ବ୍ରାହ୍ମୀ ଆଦି ଶକ୍ତିମାନେ ହିଁ ମହାସରସ୍ୱତୀଙ୍କ ଅଙ୍ଗରୁ ପ୍ରକଟ ହୋଇଥିଲେ । ତେଣୁ ସେମାନେ ତାଙ୍କର ନବ ଶକ୍ତି ଅଟନ୍ତି । ଅଷ୍ଟାଦଶଭୁଜା ଦେବୀଙ୍କ ସମ୍ମୁଖସ୍ଥ ଦକ୍ଷିଣଭାଗରେ ସିଂହ ଓ ବାମଭାଗରେ ମଇଁଷିକୁ ପୂଜା କରିବା ଉଚିତ । କେତେକ ଲୋକଙ୍କ କଥାନୁସାରେ ଯେତେବେଳେ ଅଷ୍ଟାଦଶଭୁଜା ଦେବୀଙ୍କୁ ପୂଜା କରାଯାଏ; ସେତେବେଳେ ତାଙ୍କର ଦକ୍ଷିଣଭାଗରେ ଦଶାନନା ଓ ବାମଭାଗରେ ଅଷ୍ଟଭୁଜାଙ୍କୁ ପୂଜା କରିବା ଉଚିତ । ଯେତେବେଳେ କେବଳ ଦଶାନନାଙ୍କ ପୂଜା କରାଯାଏ; ସେତେବେଳେ ତାଙ୍କ ସହ ଦକ୍ଷିଣଭାଗରେ କାଳକୁ ଓ ବାମଭାଗରେ ମୃତ୍ୟୁକୁ ପୂଜା କରିବା ବିଧେୟ । ତଥାପି ଯେତେବେଳେ କେବଳ ଅଷ୍ଟଭୁଜାଙ୍କୁ ପୂଜା କରାଯାଏ; ସେତେବେଳେ ତାଙ୍କ ସହିତ ପୂର୍ବୋକ୍ତ ନଅଟି ଶକ୍ତି ଏବଂ ରୁଦ୍ରବିନାୟକଙ୍କୁ ମଧ୍ୟ ପୂଜା କରିବା ଉଚିତ । ଏହି କ୍ରମବିଭାଗ ଦେଖିବାକୁ ସୁନ୍ଦର ହେଲେ ମଧ୍ୟ ମୂଳପାଠର ପ୍ରତିକୂଳ ଅଟେ । କେତେକ ଲୋକ ଏପରି କହନ୍ତି ଯେ ଅଷ୍ଟାଦଶଭୁଜା ଆଦି ଦେବୀଙ୍କ ମଧ୍ୟରୁ ଯାହାଙ୍କୁ ମୁଖ୍ୟତଃ ପୂଜା କରିବାର ଥିବ; ତାଙ୍କୁ ମଧ୍ୟଭାଗରେ ସ୍ଥାପନ କରି ଦକ୍ଷିଣ ଓ ବାମଭାଗରେ ଅନ୍ୟ ଦୁଇ ଦେବୀଙ୍କୁ ସ୍ଥାପନ କରିବା ଉଚିତ ଏବଂ ମଧ୍ୟଭାଗରେ ସ୍ଥିତ ଦେବୀଙ୍କ ଦକ୍ଷିଣ-ବାମ ପାର୍ଶ୍ୱରେ ରୁଦ୍ର-ବିନାୟକଙ୍କୁ ସ୍ଥାପନ କରି ସମସ୍ତଙ୍କୁ ପୂଜା କରିବା ଉଚିତ । ଏହି କଥା ମୂଳରୁ ସିଦ୍ଧ ହୁଏ ନାହିଁ । କେହି କେହି ଅଷ୍ଟଭୁଜାଙ୍କ ପୂଜନରେ ବିକଳ୍ପ ବୋଲି ସ୍ୱୀକାର କରନ୍ତି । ସେମାନଙ୍କ ମତରେ ଅଷ୍ଟଭୁଜାଙ୍କ ସହିତ କାଳ ଏବଂ ମୃତ୍ୟୁକୁ ପୂଜା କରିବା ଉଚିତ ବା ନବଶକ୍ତିଙ୍କ ସହିତ ରୁଦ୍ର-ବିନାୟକଙ୍କୁ ପୂଜା କରିବା ଉଚିତ; ଏକସଙ୍ଗେ ସମସ୍ତଙ୍କୁ ପୂଜା କରିବା ଅନୁଚିତ ।

# ଅଥ ମୂର୍ତ୍ତିରହସ୍ୟମ୍*

ଋଷିରୁବାଚ

**ଓଁ ନନ୍ଦା ଭଗବତୀ ନାମ ଯା ଭବିଷ୍ୟତି ନନ୍ଦଜା ।**
**ସ୍ତୁତା ସା ପୂଜିତା ଭକ୍ତ୍ୟା ବଶୀକୁର୍ଯ୍ୟାଜ୍ଜଗତ୍ତ୍ରୟମ୍ ॥ ୧ ॥**

---

**ଋଷି କହିଲେ**—ହେ ରାଜନ୍ ! ନନ୍ଦା ନାମକ ଦେବୀ ଯେ ନନ୍ଦଠାରୁ ଉତ୍ପନ୍ନ ହୁଅନ୍ତି; ତାଙ୍କୁ ଭକ୍ତିପୂର୍ବକ ସ୍ତୁତି ଏବଂ ପୂଜା କଲେ ସେ ତ୍ରିଲୋକକୁ

---

କିନ୍ତୁ ଏପରି ଧାରଣା ନିମନ୍ତେ ମଧ୍ୟ କୌଣସି ଯଥେଷ୍ଟ ପ୍ରମାଣ ନାହିଁ । ନିମ୍ନ କୋଷ୍ଟକଗୁଡ଼ିକଦ୍ୱାରା ସମଷ୍ଟି-ଉପାସନା ଏବଂ ବ୍ୟଷ୍ଟି-ଉପାସନାର କ୍ରମ ସ୍ପଷ୍ଟ କରାଯାଇଛି—

(ସମଷ୍ଟି ଉପାସନା)

| | | |
|---|---|---|
| ରୁଦ୍ର-ଗୌରୀ | ବ୍ରହ୍ମା-ସରସ୍ୱତୀ | ବିଷ୍ଣୁ-ଲକ୍ଷ୍ମୀ |
| ଚତୁର୍ଭୁଜା ମହାକାଳୀ | ଚତୁର୍ଭୁଜା ମହାଲକ୍ଷ୍ମୀ | ଚତୁର୍ଭୁଜା ମହାସରସ୍ୱତୀ |
| ଦଶାନନା ଦଶଭୁଜା | ଅଷ୍ଟାଦଶଭୁଜା | ଅଷ୍ଟଭୁଜା |

(ବ୍ୟଷ୍ଟି-ଉପାସନା)

ଅଷ୍ଟାଦଶଭୁଜା-ପୂଜା

| | | | |
|---|---|---|---|
| କାଳ | ଅଷ୍ଟାଦଶଭୁଜା ଦେବୀ | | ମୃତ୍ୟୁ |
| | ସିଂହ | ମହିଷ | |

ଦଶାନନା-ପୂଜା

| | | |
|---|---|---|
| କାଳ | ଦଶାନନା ଦେବୀ | ମୃତ୍ୟୁ |

ଅଷ୍ଟଭୁଜା-ପୂଜା

| | | |
|---|---|---|
| କାଳ ରୁଦ୍ର | ଅଷ୍ଟଭୁଜା ଦେବୀ | ମୃତ୍ୟୁ ବିନାୟକ |
| | ନବ ଶକ୍ତି | |

* ଦେବୀଙ୍କ ଅଙ୍ଗଭୂତା ଛଅଟି ଦେବୀ ଅଛନ୍ତି—ନନ୍ଦା, ରକ୍ତଦନ୍ତିକା, ଶାକମ୍ଭରୀ, ଦୁର୍ଗା, ଭୀମା ଓ ଭ୍ରାମରୀ । ଏମାନେ ଦେବୀଗଣଙ୍କ ସାକ୍ଷାତ୍ ମୂର୍ତ୍ତି ଅଟନ୍ତି । ଏମାନଙ୍କ ସ୍ୱରୂପର ପ୍ରତିପାଦନ ହେବାରୁ ଏହି ପ୍ରକରଣକୁ ମୂର୍ତ୍ତିରହସ୍ୟ କହନ୍ତି ।

କନକୋତ୍ତମକାନ୍ତିଃ ସା ସୁକାନ୍ତିକନକାମ୍ବରା ।
ଦେବୀ କନକବର୍ଣ୍ଣାଭା କନକୋତ୍ତମଭୂଷଣା ॥ ୨ ॥
କମଲାଙ୍କୁଶପାଶାବ୍ଜୈରଲଂକୃତଚତୁର୍ଭୁଜା ।
ଇନ୍ଦିରା କମଲା ଲକ୍ଷ୍ମୀଃ ସା ଶ୍ରୀ ରୁକ୍ମାମ୍ବୁଜାସନା ॥ ୩ ॥
ଯା ରକ୍ତଦନ୍ତିକା ନାମ ଦେବୀ ପ୍ରୋକ୍ତା ମୟାନଘ ।
ତସ୍ୟାଃ ସ୍ୱରୂପଂ ବକ୍ଷ୍ୟାମି ଶୃଣୁ ସର୍ବଭୟାପହମ୍ ॥ ୪ ॥
ରକ୍ତାମ୍ବରା ରକ୍ତବର୍ଣ୍ଣା ରକ୍ତସର୍ବାଙ୍ଗଭୂଷଣା ।
ରକ୍ତାୟୁଧା ରକ୍ତନେତ୍ରା ରକ୍ତକେଶାତିଭୀଷଣା ॥ ୫ ॥
ରକ୍ତତୀକ୍ଷ୍ଣନଖା ରକ୍ତଦଶନା ରକ୍ତଦନ୍ତିକା ।
ପତିଂ ନାରୀବାନୁରକ୍ତା ଦେବୀ ଭକ୍ତଂ ଭଜେଜ୍ଜନମ୍ ॥ ୬ ॥

---

ଉପାସକର ଅଧୀନ କରିଦିଅନ୍ତି ॥ ୧ ॥ ତାଙ୍କ ଶ୍ରୀଅଙ୍ଗର କାନ୍ତି କନକସଦୃଶ ଉତ୍ତମ ଅଟେ । ସେ ସୁନେଲୀ ରଙ୍ଗର ସୁନ୍ଦର ବସ୍ତ୍ର ଧାରଣ କରନ୍ତି । ତାଙ୍କର ଆଭା ସୁବର୍ଣ୍ଣତୁଲ୍ୟ ତଥା ସେ ସୁବର୍ଣ୍ଣର ଉତ୍ତମ ଆଭୂଷଣ ଧାରଣ କରନ୍ତି ॥ ୨ ॥ ତାଙ୍କର ଚାରୋଟି ବାହୁ ପଦ୍ମଫୁଲ, ଅଙ୍କୁଶ, ପାଶ ଏବଂ ଶଙ୍ଖଦ୍ୱାରା ସୁଶୋଭିତ ହୋଇଥାଏ । ସେ ଇନ୍ଦିରା, କମଳା, ଲକ୍ଷ୍ମୀ, ଶ୍ରୀ ଏବଂ ରୁକ୍ମାମ୍ବୁଜାସନା (ସୁବର୍ଣ୍ଣମୟ କମଳର ଆସନ ଉପରେ ବିରାଜମାନ) ଆଦି ନାମରେ କୁହାଯାଆନ୍ତି ॥ ୩ ॥ ହେ ନିଷ୍ପାପ ନରେଶ ! ପୂର୍ବରୁ ରକ୍ତଦନ୍ତିକା ନାମରେ ଯେଉଁ ଦେବୀଙ୍କର ପରିଚୟ ପ୍ରଦାନ କରିଛି; ବର୍ତ୍ତମାନ ତାଙ୍କ ସ୍ୱରୂପର ବର୍ଣ୍ଣନା କରିବି । ଶ୍ରବଣ କର । ସେ ସର୍ବଭୟଦୂରକାରିଣୀ ଅଟନ୍ତି ॥ ୪ ॥ ସେ ରକ୍ତବର୍ଣ୍ଣର ବସ୍ତ୍ର ପରିଧାନ କରନ୍ତି । ତାଙ୍କ ଶରୀରର ରଙ୍ଗ ମଧ୍ୟ ରକ୍ତ ବର୍ଣ୍ଣ ଏବଂ ଅଙ୍ଗଗୁଡ଼ିକର ସମସ୍ତ ଆଭୂଷଣ ମଧ୍ୟ ରକ୍ତରଙ୍ଗର ଅଟେ । ତାଙ୍କ ଅସ୍ତ୍ର-ଶସ୍ତ୍ର, ନେତ୍ର, ମସ୍ତକର କେଶ, ତୀକ୍ଷ୍ଣ ନଖ ଏବଂ ଦାନ୍ତ ସବୁ ରକ୍ତ ବର୍ଣ୍ଣର ଅଟେ । ତେଣୁ ତାହାଙ୍କୁ ରକ୍ତଦନ୍ତିକା କୁହାଯାଏ ଏବଂ ସେ ଅତ୍ୟନ୍ତ ଭୟାନକ ଦେଖାଯାଆନ୍ତି । ଯେପରି ସ୍ତ୍ରୀର ପତି ପ୍ରତି ଅନୁରାଗ ରହେ; ସେହିପ୍ରକାର ଦେବୀ ନିଜ ଭକ୍ତ ଉପରେ (ମାତାସଦୃଶ) ସ୍ନେହ ରଖି ତାହାଙ୍କୁ ସେବା କରନ୍ତି ॥ ୫-୬ ॥

ବସୁଧେବ ବିଶାଳା ସା ସୁମେରୁଯୁଗଳସ୍ତନୀ ।
ଦୀର୍ଘୌ ଲମ୍ବାବତିସ୍ଥୂଲୌ ତାବତୀବ ମନୋହରୌ ॥ ୭ ॥
କର୍କଶାବତିକାନ୍ତୌ ତୌ ସର୍ବାନନ୍ଦପୟୋନିଧୀ ।
ଭକ୍ତାନ୍ ସମ୍ପାୟୟେଦ୍ଦେବୀ ସର୍ବକାମଦୁଘୌ ସ୍ତନୌ ॥ ୮ ॥
ଖଡ୍ଗଂ ପାତ୍ରଂ ଚ ମୁସଲଂ ଲାଙ୍ଗଲଂ ଚ ବିଭର୍ତ୍ତି ସା ।
ଆଖ୍ୟାତା ରକ୍ତଚାମୁଣ୍ଡା ଦେବୀ ଯୋଗେଶ୍ୱରୀତି ଚ ॥ ୯ ॥
ଅନୟା ବ୍ୟାପ୍ତମଖିଳଂ ଜଗତ୍ସ୍ଥାବରଜଙ୍ଗମମ୍ ।
ଇମାଂ ଯଃ ପୂଜୟେଦ୍ଭକ୍ତ୍ୟା ସ ବ୍ୟାପ୍ନୋତି ଚରାଚରମ୍ ॥ ୧୦ ॥
(ଭୁକ୍ତ୍ୱା ଭୋଗାନ୍ ଯଥାକାମଂ ଦେବୀସାୟୁଜ୍ୟମାପ୍ନୁୟାତ୍ ।)
ଅଧୀତେ ଯ ଇମଂ ନିତ୍ୟଂ ରକ୍ତଦନ୍ତ୍ୟା ବପୁଃସ୍ତବମ୍ ।
ତଂ ସା ପରିଚରେଦ୍ଦେବୀ ପତିଂ ପ୍ରିୟମିବାଙ୍ଗନା ॥ ୧୧ ॥

ଦେବୀ ରକ୍ତିଦନ୍ତିକାଙ୍କ ଆକାର ବସୁଧାସଦୃଶ ବିଶାଳ ଅଟେ । ତାଙ୍କର ଦୁଇଟି ସ୍ତନ ସୁମେରୁ ପର୍ବତ ସମାନ ଅଟେ । ସେଗୁଡ଼ିକ ଲମ୍ବା, ଚଉଡ଼ା, ଅତ୍ୟନ୍ତ ସ୍ଥୂଳ ଏବଂ ବହୁତ ମନୋହର ଅଟନ୍ତି । କଠୋର ହେଲେ ମଧ୍ୟ ଅତ୍ୟନ୍ତ କମନୀୟ ତଥା ପୂର୍ଣ୍ଣ ଆନନ୍ଦର ସମୁଦ୍ର ଅଟନ୍ତି । ସମସ୍ତ କାମନାକୁ ପୂରଣ କରୁଥିବା ଏହି ସ୍ତନ ଦୁଇଟିକୁ ଦେବୀ ନିଜ ଭକ୍ତଙ୍କୁ ପାନ କରାନ୍ତି ॥ ୭-୮ ॥ ସେ ନିଜ ଚାରି ବାହୁରେ ଖଡ୍ଗ, ପାନପାତ୍ର, ମୁସଳ ଏବଂ ହଳ ଧାରଣ କରନ୍ତି । ଏହାଙ୍କୁ ରକ୍ତଚାମୁଣ୍ଡା ଓ ଯୋଗେଶ୍ୱରୀ ଦେବୀ କହନ୍ତି ॥ ୯ ॥ ତାଙ୍କଦ୍ୱାରା ସମସ୍ତ ଚରାଚର ଜଗତ୍ ବ୍ୟାପ୍ତ ହୋଇଛି । ଯିଏ ଏହି ରକ୍ତଦନ୍ତିକା ଦେବୀଙ୍କୁ ଭକ୍ତିପୂର୍ବକ ପୂଜା କରେ; ସେ ମଧ୍ୟ ଚରାଚର ଜଗତ୍‌ରେ ବ୍ୟାପ୍ତ ହୁଏ ॥ ୧୦ ॥ (ସେ ଯଥେଷ୍ଟ ଭୋଗ ଉପଭୋଗ କରି ଶେଷରେ ଦେବୀଙ୍କ ସହ ସାୟୁଜ୍ୟ ଲାଭ କରେ ।) ଯିଏ ପ୍ରତିଦିନ ରକ୍ତଦନ୍ତିକା ଦେବୀଙ୍କ ଶରୀରର ଏହି ସ୍ତବ କରେ; ତାହାକୁ ଦେବୀ ପ୍ରେମପୂର୍ବକ ସଂରକ୍ଷଣରୂପ ସେବା କରନ୍ତି । ଯେପରି ପତିବ୍ରତା ନାରୀ ନିଜ ପ୍ରିୟତମ ପତିକୁ ପରିଚର୍ଯ୍ୟା କରେ; ସେହିପରି ଏହା ହୁଏ ॥ ୧୧ ॥

ଶାକମ୍ଭରୀ ନୀଳବର୍ଣ୍ଣା ନୀଲୋତ୍ପଲବିଲୋଚନା ।
ଗମ୍ଭୀରନାଭିସ୍ତ୍ରିବଳୀବିଭୂଷିତତନୂଦରୀ ॥ ୧୨ ॥
ସୁକର୍କଶସମୋତ୍ତୁଙ୍ଗବୃତ୍ତପୀନଘନସ୍ତନୀ ।
ମୁଷ୍ଟିଂ ଶିଲୀମୁଖାପୂର୍ଣ୍ଣଂ କମଲଂ କମଲାଲୟା ॥ ୧୩ ॥
ପୁଷ୍ପପଲ୍ଲବମୂଳାଦିଫଳାଢ୍ୟଂ ଶାକସଞ୍ଚୟମ୍ ।
କାମ୍ୟାନନ୍ତରସୈର୍ଯୁକ୍ତଂ କ୍ଷୁତ୍ତୃଣ୍ମୃତ୍ୟୁଭୟାପହମ୍ ॥ ୧୪ ॥
କାର୍ମୁକଂ ଚ ସ୍ଫୁରତ୍କାନ୍ତି ବିଭ୍ରତୀ ପରମେଶ୍ୱରୀ ।
ଶାକମ୍ଭରୀ ଶତାକ୍ଷୀ ସା ସୈବ ଦୁର୍ଗା ପ୍ରକୀର୍ତ୍ତିତା ॥ ୧୫ ॥
ବିଶୋକା ଦୁଷ୍ଟଦମନୀ ଶମନୀ ଦୁରିତାପଦାମ୍ ।
ଉମା ଗୌରୀ ସତୀ ଚଣ୍ଡୀ କାଳିକା ସା ଚ ପାର୍ବତୀ ॥ ୧୬ ॥
ଶାକମ୍ଭରୀଂ ସ୍ତୁବନ୍ ଧ୍ୟାୟଞ୍ଜପନ୍ ସମ୍ପୂଜୟନ୍ନମନ୍ ।
ଅକ୍ଷୟ୍ୟମଶ୍ନୁତେ ଶୀଘ୍ରମନ୍ନପାନାମୃତଂ ଫଳମ୍ ॥ ୧୭ ॥

---

ଶାକମ୍ଭରୀ ଦେବୀଙ୍କ ଶରୀରର କାନ୍ତି ନୀଳ ରଙ୍ଗର । ତାଙ୍କର ନେତ୍ର ନୀଳ କମଳସଦୃଶ ଅଟେ । ନାଭି ନିମ୍ନରେ ରହିଛି ଏବଂ ତ୍ରିବଳୀଦ୍ୱାରା ବିଭୂଷିତ ଉଦର (ମଧ୍ୟଭାଗ) ସୂକ୍ଷ୍ମ ଅଟେ ॥ ୧୨ ॥ ତାଙ୍କର ସ୍ତନ ଦୁଇଟି ଅତ୍ୟନ୍ତ କଠୋର, ସବୁ ଦୃଷ୍ଟିରୁ ସମାନ, ଉଚ୍ଚ, ବର୍ତ୍ତୁଳ, ସ୍ଥୂଳ ତଥା ପରସ୍ପର ସଂଲଗ୍ନ । ସେହି ପରମେଶ୍ୱରୀ କମଳରେ ନିବାସ କରନ୍ତି ଏବଂ ହସ୍ତରେ ମୁଠାଏ ଶର, କମଳ, ଶାକ-ସମୂହ ତଥା ପ୍ରକାଶମାନ ଧନୁ ଧାରଣ କରନ୍ତି । ସେହି ଶାକସମୂହ ଅନନ୍ତ ମନୋବାଞ୍ଛିତ ରସଯୁକ୍ତ ତଥା କ୍ଷୁଧା, ତୃଷା ଓ ମୃତ୍ୟୁର ଭୟକୁ ନଷ୍ଟ କରେ ଏବଂ ପୁଷ୍ପ, ପଲ୍ଲବ, ମୂଳାଦି ଓ ଫଳଗୁଡ଼ିକଦ୍ୱାରା ସମ୍ପନ୍ନ ଅଟେ । ତାଙ୍କୁ ଶାକମ୍ଭରୀ, ଶତାକ୍ଷୀ ତଥା ଦୁର୍ଗା ବୋଲି କୁହାଯାଏ ॥ ୧୩—୧୫ ॥ ସେ ଶୋକରହିତ, ଦୁଷ୍ଟଦମନକ ତଥା ପାପ ଏବଂ ବିପତ୍ତିକୁ ଶାନ୍ତ କରନ୍ତି । ସେ ହିଁ ଉମା, ଗୌରୀ, ସତୀ, ଚଣ୍ଡୀ, କାଳିକା ଓ ପାର୍ବତୀ ଅଟନ୍ତି ॥ ୧୬ ॥ ଯେଉଁ ମନୁଷ୍ୟ ଶାକମ୍ଭରୀ ଦେବୀଙ୍କ ସ୍ତୁତି, ଧ୍ୟାନ, ଜପ, ପୂଜା ଓ ବନ୍ଦନା କରେ; ସେ ଶୀଘ୍ର ଅନ୍ନ, ପାନ ଏବଂ ଅମୃତରୂପ ଅକ୍ଷୟ ଫଳର ଭାଗୀ ହୁଏ ॥ ୧୭ ॥

ଭୀମାପି ନୀଳବର୍ଣ୍ଣା ସା ଦଂଷ୍ଟ୍ରାଦଶନଭାସୁରା ।
ବିଶାଳଲୋଚନା ନାରୀ ବୃତ୍ତପୀନପୟୋଧରା ॥ ୧୮ ॥
ଚନ୍ଦ୍ରହାସଂ ଚ ଡମରୁଂ ଶିରଃ ପାତ୍ରଂ ଚ ବିଭ୍ରତୀ ।
ଏକବୀରା କାଳରାତ୍ରିଃ ସୈବୋକ୍ତା କାମଦା ସ୍ତୁତା ॥ ୧୯ ॥
ତେଜୋମଣ୍ଡଳଦୁର୍ଧର୍ଷା ଭ୍ରାମରୀ ଚିତ୍ରକାନ୍ତିଭୃତ୍ ।
ଚିତ୍ରାନୁଲେପନା ଦେବୀ ଚିତ୍ରାଭରଣଭୂଷିତା ॥ ୨୦ ॥
ଚିତ୍ରଭ୍ରମରପାଣିଃ ସା ମହାମାରୀତି ଗୀୟତେ ।
ଇତ୍ୟେତା ମୂର୍ତ୍ତୟୋ ଦେବ୍ୟା ଯାଃ ଖ୍ୟାତା ବସୁଧାଧିପ ॥ ୨୧ ॥
ଜଗନ୍ମାତୁଶ୍ଚଣ୍ଡିକାୟାଃ କୀର୍ତ୍ତିତାଃ କାମଧେନବଃ ।
ଇଦଂ ରହସ୍ୟଂ ପରମଂ ନ ବାଚ୍ୟଂ କସ୍ୟଚିତ୍ତ୍ୱୟା ॥ ୨୨ ॥
ବ୍ୟାଖ୍ୟାନଂ ଦିବ୍ୟମୂର୍ତ୍ତୀନାମଭୀଷ୍ଟଫଳଦାୟକମ୍ ।
ତସ୍ମାତ୍ ସର୍ବପ୍ରୟତ୍ନେନ ଦେବୀଂ ଜପ ନିରନ୍ତରମ୍ ॥ ୨୩ ॥

ଭୀମାଦେବୀଙ୍କ ବର୍ଣ୍ଣ ମଧ୍ୟ ନୀଳ ଅଟେ । ତାଙ୍କ ଚିବୁକ ଓ ଦାନ୍ତ ଚମକପ୍ରଦ ଅଟେ । ତାଙ୍କର ନେତ୍ର ଅତି ବିଶାଳ, ସ୍ୱରୂପ ସ୍ତ୍ରୀମାନଙ୍କ ପରି, ସ୍ତନ ବର୍ତ୍ତୁଳାକାର ଓ ସ୍ଥୂଳ ଅଟେ । ସେ ନିଜ ହସ୍ତରେ ଚନ୍ଦ୍ରହାସ ନାମକ ଖଡ୍ଗ, ଡମ୍ବରୁ, ମସ୍ତକ ଏବଂ ପାନପାତ୍ର ଧାରଣ କରନ୍ତି । ସେ ଏକବୀରା, କାଳରାତ୍ରି ତଥା କାମଦା ନାମରେ କଥିତ ଓ ପ୍ରଶଂସିତ ହୁଅନ୍ତି ॥ ୧୮-୧୯ ॥ ଭ୍ରାମରୀ ଦେବୀଙ୍କ କାନ୍ତି ବିଚିତ୍ର (ଅନେକ ରଙ୍ଗର) । ସେ ନିଜର ତେଜୋମଣ୍ଡଳ ଯୋଗୁଁ ଦୁର୍ଦ୍ଧର୍ଷ ଦେଖାଯାଆନ୍ତି । ତାଙ୍କର ଅଙ୍ଗରାଗ ମଧ୍ୟ ଅନେକ ରଙ୍ଗର ଏବଂ ସେ ଚିତ୍ର-ବିଚିତ୍ର ଆଭୂଷଣରେ ବିଭୂଷିତା ଅଟନ୍ତି ॥ ୨୦ ॥ ଚିତ୍ରଭ୍ରମରପାଣି ଓ ମହାମାରୀ ଆଦି ନାମରେ ତାଙ୍କ ମହିମା ଗାନ କରାଯାଏ । ହେ ରାଜନ୍ ! ଏହିପ୍ରକାର ଜଗନ୍ମାତା ଚଣ୍ଡିକା ଦେବୀଙ୍କର ଏହି ମୂର୍ତ୍ତିମାନଙ୍କ ବିଷୟରେ କୁହାଯାଇଛି ॥ ୨୧ ॥ ତାଙ୍କର କୀର୍ତ୍ତନ କଲେ ସେ କାମଧେନୁସଦୃଶ ସମସ୍ତ କାମନାକୁ ପୂର୍ଣ୍ଣ କରନ୍ତି । ଏହା ପରମ ଗୋପନୀୟ ରହସ୍ୟ ଅଟେ । ଏହା ତୁମେ ଅନ୍ୟ କାହାକୁ କହିବା ଉଚିତ ନୁହେଁ ॥ ୨୨ ॥ ଦିବ୍ୟ ମୂର୍ତ୍ତିମାନଙ୍କର ଏହି ଆଖ୍ୟାନ ମନୋବାଞ୍ଛିତ ଫଳ ପ୍ରଦାନ କରେ । ତେଣୁ ପୂର୍ଣ୍ଣ ପ୍ରଯତ୍ନ କରି ତୁମ୍ଭେ ନିରନ୍ତର ଦେବୀଙ୍କ ଜପ (ଆରାଧନା)ରେ ସଂଲଗ୍ନ ରୁହ ॥ ୨୩ ॥

ସପ୍ତଜନ୍ମାର୍ଜିତୈର୍ଘୋରୈର୍ବ୍ରହ୍ମହତ୍ୟାସମୈରପି ।
ପାଠମାତ୍ରେଣ ମନ୍ତ୍ରାଣାଂ ମୁଚ୍ୟତେ ସର୍ବକିଲ୍ବିଷୈଃ ॥ ୨୪ ॥
ଦେବ୍ୟା ଧ୍ୟାନଂ ମୟା ଖ୍ୟାତଂ ଗୁହ୍ୟାଦ୍ ଗୁହ୍ୟତରଂ ମହତ୍ ।
ତସ୍ମାତ୍ ସର୍ବପ୍ରଯତ୍ନେନ ସର୍ବକାମଫଳପ୍ରଦମ୍ ॥ ୨୫ ॥
(ଏତସ୍ୟାସ୍ତ୍ୱଂ ପ୍ରସାଦେନ ସର୍ବମାନ୍ୟୋ ଭବିଷ୍ୟସି ।
ସର୍ବରୂପମୟୀ ଦେବୀ ସର୍ବଂ ଦେବୀମୟଂ ଜଗତ୍ ।
ଅତୋଽହଂ ବିଶ୍ୱରୂପାଂ ତାଂ ନମାମି ପରମେଶ୍ୱରୀମ୍ ।)

ଇତି ମୂର୍ତ୍ତିରହସ୍ୟଂ ସମ୍ପୂର୍ଣ୍ଣମ୍*



ସପ୍ତଶତୀ ମନ୍ତ୍ରର ପାଠମାତ୍ରକେ ମନୁଷ୍ୟ ସପ୍ତଜନ୍ମରେ ଉପାର୍ଜିତ ବ୍ରହ୍ମହତ୍ୟାସଦୃଶ ଘୋର ପାତକ ଏବଂ ସମସ୍ତ କଳୁଷରୁ ମୁକ୍ତ ହୋଇଯାଏ ॥ ୨୪ ॥ ତେଣୁ ମୁଁ ପୂର୍ଣ୍ଣ ପ୍ରଯତ୍ନ କରି ଦେବୀଙ୍କ ଗୋପନୀୟରୁ ଅତ୍ୟନ୍ତ ଗୋପନୀୟ ଧ୍ୟାନର ବର୍ଣ୍ଣନା କଲି; ଯାହା ସବୁ ପ୍ରକାରର ମନୋବାଞ୍ଛିତ ଫଳ ପ୍ରଦାନ କରେ ॥ ୨୫ ॥ (ତାଙ୍କ ପ୍ରସାଦରୁ ତୁମ୍ଭେ ସର୍ବମାନ୍ୟ ହୋଇଯିବ। ଦେବୀ ସର୍ବରୂପମୟୀ ଅଟନ୍ତି ତଥା ସମସ୍ତ ଜଗତ୍ ଦେବୀମୟ ଅଟେ। ତେଣୁ ମୁଁ ସେହି ବିଶ୍ୱରୂପା ପରମେଶ୍ୱରୀଙ୍କୁ ନମସ୍କାର କରୁଛି।)



* ଏହାପରେ ପ୍ରାରମ୍ଭରେ ନିର୍ଦ୍ଦେଶିତ ରୀତି ଅନୁସାରେ ଶାପୋଦ୍ଧାର କରିବା ପରେ ପରବର୍ତ୍ତୀ ପୃଷ୍ଠାର ଶ୍ଳୋକ ପାଠ କରି ଦେବୀଙ୍କୁ ନିଜ ଅପରାଧ ନିମନ୍ତେ କ୍ଷମା ପ୍ରାର୍ଥନା କରିବା ଉଚିତ।

# କ୍ଷମା-ପ୍ରାର୍ଥନା

ଅପରାଧସହସ୍ରାଣି କ୍ରିୟନ୍ତେଽହର୍ନିଶଂ ମୟା ।
ଦାସୋଽୟମିତି ମାଂ ମତ୍ୱା କ୍ଷମସ୍ୱ ପରମେଶ୍ୱରି ॥ ୧ ॥
ଆବାହନଂ ନ ଜାନାମି ନ ଜାନାମି ବିସର୍ଜନମ୍ ।
ପୂଜାଂ ଚୈବ ନ ଜାନାମି କ୍ଷମ୍ୟତାଂ ପରମେଶ୍ୱରି ॥ ୨ ॥
ମନ୍ତ୍ରହୀନଂ କ୍ରିୟାହୀନଂ ଭକ୍ତିହୀନଂ ସୁରେଶ୍ୱରି ।
ଯତ୍ପୂଜିତଂ ମୟା ଦେବି ପରିପୂର୍ଣ୍ଣଂ ତଦସ୍ତୁ ମେ ॥ ୩ ॥
ଅପରାଧଶତଂ କୃତ୍ୱା ଜଗଦମ୍ବେତି ଚୋଚ୍ଚରେତ୍ ।
ଯାଂ ଗତିଂ ସମବାପ୍ନୋତି ନ ତାଂ ବ୍ରହ୍ମାଦୟଃ ସୁରାଃ ॥ ୪ ॥
ସାପରାଧୋଽସ୍ମି ଶରଣଂ ପ୍ରାପ୍ତସ୍ତ୍ୱାଂ ଜଗଦମ୍ବିକେ ।
ଇଦାନୀମନୁକମ୍ପ୍ୟୋଽହଂ ଯଥେଚ୍ଛସି ତଥା କୁରୁ ॥ ୫ ॥
ଅଜ୍ଞାନାଦ୍ୱିସ୍ମୃତେର୍ଭ୍ରାନ୍ତ୍ୟା ଯନ୍ନ୍ୟୂନମଧିକଂ କୃତମ୍ ।
ତତ୍ସର୍ବଂ କ୍ଷମ୍ୟତାଂ ଦେବି ପ୍ରସୀଦ ପରମେଶ୍ୱରି ॥ ୬ ॥

---

ହେ ପରମେଶ୍ୱରି ! ମୋଦ୍ୱାରା ରାତିଦିନ ହଜାର ହଜାର ଅପରାଧ ହେଉଛି । 'ଏ ମୋର ଦାସ' ବୋଲି ମନେକରି ମୋର ଅପରାଧକୁ ତୁମେ କୃପାପୂର୍ବକ କ୍ଷମା କର ॥ ୧ ॥ ହେ ପରମେଶ୍ୱରି ! ମୁଁ ଆବାହନ ଜାଣି ନାହିଁ; ବିସର୍ଜନ କରିବା ମଧ୍ୟ ଜାଣି ନାହିଁ ତଥା ପୂଜା କରିବାର ପ୍ରକୃତ ମାର୍ଗ ମଧ୍ୟ ଜାଣି ନାହିଁ। ମୋତେ କ୍ଷମା କର ॥ ୨ ॥ ହେ ଦେବି ! ହେ ସୁରେଶ୍ୱରି ! ମୁଁ ଯେଉଁ ମନ୍ତ୍ରହୀନ, କ୍ରିୟାହୀନ ଏବଂ ଭକ୍ତିହୀନ ପୂଜା କରିଛି; ସେସବୁ ଆପଣଙ୍କ କୃପାରୁ ପୂର୍ଣ୍ଣ ହେଉ ॥ ୩ ॥ ଶତାଧିକ ଅପରାଧ କରି ମଧ୍ୟ ଯିଏ ତୁମର ଶରଣରେ ଯାଇ 'ଜଗଦମ୍ବା' କହି ପ୍ରାର୍ଥନା କରେ; ସେ ସେହି ଉତ୍ତମ ଗତିକୁ ପ୍ରାପ୍ତ ହୁଏ, ଯାହାକି ବ୍ରହ୍ମାଦି ଦେବତାମାନଙ୍କ ନିମନ୍ତେ ମଧ୍ୟ ସୁଲଭ ନୁହେଁ ॥ ୪ ॥ ହେ ଜଗଦମ୍ବିକା ! ମୁଁ ଅପରାଧୀ ଅଟେ, କିନ୍ତୁ ତୁମ୍ଭ ଶରଣରେ ଆସିଛି । ଏହି ସମୟରେ ଦୟାର ପାତ୍ର ଅଟେ। ତୁମ୍ଭେ ଯେପରି ଇଚ୍ଛା କରୁଛ; ତାହା ହିଁ କର ॥ ୫ ॥ ହେ ଦେବି ! ହେ ପରମେଶ୍ୱରି ! ଅଜ୍ଞାନହେତୁ, ଭ୍ରମବଶତଃ

**କାମେଶ୍ୱରି ଜଗନ୍ମାତଃ ସଚ୍ଚିଦାନନ୍ଦବିଗ୍ରହେ ।**
**ଗୃହାଣାର୍ଚ୍ଚାମିମାଂ ପ୍ରୀତ୍ୟା ପ୍ରସୀଦ ପରମେଶ୍ୱରି ॥ ୭ ॥**
**ଗୁହ୍ୟାତିଗୁହ୍ୟଗୋପ୍ତ୍ରୀ ତ୍ୱଂ ଗୃହାଣାସ୍ମତ୍କୃତଂ ଜପମ୍ ।**
**ସିଦ୍ଧିର୍ଭବତୁ ମେ ଦେବି ତ୍ୱତ୍ପ୍ରସାଦାତ୍ ସୁରେଶ୍ୱରି ॥ ୮ ॥**

॥ ଶ୍ରୀଦୁର୍ଗାର୍ପଣମସ୍ତୁ ॥



ଅଥବା ବୁଦ୍ଧି ଭ୍ରାନ୍ତ ହେବାରୁ ମୁଁ ଯେଉଁ ନ୍ୟୂନତା ବା ଅଧିକତା କରିଛି; ସେସବୁ କ୍ଷମା କର ଏବଂ ପ୍ରସନ୍ନ ହୁଅ ॥ ୬ ॥ ସଚ୍ଚିଦାନନ୍ଦସ୍ୱରୂପା ହେ ପରମେଶ୍ୱରି ! ହେ ଜଗନ୍ମାତା କାମେଶ୍ୱରି ! ତୁମ୍ଭେ ପ୍ରେମପୂର୍ବକ ମୋର ଏହି ପୂଜା ସ୍ୱୀକାର କର ଏବଂ ମୋ ଉପରେ ପ୍ରସନ୍ନ ରୁହ ॥ ୭ ॥ ହେ ଦେବି ! ହେ ସୁରେଶ୍ୱରି ! ତୁମେ ଗୋପନୀୟରୁ ଅଧିକ ଗୋପନୀୟ ବସ୍ତୁକୁ ରକ୍ଷା କରିବାକୁ ସମର୍ଥ । ମୁଁ ନିବେଦନ କରିଥିବା ଏହି ଜପକୁ ଗ୍ରହଣ କର । ତୁମ୍ଭ କୃପାରୁ ମୋତେ ସିଦ୍ଧି ପ୍ରାପ୍ତ ହେଉ ॥ ୮ ॥



# ଶ୍ରୀଦୁର୍ଗାମାନସପୂଜା

ଉଦ୍ୟଚ୍ଚନ୍ଦନକୁଙ୍କୁମାରୁଣପୟୋଧାରାଭିରାପ୍ଲାବିତାଂ
ନାନାନର୍ଘ୍ୟମଣିପ୍ରବାଳଘଟିତାଂ ଦତ୍ତାଂ ଗୃହାଣାମ୍ବିକେ ।
ଆମୃଷ୍ଟାଂ ସୁରସୁନ୍ଦରୀଭିରଭିତୋ ହସ୍ତାମ୍ବୁଜୈର୍ଭକ୍ତିତୋ
ମାତଃ ସୁନ୍ଦରି ଭକ୍ତକଳ୍ପଲତିକେ ଶ୍ରୀପାଦୁକାମାଦରାତ୍ ॥ ୧ ॥
ଦେବେନ୍ଦ୍ରାଦିଭିରର୍ଚ୍ଚିତଂ ସୁରଗଣୈରାଦାୟ ସିଂହାସନଂ
ଚଞ୍ଚତ୍କାଞ୍ଚନସଞ୍ଚୟାଭିରଚିତଂ ଚାରୁପ୍ରଭାଭାସ୍ୱରମ୍ ।
ଏତଚ୍ଚମ୍ପକକେତକୀପରିମଳଂ ତୈଳଂ ମହାନିର୍ମଳଂ
ଗନ୍ଧୋଦ୍ୱର୍ତ୍ତନମାଦରେଣ ତରୁଣୀଦତ୍ତଂ ଗୃହାଣାମ୍ବିକେ ॥ ୨ ॥
ପଶ୍ଚାଦ୍ଦେବି ଗୃହାଣ ଶମ୍ଭୁଗୃହିଣି ଶ୍ରୀସୁନ୍ଦରି ପ୍ରାୟଶୋ
ଗନ୍ଧଦ୍ରବ୍ୟସମୂହନିର୍ଭରତରଂ ଧାତ୍ରୀଫଳଂ ନିର୍ମଳମ୍ ।

---

ହେ ମାତା ତ୍ରିପୁରସୁନ୍ଦରି ! ତୁମେ ଭକ୍ତଜନଙ୍କ ମନୋବାଞ୍ଛା ପୂର୍ଣ୍ଣକାରିଣୀ କଳ୍ପଲତା ଅଟ । ହେ ମାତଃ ! ଏହି ପାଦୁକା ଆଦରର ସହିତ ତୁମ ଶ୍ରୀଚରଣରେ ସମର୍ପଣ କରୁଛି । ଏହାକୁ ଗ୍ରହଣ କର । ଉତ୍ତମ ଚନ୍ଦନ ଓ କୁଙ୍କୁମମିଶ୍ରିତ ରକ୍ତବର୍ଣ୍ଣର ଜଳଧାରାରେ ଏହାକୁ ଧୌତ କରାଯାଇଛି । ଭଳି କି ଭଳି ବହୁମୂଲ୍ୟ ମଣି ତଥା ପ୍ରବାଳଦ୍ୱାରା ଏହା ନିର୍ମିତ ହୋଇଛି ଏବଂ ଅନେକ ଦେବାଙ୍ଗନାମାନେ ନିଜ କରକମଳଦ୍ୱାରା ଭକ୍ତିପୂର୍ବକ ଏହାକୁ ସର୍ବତ୍ର ଧୌତ କରି ପୋଛି ସ୍ୱଚ୍ଛ କରିଦେଇଛନ୍ତି ॥ ୧ ॥

ହେ ମାତା ! ଦେବତାମାନେ ତୁମେ ବସିବା ପାଇଁ ଏହି ଦିବ୍ୟ ସିଂହାସନକୁ ସ୍ଥାପନ କରିଛନ୍ତି । ଏହା ଉପରେ ବିରାଜମାନ ହୁଅ, ଯାହାକୁ ଦେବରାଜ ଇନ୍ଦ୍ର ଆଦି ମଧ୍ୟ ପୂଜା କରନ୍ତି । ନିଜ କାନ୍ତିଦ୍ୱାରା ଦେଦୀପ୍ୟମାନ ରାଶି ରାଶି ସୁବର୍ଣ୍ଣରେ ଏହାକୁ ନିର୍ମାଣ କରାଯାଇଛି । ଏହା ନିଜ ମନୋହର ପ୍ରଭାଦ୍ୱାରା ସର୍ବଦା ପ୍ରକାଶମାନ ରହେ । ଏତଦ୍‌ବ୍ୟତୀତ ଏହି ଚମ୍ପା ଏବଂ କେତକୀର ସୁଗନ୍ଧରେ ପୂର୍ଣ୍ଣ ଅତ୍ୟନ୍ତ ନିର୍ମଳ ତୈଳ ଓ ସୁଗନ୍ଧଯୁକ୍ତ ଦ୍ରବ୍ୟ ରଖାଯାଇଛି । ଏହାକୁ ଦିବ୍ୟ ଯୁବତୀଗଣ ଆଦରପୂର୍ବକ ତୁମର ସେବା ଉଦ୍ଦେଶ୍ୟରେ ପ୍ରସ୍ତୁତ କରିଛନ୍ତି । ଦୟା କରି ଏହାକୁ ଗ୍ରହଣ କର ॥ ୨ ॥

ହେ ଦେବି ! ଏହାପରେ ଏହି ବିଶୁଦ୍ଧ ଅଁଅଳା ଫଳ ଗ୍ରହଣ କର ।

ତତ୍‌କେଶାନ୍ ପରିଶୋଧ୍ୟ କଙ୍କତିକୟା ମନ୍ଦାକିନୀସ୍ରୋତସି
ସ୍ନାତ୍ୱା ପ୍ରୋଜ୍ଜ୍ୱଳଗନ୍ଧକଂ ଭବତୁ ହେ ଶ୍ରୀସୁନ୍ଦରି ତ୍ୱନ୍ମୁଦେ ॥ ୩ ॥
ସୁରାଧିପତିକାମିନୀକରସରୋଜନାଳୀଧୃତାଂ
ସଚନ୍ଦନସକୁଙ୍କୁମାଗୁରୁଭରେଣ ବିଭ୍ରାଜିତାମ୍ ।
ମହାପରିମଳୋଜ୍ଜ୍ୱଳାଂ ସରସଶୁଦ୍ଧକସ୍ତୂରିକାଂ
ଗୃହାଣ ବରଦାୟିନି ତ୍ରିପୁରସୁନ୍ଦରି ଶ୍ରୀପ୍ରଦେ ॥ ୪ ॥
ଗନ୍ଧର୍ବାମରକିନ୍ନରପ୍ରିୟତମାସନ୍ତାନହସ୍ତାମ୍ବୁଜ-
ପ୍ରସ୍ତାରୈର୍ଧ୍ରିୟମାଣମୁତ୍ତମତରଂ କାଶ୍ମୀରଜାପିଞ୍ଜରମ୍ ।
ମାତର୍ଭାସ୍ୱରଭାନୁମଣ୍ଡଳଲସତ୍‌କାନ୍ତିପ୍ରଦାନୋଜ୍ଜ୍ୱଳଂ
ଚୈତନ୍ନିର୍ମଳମାତନୋତୁ ବସନଂ ଶ୍ରୀସୁନ୍ଦରି ତ୍ୱନ୍ମୁଦମ୍ ॥ ୫ ॥

ହେ ଶିବପ୍ରିୟେ ! ହେ ତ୍ରିପୁରସୁନ୍ଦରି ! ପ୍ରାୟ ଯେତେ ସୁଗନ୍ଧିତ ପଦାର୍ଥ ରହିଛି, ଏହି ଅଁଅଳାରେ ସେସବୁ ପକାଯାଇଛି । ଫଳରେ ଏହା ପରମ ସୁଗନ୍ଧିତ ହୋଇଛି । ତେଣୁ ଏହାକୁ ଲଗାଇ ବାଳକୁ ପାନିଆଦ୍ୱାରା ଝାଡ଼ିଦିଅ ଏବଂ ଗଙ୍ଗାର ପବିତ୍ର ସ୍ରୋତରେ ସ୍ନାନ କର । ଏହାପରେ ଏହି ଦିବ୍ୟ ଗନ୍ଧ ତୁମ ସେବା ପାଇଁ ପ୍ରସ୍ତୁତ ରହିଛି । ଏହା ତୁମର ଆନନ୍ଦ ବୃଦ୍ଧିକାରକ ହେଉ ॥ ୩ ॥

ହେ ସଂପତ୍ତିପ୍ରଦାନକାରିଣୀ ବରଦାୟିନୀ ତ୍ରିପୁରସୁନ୍ଦରି ! ଏହି ସରସ ଶୁଦ୍ଧ କସ୍ତୂରୀ ଗ୍ରହଣ କର । ଏହାକୁ ସ୍ୱୟଂ ଦେବରାଜ ଇନ୍ଦ୍ରଙ୍କ ପତ୍ନୀ ମହାରାଣୀ ଶଚୀ ନିଜ କରକମଳରେ ଧରି ସେବା ପାଇଁ ଦଣ୍ଡାୟମାନ ହୋଇଛନ୍ତି । ଏଥିରେ ଚନ୍ଦନ, କୁଙ୍କୁମ ତଥା ଅଗୁରୁ ମିଶିଥିବାରୁ ଏହାର ଶୋଭା ବର୍ଦ୍ଧିତ ହୋଇଛି । ଏଥିରୁ ବହୁତ ଅଧିକ ସୁଗନ୍ଧ ନିର୍ଗତ ହେବାରୁ ଏହା ଅତି ମନୋହର ପ୍ରତୀୟମାନ ହେଉଛି ॥ ୪ ॥

ହେ ମା ଶ୍ରୀସୁନ୍ଦରି ! ଏହି ପରମ ଉତ୍ତମ ନିର୍ମଳ ବସ୍ତ୍ର ଆପଣଙ୍କ ସେବାରେ ସମର୍ପିତ ହେଉଛି । ଏହା ତୁମର ହର୍ଷବର୍ଦ୍ଧକ ହେଉ । ହେ ମାତଃ ! ଗନ୍ଧର୍ବ, ଦେବତା ତଥା କିନ୍ନରମାନଙ୍କ ପ୍ରେୟସୀ ସୁନ୍ଦରୀମାନେ ନିଜ କରକମଳରେ ଏହାକୁ ଧାରଣ କରି ଦଣ୍ଡାୟମାନ ହୋଇଛନ୍ତି । ଏହା କେସରରେ ରଙ୍ଗାଯାଇଥିବା ପୀତାମ୍ବର ଅଟେ । ଏଥିରୁ ପରମ ପ୍ରକାଶମାନ ସୂର୍ଯ୍ୟମଣ୍ଡଳର ଶୋଭାମୟୀ ଦିବ୍ୟକାନ୍ତି ନିର୍ଗତ ହେଉଛି । ତେଣୁ ଏହା ବିଶେଷଭାବରେ ସୁଶୋଭିତ ହେଉଅଛି ॥ ୫ ॥

ସ୍ୱର୍ଣ୍ଣାକଳ୍ପିତକୁଣ୍ଡଳେ ଶ୍ରୁତିଯୁଗେ ହସ୍ତାମ୍ବୁଜେ ମୁଦ୍ରିକା
ମଧ୍ୟେ ସାରସନା ନିତମ୍ବଫଳକେ ମଞ୍ଜୀରମଂଘ୍ରିଦ୍ୱୟେ ।
ହାରୋ ବକ୍ଷସି କଙ୍କଣୌ କ୍ୱଣରଣତ୍କାରୌ କରଦ୍ୱନ୍ଦ୍ୱକେ
ବିନ୍ୟସ୍ତଂ ମୁକୁଟଂ ଶିରସ୍ୟନୁଦିନଂ ଦତ୍ତୋନ୍ମଦଂ ସ୍ତୂୟତାମ୍ ॥ ୬ ॥
ଗ୍ରୀବାୟାଂ ଧୃତକାନ୍ତିକାନ୍ତପଟଳଂ ଗ୍ରୈବେୟକଂ ସୁନ୍ଦରଂ
ସିନ୍ଦୂରଂ ବିଲସଲ୍ଲଲାଟଫଳକେ ସୌନ୍ଦର୍ଯ୍ୟମୁଦ୍ରାଧରମ୍ ।
ରାଜତ୍କଜ୍ଜଳମୁଜ୍ଜ୍ୱଳୋତ୍ପଳଦଳଶ୍ରୀମୋଚନେ ଲୋଚନେ
ତଦ୍ଦିବ୍ୟୌଷଧିନିର୍ମିତଂ ରଚୟତୁ ଶ୍ରୀଶାମ୍ଭବି ଶ୍ରୀପ୍ରଦେ ॥ ୭ ॥
ଅମନ୍ଦତରମନ୍ଦରୋନ୍ମଥିତଦୁଗ୍ଧସିନ୍ଧୂଦ୍ଭବଂ
ନିଶାକରକରୋପମଂ ତ୍ରିପୁରସୁନ୍ଦରି ଶ୍ରୀପ୍ରଦେ ।
ଗୃହାଣ ମୁଖମୀକ୍ଷିତୁଂ ମୁକୁରବିମ୍ବମାବିଦ୍ରୁମୈ-
ର୍ବିନିର୍ମିତମଘଚ୍ଛିଦେ ରତିକରାମ୍ବୁଜସ୍ଥାୟିନମ୍ ॥ ୮ ॥

ତୁମ୍ଭର କର୍ଣ୍ଣଦ୍ୱୟରେ ସୁବର୍ଣ୍ଣ ନିର୍ମିତ କୁଣ୍ଡଳ ଚିକ୍‌ମିକ୍ କରୁ, କରକମଳର ଏକ ଅଙ୍ଗୁଳିରେ ମୁଦ୍ରିକା ଶୋଭା ପାଉ, କଟିଭାଗର ନିତମ୍ବ ପ୍ରଦେଶରେ ଅଣ୍ଟାସୂତା ଶୋଭାପାଉ । ଦୁଇ ଚରଣରେ ନୂପୁର ମୁଖରିତ ହେଉ, ବକ୍ଷଃସ୍ଥଳରେ ହାର ସୁଶୋଭିତ ହେଉ ଏବଂ ଦୁଇ ହସ୍ତ କଚଟିରେ କଙ୍କଣ ଝଂକୃତ ହେଉ । ତୁମ୍ଭ ମସ୍ତକ ଉପରେ ରଖା ଯାଇଥିବା ଦିବ୍ୟ ମୁକୁଟ ପ୍ରତିଦିନ ଆନନ୍ଦ ପ୍ରଦାନ କରୁ । ଏହି ସବୁ ଆଭୂଷଣ ପ୍ରଶଂସାର ଯୋଗ୍ୟ ଅଟେ ॥ ୬ ॥

ହେ ଧନପ୍ରଦାନକାରିଣୀ ଶିବପ୍ରିୟା ପାର୍ବତୀ ! ତୁମେ କଣ୍ଠରେ ବହୁତ ସୁନ୍ଦର ହାର ପରିଧାନ କର । ଲଲାଟର ମଧ୍ୟଭାଗରେ ସୌନ୍ଦର୍ଯ୍ୟର ମୁଦ୍ରା(ଚିହ୍ନ) ଧାରଣ କରୁଥିବା ସିନ୍ଦୂରର ଟିପା ଲଗାଅ ତଥା ଅତ୍ୟନ୍ତ ସୁନ୍ଦର ପଦ୍ମପତ୍ରର ଶୋଭାକୁ ତିରସ୍କୃତ କରୁଥିବା ନେତ୍ରରେ ଏହି କଜ୍ଜ୍ୱଳ ଲଗାଅ । ଏହି କଜ୍ଜ୍ୱଳ ଦିବ୍ୟ ଔଷଧିଦ୍ୱାରା ପ୍ରସ୍ତୁତ ହୋଇଛି ॥ ୭ ॥

ହେ ପାପବିନାଶିନୀ ସମ୍ପତ୍ତିଦାୟିନୀ ତ୍ରିପୁରସୁନ୍ଦରି ! ନିଜ ମୁଖର ଶୋଭା ଅବଲୋକନ କରିବା ପାଇଁ ଏହି ଦର୍ପଣ ଗ୍ରହଣ କର । ସାକ୍ଷାତ୍ ରତି ରାଣୀ ଏହାକୁ ନିଜ କର-କମଳରେ ଧାରଣ କରି ସେବାରେ ଉପସ୍ଥିତ ଅଛନ୍ତି । ଏହି ଦର୍ପଣର ଚତୁଃପାର୍ଶ୍ୱରେ ବୈଦୂର୍ଯ୍ୟ ଖଚିତ ହୋଇଛି । ପ୍ରବଳ ବେଗରେ ଘୁରୁଥିବା

କସ୍ତୂରୀଦ୍ରବଚନ୍ଦନାଗୁରୁସୁଧାଧାରାଭିରାପ୍ଲାବିତଂ
ଚଞ୍ଚଚ୍ଚମ୍ପକପାଟଳାଦିସୁରଭିଦ୍ରବ୍ୟୈଃ ସୁଗନ୍ଧୀକୃତମ୍ ।
ଦେବସ୍ତ୍ରୀଗଣମସ୍ତକସ୍ଥିତମହାରତ୍ନାଦିକୁମ୍ଭବ୍ରଜୈ-
ରମ୍ଭଃଶାମ୍ଭବି ସଂଭ୍ରମେଣ ବିମଳଂ ଦତ୍ତଂ ଗୃହାଣାମ୍ବିକେ ॥ ୯ ॥
କହ୍ଲାରୋତ୍ପଲନାଗକେସରସରୋଜାଖ୍ୟାବଲୀମାଲତୀ-
ମଲ୍ଲୀକୈରବକେତକାଦିକୁସୁମୈ ରକ୍ତାଶ୍ୱମାରାଦିଭିଃ ।
ପୁଷ୍ପୈର୍ମାଲ୍ୟଭରେଣ ବୈ ସୁରଭିଣା ନାନାରସସ୍ରୋତସା
ତାମ୍ରାମ୍ଭୋଜନିବାସିନୀଂ ଭଗବତୀଂ ଶ୍ରୀଚଣ୍ଡିକାଂ ପୂଜୟେ ॥ ୧୦ ॥
ମାଂସୀଗୁଗ୍‌ଗୁଲଚନ୍ଦନାଗୁରୁରଜଃକର୍ପୂରଶୈଳେୟଜୈ-
ର୍ମାଧ୍ୱୀକୈଃ ସହ କୁଙ୍କୁମୈଃ ସୁରଚିତୈଃ ସର୍ପିର୍ଭିରାମିଶ୍ରିତୈଃ ।
ସୌରଭ୍ୟସ୍ଥିତିମନ୍ଦିରେ ମଣିମୟେ ପାତ୍ରେ ଭବେତ୍ ପ୍ରୀତୟେ
ଧୂପୋଽୟଂ ସୁରକାମିନୀବିରଚିତଃ ଶ୍ରୀଚଣ୍ଡିକେ ତ୍ୱନ୍ମୁଦେ ॥ ୧୧ ॥

---

ମନ୍ଦରାଚଳର ଖୁଆବାଡ଼ିଦ୍ୱାରା ଯେତେବେଳେ କ୍ଷୀର ସମୁଦ୍ର ମନ୍ଥିତ ହେଲା; ସେହି ସମୟରେ ଏହି ଦର୍ପଣ ସେଥିରୁ ପ୍ରକଟ ହୋଇଥିଲା । ଏହା ଚନ୍ଦ୍ରମାର କିରଣ ସମାନ ଉଜ୍ଜ୍ୱଳ ॥ ୮ ॥

ଭଗବାନ୍ ଶଙ୍କରଙ୍କ ଧର୍ମପତ୍ନୀ ହେ ପାର୍ବତୀ ଦେବି ! ଦେବାଙ୍ଗନାଙ୍କ ମସ୍ତକ ଉପରେ ରଖାଯାଇଥିବା ବହୁମୂଲ୍ୟ ରତ୍ନମୟ କଳଶଗୁଡ଼ିକର ନିର୍ମଳ ଜଳ ଅତି ସମ୍ଭ୍ରମରେ ଆପଣଙ୍କୁ ଦିଆଯାଉଛି, ଏହାକୁ ଗ୍ରହଣ କରନ୍ତୁ । ଏହାକୁ ଚମ୍ପା ଓ ଗୋଲାପ ଆଦି ସୁଗନ୍ଧିତ ଦ୍ରବ୍ୟଦ୍ୱାରା ସୁବାସିତ କରାଯାଇଛି ତଥା ଏହା କସ୍ତୁରୀରସ, ଚନ୍ଦନ, ଅଗୁରୁ ଓ ସୁଧାଧାରାରେ ଆପ୍ଲାବିତ ହୋଇଛି ॥ ୯ ॥

ମୁଁ କହ୍ଲାର, ଉତ୍ପଳ, ନାଗକେଶର, କମଳ, ମାଳତୀ, ମଲ୍ଲିକା, କୁମୁଦ, କେତକୀ ଓ ରକ୍ତ କନିଅର ଆଦି ପୁଷ୍ପଦ୍ୱାରା, ସୁଗନ୍ଧିତ ପୁଷ୍ପମାଳଦ୍ୱାରା ତଥା ନାନାପ୍ରକାରର ରସଧାରା ଦ୍ୱାରା ରକ୍ତକମଳ ମଧ୍ୟରେ ନିବାସ କରୁଥିବା ଭଗବତୀ ଶ୍ରୀଚଣ୍ଡିକା ଦେବୀଙ୍କୁ ପୂଜା କରୁଛି ॥ ୧୦ ॥

ହେ ଶ୍ରୀଚଣ୍ଡିକା ଦେବି ! ଦେବବଧୂମାନଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିବା ଏହି ଦିବ୍ୟ ଧୂପ ତୁମ୍ଭର ପ୍ରସନ୍ନତା ବୃଦ୍ଧିକାରକ ହେଉ । ଏହି ଧୂପ ରତ୍ନମୟ ପାତ୍ରରେ ରଖାଯାଇଛି, ଯାହା ସୁଗନ୍ଧର ନିବାସସ୍ଥାନ ଅଟେ । ଏହା ତୁମକୁ ସନ୍ତୋଷ ପ୍ରଦାନ କରୁ । ଏଥିରେ ପୁଷ୍ପର ମଞ୍ଜୀର, ଗୁଗ୍‌ଗୁଳ, ଚନ୍ଦନ, ଅଗୁରୁ, କର୍ପୂର, ଶିଳାଜିତ, ମଧୁ, କୁଙ୍କୁମ ତଥା ଘୃତ ମିଶ୍ରଣ କରି ଉତ୍ତମ ବ୍ୟବସ୍ଥାରେ ପ୍ରସ୍ତୁତ କରାଯାଇଛି ॥ ୧୧ ॥

ଘୃତଦ୍ରବପରିସ୍ଫୁରଦ୍ରୁଚିରରତ୍ନଯଷ୍ଟ୍ୟାନ୍ୱିତୋ
　　ମହାତିମିରନାଶନଃ　　ସୁରନିତମ୍ବିନୀନିର୍ମିତଃ ।
ସୁବର୍ଣ୍ଣଚଷକସ୍ଥିତଃ　　ସଘନସାରବର୍ତ୍ତ୍ୟାନ୍ୱିତ-
　　ସ୍ତବ ତ୍ରିପୁରସୁନ୍ଦରି ସ୍ଫୁରତି ଦେବି ଦୀପୋ ମୁଦେ ॥ ୧୨ ॥
ଜାତୀସୌରଭନିର୍ଭରଂ ରୁଚିକରଂ ଶାଲ୍ୟୋଦନଂ ନିର୍ମଳଂ
　　ଯୁକ୍ତଂ ହିଙ୍ଗୁମରୀଚଜୀରସୁରଭିଦ୍ରବ୍ୟାନ୍ୱିତୈର୍ବ୍ୟଞ୍ଜନୈଃ ।
ପକ୍ୱାନ୍ନେନ ସପାୟସେନ ମଧୁନା ଦଧ୍ୟାଜ୍ୟସମ୍ମିଶ୍ରିତଂ
　　ନୈବେଦ୍ୟଂ ସୁରକାମିନୀବିରଚିତଂ ଶ୍ରୀଚଣ୍ଡିକେ ତ୍ୱନ୍ମୁଦେ ॥ ୧୩ ॥
ଲବଙ୍ଗକଲିକୋଜ୍ଜ୍ୱଲଂ　　ବହୁଳନାଗବଲ୍ଲୀଦଳଂ
　　ସଜାତିଫଳକୋମଳଂ　　ସଘନସାରପୂଗୀଫଳମ୍ ।
ସୁଧାମଧୁରିମାକୁଳଂ　　ରୁଚିରରତ୍ନପାତ୍ରସ୍ଥିତଂ
　　ଗୃହାଣ ମୁଖପଙ୍କଜେ ସ୍ଫୁରିତମମ୍ବ ତାମ୍ବୂଳକମ୍ ॥ ୧୪ ॥

ହେ ଦେବୀ ତ୍ରିପୁରସୁନ୍ଦରି ! ତୁମ୍ଭର ପ୍ରସନ୍ନତା ପାଇଁ ଏଠାରେ ଏହି ଦୀପ ପ୍ରକାଶିତ ହେଉଛି । ଏହା ଘୃତଦ୍ୱାରା ଜଳୁଛି । ଏହାର ଦୀପସ୍ତମ୍ଭ ମଧ୍ୟ ସୁନ୍ଦର ରତ୍ନଦ୍ୱାରା ନିର୍ମିତ ହୋଇଛି । ଏହାକୁ ଦେବାଙ୍ଗନାମାନେ ନିର୍ମାଣ କରିଛନ୍ତି । ଏହି ଦୀପ ସୁବର୍ଣ୍ଣର ଚଷକ(ପାତ୍ର)ରେ ଜଳାଯାଇଛି । ଏଥିରେ କର୍ପୂର ସହିତ ବତୀ ରଖାଯାଇଛି । ଏହା ଘନ ଅନ୍ଧକାରକୁ ବିନାଶ କରେ ॥ ୧୨ ॥

ହେ ଶ୍ରୀଚଣ୍ଡିକା ଦେବି ! ଦେବବଧୂମାନେ ତୁମ୍ଭର ଆନନ୍ଦ ନିମନ୍ତେ ଏହି ଦିବ୍ୟ ନୈବେଦ୍ୟ ପ୍ରସ୍ତୁତ କରିଛନ୍ତି । ଏଥିରେ ଶୁକ୍ଳ ଧାନର ସ୍ୱଚ୍ଛ ଅନ୍ନ ରହିଛି; ଯାହା ବହୁତ ରୁଚିକର ଏବଂ ମାଳତୀର ସୁଗନ୍ଧରେ ସୁବାସିତ ଅଟେ । ଏହା ସହିତ ହେଙ୍ଗୁ, ଲଙ୍କା ଏବଂ ଜିରା ଆଦି ସୁଗନ୍ଧିତ ଦ୍ରବ୍ୟରେ ଛୁଙ୍କ କରି ନାନାପ୍ରକାରର ବ୍ୟଞ୍ଜନ ମଧ୍ୟ ଅଛି । ଏଥିରେ ଭଳି କି ଭଳି ପକ୍ୱାନ୍ନ, ଖୀରି, ମହୁ, ଦହି ଏବଂ ଘୃତ ମିଶ୍ରିତ ହୋଇଛି ॥ ୧୩ ॥

ହେ ମାତଃ ! ସୁନ୍ଦର ରତ୍ନମୟ ପାତ୍ରରେ ସଜାଡ଼ି ରଖାଯାଇଥିବା ଏହି ଦିବ୍ୟ ତାମ୍ବୂଳ ନିଜ ମୁଖରେ ଗ୍ରହଣ କରନ୍ତୁ । ଲବଙ୍ଗର କଢ଼ ଫୁଟାଇ ଏହି ପାନ ଭଙ୍ଗା ହୋଇଛି । ତେଣୁ ଏହା ବହୁତ ସୁନ୍ଦର ଦେଖାଯାଉଛି । ଏଥିରେ ଅନେକ ପାନପତ୍ର ଉପଯୋଗ କରାଯାଇଛି । ଏହିସବୁ ପାନରେ କୋମଳ ଜାଇତ୍ରୀ, କର୍ପୂର ଏବଂ ଗୁଆ ପଡ଼ିଛି । ଏହି ତାମ୍ବୂଳ ଅମୃତର ମାଧୁର୍ଯ୍ୟରେ ପରିପୂର୍ଣ୍ଣ ଅଟେ ॥ ୧୪ ॥

ଶରତ୍ପ୍ରଭବଚନ୍ଦ୍ରମଃସ୍ଫୁରିତଚନ୍ଦ୍ରିକାସୁନ୍ଦରଂ
ଗଳତ୍ସୁରତରଙ୍ଗିଣୀଲଳିତମୌକ୍ତିକାଡମ୍ବରମ୍ ।
ଗୃହାଣ ନବକାଞ୍ଚନପ୍ରଭବଦଣ୍ଡଖଣ୍ଡୋଜ୍ଜ୍ୱଳଂ
ମହାତ୍ରିପୁରସୁନ୍ଦରି ପ୍ରକଟମାତପତ୍ରଂ ମହତ୍ ॥ ୧୫ ॥
ମାତସ୍ତ୍ୱନ୍ମୁଦମାତନୋତୁ ସୁଭଗସ୍ତ୍ରୀଭିଃ ସଦାଽଽନ୍ଦୋଳିତଂ
ଶୁଭ୍ରଂ ଚାମରମିନ୍ଦୁକୁନ୍ଦସଦୃଶଂ ପ୍ରସ୍ୱେଦଦୁଃଖାପହମ୍ ।
ସଦ୍ୟୋଽଗସ୍ତ୍ୟବସିଷ୍ଠନାରଦଶୁକବ୍ୟାସାଦିବାଲ୍ମୀକିଭିଃ
ସ୍ୱେ ଚିତ୍ତେ କ୍ରିୟମାଣ ଏବ କୁରୁତାଂ ଶର୍ମାଣି ବେଦଧ୍ୱନିଃ ॥ ୧୬ ॥
ସ୍ୱର୍ଗାଙ୍ଗଣେ ବେଣୁମୃଦଙ୍ଗଶଙ୍ଖଭେରୀନିନାଦୈରୁପଗୀୟମାନା ।
କୋଲାହଲୈରାକଲିତା ତବାସ୍ତୁ ବିଦ୍ୟାଧରୀନୃତ୍ୟକଳା ସୁଖାୟ ॥ ୧୭ ॥

---

ମହାତ୍ରିପୁରସୁନ୍ଦରୀ ହେ ମାତା ପାର୍ବତୀ ! ତୁମ୍ଭ ସମ୍ମୁଖରେ ଏହି ବିଶାଳ ଏବଂ ଦିବ୍ୟ ଛତ୍ର ପ୍ରକଟ ହୋଇଛି । ଏହାକୁ ଗ୍ରହଣ କର । ଏହା ଶରତ୍-କାଳୀନ ଚନ୍ଦ୍ରମାର ଚିକ୍‌ମିକ୍ ଜ୍ୟୋତ୍ସ୍ନା ସମାନ ସୁନ୍ଦର ଅଟେ । ଏଥିରେ ସଂଲଗ୍ନ ହୋଇଥିବା ସୁନ୍ଦର ମୋତିର ଝାଲର ଏପରି ଜଣାଯାଏ; ସତେ ଯେପରି ଦେବନଦୀ ଗଙ୍ଗାର ସ୍ରୋତ ଉପରୁ ତଳକୁ ଝରିଆସୁଛି । ଏହି ଛତ୍ର ସୁବର୍ଣ୍ଣମୟ ଦଣ୍ଡଯୋଗୁଁ ଅଧିକ ଶୋଭା ପାଉଛି ॥ ୧୫ ॥

ହେ ମାତଃ ! ସ୍ତ୍ରୀମାନଙ୍କ ହସ୍ତରେ ନିରନ୍ତର ବିଞ୍ଚା ହେଉଥିବା ଏହି ଶ୍ୱେତ ଚାମର, ଯାହା ଚନ୍ଦ୍ରମା ଏବଂ କୁନ୍ଦ ସମାନ ଉଜ୍ଜ୍ୱଳ ତଥା ସ୍ୱେଦ କଷ୍ଟ ଦୂର କରେ । ଏହା ତୁମ୍ଭର ହର୍ଷ ବୃଦ୍ଧି କରୁ । ଏହା ବ୍ୟତୀତ ମହର୍ଷି ଅଗସ୍ତ୍ୟ, ବସିଷ୍ଠ, ନାରଦ, ଶୁକ, ବ୍ୟାସ ଆଦି ତଥା ବାଲ୍ମୀକି ମୁନି ନିଜ ନିଜ ଚିତ୍ତରେ ଯେଉଁ ବେଦମନ୍ତ୍ର ଉଚ୍ଚାରଣର ବିଚାର କରନ୍ତି; ସେମାନଙ୍କର ସେହି ମନଃସଙ୍କଳ୍ପିତ ବେଦଧ୍ୱନି ତୁମ୍ଭର ଆନନ୍ଦ ବୃଦ୍ଧି କରୁ ॥ ୧୬ ॥

ସ୍ୱର୍ଗର ପ୍ରାଙ୍ଗଣରେ ବେଣୁ, ମୃଦଙ୍ଗ, ଶଙ୍ଖ ତଥା ଭେରୀର ମଧୁର ଧ୍ୱନି ସହ ଯେଉଁ ସଙ୍ଗୀତ ହୁଏ ତଥା ଯେଉଁଥିରେ ଅନେକ ପ୍ରକାରର କୋଳାହଳର ଶବ୍ଦ ବ୍ୟାପ୍ତ ରହିଥାଏ; ସେହି ବିଦ୍ୟାଧରୀଦ୍ୱାରା ପ୍ରଦର୍ଶିତ ନୃତ୍ୟକଳା ତୁମ୍ଭର ସୁଖକୁ ବୃଦ୍ଧି କରୁ ॥ ୧୭ ॥

ଦେବି ଭକ୍ତିରସଭାବିତବୃତ୍ତେ ପ୍ରୀୟତାଂ ଯଦି କୁତୋଽପି ଲଭ୍ୟତେ ।
ତତ୍ର ଲୌଲ୍ୟମପି ସତ୍‌ଫଲମେକଂ ଜନ୍ମକୋଟିଭିରପୀହ ନ ଲଭ୍ୟମ୍ ॥ ୧୮ ॥
ଏତୈଃ ଷୋଡଶଭିଃ ପଦ୍ୟୈରୁପଗ୍ରୋପକଳ୍ପିତୈଃ ।
ଯଃ ପରାଂ ଦେବତାଂ ସ୍ତୌତି ସ ତେଷାଂ ଫଳମାପ୍ନୁୟାତ୍ ॥ ୧୯ ॥



ହେ ଦେବି ! ତୁମ୍ଭର ଭକ୍ତିରସରେ ଭାବିତ ଏହି ପଦ୍ୟମୟ ସ୍ତୋତ୍ରରେ ଯଦି କେଉଁଠୁ କିଛି ଭକ୍ତିରସ ଲେଶମାତ୍ର ପ୍ରାପ୍ତ ହୁଏ; ତେବେ ତାହାଦ୍ୱାରା ପ୍ରସନ୍ନ ହୋଇଯାଅ । ହେ ମା ! ତୁମ୍ଭର ଭକ୍ତି ନିମନ୍ତେ ଚିତ୍ତରେ ଯେଉଁ ଆକୁଳତା ଦେଖାଦିଏ; ତାହାହିଁ ଜୀବନର ଏକମାତ୍ର ଫଳ ଅଟେ । କୋଟି-କୋଟିବାର ଜନ୍ମଧାରଣ କଲେ ମଧ୍ୟ ଏହି ସଂସାରରେ ତୁମ୍ଭ କୃପା ବିନା ତାହା ସୁଲଭ ହୁଏ ନାହିଁ ॥ ୧୮ ॥

ଏହି ଉପଗ୍ରରକଳ୍ପିତ ଷୋଡ଼ଶପଦ୍ୟଦ୍ୱାରା ଯିଏ ପରା ଦେବତା ଭଗବତୀ ତ୍ରିପୁରସୁନ୍ଦରୀଙ୍କୁ ସ୍ତବ କରେ; ସେ ସେହି ଉପଗ୍ରରକୁ ସମର୍ପଣ କରିବାର ଫଳ ପ୍ରାପ୍ତ କରେ ॥ ୧୯ ॥



# ଅଥ ଦୁର୍ଗାଦ୍ୱାତ୍ରିଂଶନ୍ନାମମାଳା

ଦିନକର କଥା। ବ୍ରହ୍ମା ପ୍ରଭୃତି ଦେବତାମାନେ ପୁଷ୍ପ ଆଦି ବିବିଧ ଉପଗ୍ରର ଦ୍ୱାରା ମହେଶ୍ୱରୀ ଦୁର୍ଗାଙ୍କୁ ପୂଜା କଲେ। ଏହାଦ୍ୱାରା ପ୍ରସନ୍ନ ହୋଇ ଦୁର୍ଗତିନାଶିନୀ ଦୁର୍ଗା କହିଲେ—'ହେ ଦେବଗଣ ! ମୁଁ ତୁମ୍ଭ ପୂଜାରେ ସନ୍ତୁଷ୍ଟ। ତୁମ୍ଭର ଯାହା ଇଚ୍ଛା; ତାହା ପ୍ରାର୍ଥନା କର। ମୁଁ ତୁମ୍ଭମାନଙ୍କୁ ଦୁର୍ଲଭାତିଦୁର୍ଲଭ ବସ୍ତୁ ପ୍ରଦାନ କରିବି।' ଦୁର୍ଗାଙ୍କର ଏହି କଥା ଶୁଣି ଦେବତାମାନେ କହିଲେ— 'ହେ ଦେବି ! ଆମ୍ଭର ଶତ୍ରୁ ମହିଷାସୁର; ଯିଏ ତ୍ରିଭୁବନ ନିମନ୍ତେ ବିପଦର କାରଣ ଥିଲା; ଆପଣ ତାହାକୁ ହତ୍ୟା କଲେ। ଏହାଦ୍ୱାରା ସମଗ୍ର ଜଗତ୍ ସ୍ୱସ୍ଥ ଏବଂ ନିର୍ଭୟ ହେଲା। ଆପଣଙ୍କ କୃପାରୁ ଆମ୍ଭେମାନେ ପୁନର୍ବାର ନିଜ ନିଜ ପଦକୁ ପ୍ରାପ୍ତ ହୋଇଛୁ। ଆପଣ ଭକ୍ତମାନଙ୍କ ପାଇଁ କଳ୍ପବୃକ୍ଷ ଅଟନ୍ତି। ଆମ୍ଭେ ଆପଣଙ୍କ ଶରଣାପନ୍ନ ହୋଇଛୁ। ତେଣୁ ବର୍ତ୍ତମାନ ଆମ୍ଭ ମନରେ କିଛି ପାଇବାର ଇଚ୍ଛା ବାକି ନାହିଁ। ଆମକୁ ସବୁକିଛି ପ୍ରାପ୍ତ ହୋଇଛି। ତଥାପି ଆପଣଙ୍କ ଆଜ୍ଞାରେ ଆମ୍ଭେ ସଂସାରର ରକ୍ଷା ନିମନ୍ତେ ଆପଣଙ୍କୁ କିଛି ପଗ୍ରରିବାକୁ ଇଚ୍ଛା କରୁଛୁ। ହେ ମହେଶ୍ୱରି ! ଏପରି କେଉଁ ଉପାୟ ରହିଛି; ଯାହାଦ୍ୱାରା ଯଥାଶୀଘ୍ର ପ୍ରସନ୍ନ ହୋଇ ଆପଣ ସଙ୍କଟରେ ପଡ଼ିଥିବା ଜୀବକୁ ରକ୍ଷା କରନ୍ତି। ହେ ଦେବେଶ୍ୱରି ! ଏହି କଥା ସର୍ବଥା ଗୋପନୀୟ ହେଲେ ମଧ୍ୟ ଆମ୍ଭଙ୍କୁ ତାହା ନିଶ୍ଚିତ ଭାବରେ କୁହନ୍ତୁ।'

ଦେବତାମାନେ ଏହିପରି ପ୍ରାର୍ଥନା କରିବାରୁ ଦୟାମୟୀ ଦୁର୍ଗାଦେବୀ କହିଲେ—'ହେ ଦେବଗଣ ! ଶୁଣ, ଏହି ରହସ୍ୟ ଅତ୍ୟନ୍ତ ଗୋପନୀୟ ଏବଂ ଦୁର୍ଲଭ ଅଟେ। ମୋର ବତିଶଟି (୩୨) ନାମମାଳା ସମସ୍ତ ବିପଦକୁ ବିନାଶ କରେ। ତ୍ରିଭୁବନରେ ଏହାପରି ଅନ୍ୟ କୌଣସି ସ୍ତୁତି ନାହିଁ। ଏହା ରହସ୍ୟରୂପ ଅଟେ। ଏଣୁ ଏହାକୁ ଶ୍ରବଣ କର—

**ଦୁର୍ଗା ଦୁର୍ଗାର୍ତ୍ତିଶମନୀ ଦୁର୍ଗାପଦ୍‌ବିନିବାରିଣୀ।**
**ଦୁର୍ଗମଚ୍ଛେଦିନୀ ଦୁର୍ଗସାଧିନୀ ଦୁର୍ଗନାଶିନୀ॥**
**ଦୁର୍ଗତୋଦ୍ଧାରିଣୀ ଦୁର୍ଗନିହନ୍ତ୍ରୀ ଦୁର୍ଗମାପହା।**
**ଦୁର୍ଗମଜ୍ଞାନଦା ଦୁର୍ଗଦୈତ୍ୟଲୋକଦବାନଳା॥**

ଦୁର୍ଗମା ଦୁର୍ଗମାଲୋକା ଦୁର୍ଗମାତ୍ମସ୍ୱରୂପିଣୀ ।
ଦୁର୍ଗମାର୍ଗପ୍ରଦା ଦୁର୍ଗମବିଦ୍ୟା ଦୁର୍ଗମାଶ୍ରିତା ॥
ଦୁର୍ଗମଜ୍ଞାନସଂସ୍ଥାନା ଦୁର୍ଗମଧ୍ୟାନଭାସିନୀ ।
ଦୁର୍ଗମୋହା ଦୁର୍ଗମଗା ଦୁର୍ଗମାର୍ଥସ୍ୱରୂପିଣୀ ॥
ଦୁର୍ଗମାସୁରସଂହନ୍ତ୍ରୀ ଦୁର୍ଗମାୟୁଧଧାରିଣୀ ।
ଦୁର୍ଗମାଙ୍ଗୀ ଦୁର୍ଗମତା ଦୁର୍ଗମ୍ୟା ଦୁର୍ଗମେଶ୍ୱରୀ ॥
ଦୁର୍ଗଭୀମା ଦୁର୍ଗଭାମା ଦୁର୍ଗଭା ଦୁର୍ଗଦାରିଣୀ ।
ନାମାବଳିମିମାଂ ଯସ୍ତୁ ଦୁର୍ଗାୟା ମମ ମାନବଃ ॥
ପଠେତ୍ ସର୍ବଭୟାନ୍ମୁକ୍ତୋ ଭବିଷ୍ୟତି ନ ସଂଶୟଃ ॥

[ଅର୍ଥାତ୍—୧-ଦୁର୍ଗା, ୨-ଦୁର୍ଗାର୍ତ୍ତିଶମନୀ, ୩-ଦୁର୍ଗାପଦ୍‌ବିନିବାରିଣୀ, ୪-ଦୁର୍ଗମଚ୍ଛେଦିନୀ, ୫-ଦୁର୍ଗସାଧିନୀ, ୬-ଦୁର୍ଗନାଶିନୀ, ୭-ଦୁର୍ଗତୋଦ୍ଧାରିଣୀ, ୮-ଦୁର୍ଗନିହନ୍ତ୍ରୀ, ୯-ଦୁର୍ଗମାପହା, ୧୦-ଦୁର୍ଗମଜ୍ଞାନଦା, ୧୧-ଦୁର୍ଗଦୈତ୍ୟ-ଲୋକଦବାନଳା, ୧୨-ଦୁର୍ଗମା, ୧୩-ଦୁର୍ଗମାଲୋକା, ୧୪-ଦୁର୍ଗମାତ୍ମସ୍ୱରୂପିଣୀ, ୧୫-ଦୁର୍ଗମାର୍ଗପ୍ରଦା, ୧୬-ଦୁର୍ଗମବିଦ୍ୟା, ୧୭-ଦୁର୍ଗମାଶ୍ରିତା, ୧୮-ଦୁର୍ଗମଜ୍ଞାନ-ସଂସ୍ଥାନା, ୧୯-ଦୁର୍ଗମଧ୍ୟାନଭାସିନୀ, ୨୦-ଦୁର୍ଗମୋହା, ୨୧-ଦୁର୍ଗମଗା, ୨୨-ଦୁର୍ଗମାର୍ଥସ୍ୱରୂପିଣୀ, ୨୩-ଦୁର୍ଗମାସୁର-ସଂହନ୍ତ୍ରୀ, ୨୪-ଦୁର୍ଗମାୟୁଧଧାରିଣୀ, ୨୫-ଦୁର୍ଗମାଙ୍ଗୀ, ୨୬-ଦୁର୍ଗମତା, ୨୭-ଦୁର୍ଗମ୍ୟା, ୨୮-ଦୁର୍ଗମେଶ୍ୱରୀ, ୨୯-ଦୁର୍ଗଭୀମା, ୩୦-ଦୁର୍ଗଭାମା, ୩୧-ଦୁର୍ଗଭା, ୩୨-ଦୁର୍ଗଦାରିଣୀ ।

ଯେଉଁ ମନୁଷ୍ୟ ଦୁର୍ଗାଙ୍କର(ମୋର) ଏହି ନାମମାଳାକୁ ପାଠ କରେ; ସେ ନିଃସନ୍ଦେହରେ ସମସ୍ତ ପ୍ରକାର ଭୟରୁ ମୁକ୍ତ ହୁଏ ।]

କୌଣସି ଶତ୍ରୁଦ୍ୱାରା ପୀଡ଼ିତ ହେଲେ ବା ଦୁର୍ଭେଦ୍ୟ ବନ୍ଧନରେ ପଡ଼ିଲେ ଏହି ବତିଶଟି (୩୨) ନାମର ପାଠମାତ୍ରକେ ସମସ୍ତ ବିପଦରୁ ମୁକ୍ତି ମିଳିଯାଏ । ଏଥିରେ ତିଳେମାତ୍ର ସନ୍ଦେହର ସ୍ଥାନ ନାହିଁ । ଯଦି ରାଜା କ୍ରୋଧାନ୍ୱିତ ହୋଇ ବଧ ପାଇଁ ଅଥବା କୌଣସି କଠୋର ଦଣ୍ଡ ପାଇଁ ଆଦେଶ ପ୍ରଦାନ କରେ ବା ଯୁଦ୍ଧକ୍ଷେତ୍ରରେ ଶତ୍ରୁମାନଙ୍କ ଦ୍ୱାରା ମନୁଷ୍ୟ ବନ୍ଦୀ ହୁଏ ଅଥବା ଅରଣ୍ୟରେ ବ୍ୟାଘ୍ର ଆଦି ହିଂସ୍ର ଜନ୍ତୁମାନଙ୍କ ଘେରରେ ପଡ଼ିଥାଏ; ତେବେ ଏହି ୩୨ଟି

ନାମକୁ ୧୦୮ ଥର ପାଠ କରିବାମାତ୍ରେ ପାଠକ ସମସ୍ତ ବିପଦରୁ ମୁକ୍ତ ହୋଇଯାଏ। ବିପଦ ସମୟରେ ଏପରି ଭୟନାଶକ ଉପାୟ ଆଉ କିଛି ନାହିଁ। ହେ ଦେବଗଣ ! ଏହି ନାମମାଳାକୁ ପାଠ କରୁଥିବା ମନୁଷ୍ୟର କେବେହେଲେ କୌଣସି କ୍ଷତି ହୁଏ ନାହିଁ। ଅଭକ୍ତ, ନାସ୍ତିକ ଓ ଶଠ ମନୁଷ୍ୟକୁ ଏହି ଉପଦେଶ ପ୍ରଦାନ କରିବା ଉଚିତ ନୁହେଁ। ଯିଏ ଘୋର ବିପଦରେ ପଡ଼ି ଏହି ନାମାବଳୀକୁ ହଜାରେ ଥର, ଦଶହଜାର ଥର ଅଥବା ଏକଲକ୍ଷଥର ସ୍ୱୟଂ ପାଠ କରେ ବା ବ୍ରାହ୍ମଣଦ୍ୱାରା କରାଏ; ସେ ସମସ୍ତପ୍ରକାରର ବିପଦରୁ ମୁକ୍ତ ହୁଏ। ସିଦ୍ଧ ଅଗ୍ନିରେ ମଧୁମିଶ୍ରିତ ଧବଳବର୍ଣ୍ଣର ରାଶିରେ ଏହି ନାମଦ୍ୱାରା ଏକଲକ୍ଷ ଥର ହବନ କଲେ ମନୁଷ୍ୟ ସମସ୍ତ ବିପଦରୁ ମୁକ୍ତ ହୁଏ। ଏହି ନାମମାଳାର ପୁରଶ୍ଚରଣ ୩୦ ହଜାର। ପୁରଶ୍ଚରଣପୂର୍ବକ ପାଠ କରିବା ଦ୍ୱାରା ମନୁଷ୍ୟର ସମସ୍ତ କାର୍ଯ୍ୟ ସିଦ୍ଧ ହୁଏ। ମାଟିରେ ମୋର ସୁନ୍ଦର ଅଷ୍ଟଭୁଜା ମୂର୍ତ୍ତି ନିର୍ମାଣ କର। ଆଠୋଟି ବାହୁରେ କ୍ରମଶଃ ଗଦା, ଖଡ୍‌ଗ, ତ୍ରିଶୂଳ, ଶର, ଧନୁ, ପଦ୍ମ, ଢାଲ ଏବଂ ମୁଦ୍‌ଗର ଧାରଣ କରାଇ ଦିଅ। ମୂର୍ତ୍ତିର ମସ୍ତକରେ ଚନ୍ଦ୍ରମାର ଚିହ୍ନ ରହିଥିବ। ମୂର୍ତ୍ତିର ତିନୋଟି ନେତ୍ର ଥିବ। ସେ ରକ୍ତବର୍ଣ୍ଣର ବସ୍ତ୍ର ପରିଧାନ କରିଥିବେ। ସେ ସିଂହର ସ୍କନ୍ଧରେ ଆରୋହଣ କରିଥିବେ ଏବଂ ଶୂଳରେ ମହିଷାସୁରକୁ ବଧ କରୁଥିବେ। ଏହି ପ୍ରକାରର ପ୍ରତିମା ନିର୍ମାଣ କରି ନାନାପ୍ରକାରର ସାମଗ୍ରୀରେ ଭକ୍ତିପୂର୍ବକ ମୋର ପୂଜା କରିବା ଉଚିତ। ମୋର ଉକ୍ତ ନାମମାନଙ୍କଦ୍ୱାରା ରକ୍ତ କନିଅର ପୁଷ୍ପ ପ୍ରଦାନ କରି ଶହେ ଥର ପୂଜା କରିବା ଉଚିତ ଏବଂ ମନ୍ତ୍ର ଜପ କରିବା ସମୟରେ ପିଠାରେ ହୋମ କରିବା ଉଚିତ। ନାନାପ୍ରକାରର ଉତ୍ତମ ପଦାର୍ଥଦ୍ୱାରା ଭୋଗ ଲଗାଇବା ଉଚିତ। ଏହିପ୍ରକାର କଲେ ମନୁଷ୍ୟ ଅସାଧ୍ୟ କାର୍ଯ୍ୟକୁ ମଧ୍ୟ ସିଦ୍ଧ କରିପାରେ। ଯେଉଁ ମନୁଷ୍ୟ ପ୍ରତିଦିନ ମୋତେ ଭଜନ କରେ; ସେ କୌଣସି ବିପଦରେ ପଡ଼େ ନାହିଁ।

ଦେବତାମାନଙ୍କୁ ଏହିପରି କହି ଜଗଦମ୍ବା ସେଠାରେ ଅନ୍ତର୍ଦ୍ଧାନ ହୋଇଗଲେ। ଦୁର୍ଗାଦେବୀଙ୍କ ଏହି ଉପାଖ୍ୟାନକୁ ଯେଉଁମାନେ ଶୁଣନ୍ତି; ସେମାନଙ୍କ ଉପରେ କୌଣସି ବିପତ୍ତି ପଡ଼େ ନାହିଁ।

ଓଓଓ

# ଅଥ ଦେବ୍ୟପରାଧକ୍ଷମାପନସ୍ତୋତ୍ରମ୍

ନ ମନ୍ତ୍ରଂ ନୋ ଯନ୍ତ୍ରଂ ତଦପି ଚ ନ ଜାନେ ସ୍ତୁତିମହୋ
ନ ଚାହ୍ୱାନଂ ଧ୍ୟାନଂ ତଦପି ଚ ନ ଜାନେ ସ୍ତୁତିକଥାଃ ।
ନ ଜାନେ ମୁଦ୍ରାସ୍ତେ ତଦପି ଚ ନ ଜାନେ ବିଲପନଂ
ପରଂ ଜାନେ ମାତସ୍ତ୍ୱଦନୁସରଣଂ କ୍ଳେଶହରଣମ୍ ॥ ୧ ॥
ବିଧେରଜ୍ଞାନେନ ଦ୍ରବିଣବିରହେଣାଲସତୟା
ବିଧେୟାଶକ୍ୟତ୍ୱାତ୍ତବ ଚରଣୟୋର୍ଯା ଚ୍ୟୁତିରଭୂତ୍ ।
ତଦେତତ୍ କ୍ଷନ୍ତବ୍ୟଂ ଜନନି ସକଲୋଦ୍ଧାରିଣି ଶିବେ
କୁପୁତ୍ରୋ ଜାୟେତ କ୍ୱଚିଦପି କୁମାତା ନ ଭବତି ॥ ୨ ॥
ପୃଥିବ୍ୟାଂ ପୁତ୍ରାସ୍ତେ ଜନନି ବହବଃ ସନ୍ତି ସରଳାଃ
ପରଂ ତେଷାଂ ମଧ୍ୟେ ବିରଳତରଳୋଽହଂ ତବ ସୁତଃ ।
ମଦୀୟୋଽୟଂ ତ୍ୟାଗଃ ସମୁଚିତମିଦଂ ନୋ ତବ ଶିବେ
କୁପୁତ୍ରୋ ଜାୟେତ କ୍ୱଚିଦପି କୁମାତା ନ ଭବତି ॥ ୩ ॥

---

ହେ ମା ! ମୁଁ ମନ୍ତ୍ର ଜାଣେ ନାହିଁ କି ଯନ୍ତ୍ର ଜାଣେ ନାହିଁ । ମୋର ସ୍ତୁତି ବିଷୟକ ଜ୍ଞାନ ମଧ୍ୟ ନାହିଁ । ଆବାହନ ବା ଧ୍ୟାନ ଜାଣେ ନାହିଁ । ସ୍ତୋତ୍ର ଏବଂ କଥା ବିଷୟରେ ମଧ୍ୟ ଜାଣେ ନାହିଁ । ତୁମର ମୁଦ୍ରାମାନ ଜାଣେ ନାହିଁ କି ବ୍ୟାକୁଳ ହୋଇ ବିଳାପ କରିବା ମୋତେ ଆସେ ନାହିଁ । କିନ୍ତୁ ଗୋଟିଏ କଥା ଜାଣିଛି; କେବଳ ତୁମକୁ ଅନୁସରଣ କରିବା—ତୁମର ପଛେ ପଛେ ଚାଲିବା; ଯାହା ସମସ୍ତ କ୍ଳେଶ ଏବଂ ସମସ୍ତ ଦୁଃଖ-ବିପତ୍ତିକୁ ହରଣ କରେ ॥ ୧ ॥

ସମସ୍ତଙ୍କୁ ଉଦ୍ଧାର କରୁଥିବା ହେ କଲ୍ୟାଣମୟୀ ମା ! ମୁଁ ପୂଜାବିଧି ଜାଣେ ନାହିଁ । ମୋ ନିକଟରେ କିଛି ଧନ ନାହିଁ । ମୁଁ ସ୍ୱଭାବତଃ ଅଳସୁଆ ଅଟେ ଏବଂ ମୋଦ୍ୱାରା ଠିକ୍‌ଭାବରେ ପୂଜାକାର୍ଯ୍ୟ ସମ୍ପାଦନ ମଧ୍ୟ ହୋଇପାରିବ ନାହିଁ । ଏହି ସବୁ କାରଣରୁ ତୁମ୍ଭ ଚରଣ ସେବାରେ ଯାହା କିଛି ତ୍ରୁଟି ରହିଯାଇଥିବ; ତାହାକୁ କ୍ଷମା କରିବ; କାରଣ କୁପୁତ୍ର ହେବା ସମ୍ଭବପର; କିନ୍ତୁ କେବେହେଲେ ମାତା କୁମାତା ହେବା ସମ୍ଭବ ନୁହେଁ ॥ ୨ ॥

ହେ ମା ! ଏହି ପୃଥିବୀରେ ତୁମର ସରଳ ପୁତ୍ର ଅନେକ ଅଛନ୍ତି; କିନ୍ତୁ ସେମାନଙ୍କ ମଧ୍ୟରେ ମୁଁ ତୁମ୍ଭର ଅତ୍ୟନ୍ତ ଚପଳ ବାଳକ ଅଟେ । ମୋ ପରି ଚଞ୍ଚଳ ବ୍ୟକ୍ତି ପ୍ରାୟ କେହି ନ ଥିବେ । ହେ ଶିବେ ! ମୋତେ ତୁମେ ଯାହା ତ୍ୟାଗ କରିଛ; ଏହା ତୁମ୍ଭ ନିମନ୍ତେ କଦାପି ଉଚିତ ନୁହେଁ । କାରଣ ସଂସାରରେ ପୁତ୍ର କୁପୁତ୍ର ହୋଇପାରେ; କିନ୍ତୁ ମାତା କେଉଁଠି କୁମାତା ହୋଇ ନ ପାରେ ॥ ୩ ॥

ଜଗନ୍ମାତର୍ମାତସ୍ତବ ଚରଣସେବା ନ ରଚିତା
ନ ବା ଦତ୍ତଂ ଦେବି ଦ୍ରବିଣମପି ଭୂୟସ୍ତବ ମୟା ।
ତଥାପି ତ୍ୱଂ ସ୍ନେହଂ ମୟି ନିରୁପମଂ ଯତ୍ପ୍ରକୁରୁଷେ
କୁପୁତ୍ରୋ ଜାୟେତ କ୍ୱଚିଦପି କୁମାତା ନ ଭବତି ॥ ୪ ॥
ପରିତ୍ୟକ୍ତା ଦେବା ବିବିଧବିଧସେବାକୁଳତୟା
ମୟା ପଞ୍ଚାଶୀତେରଧିକମପନୀତେ ତୁ ବୟସି ।
ଇଦାନୀଂ ଚେନ୍ମାତସ୍ତବ ଯଦି କୃପା ନାପି ଭବିତା
ନିରାଲମ୍ବୋ ଲମ୍ବୋଦରଜନନି କଂ ଯାମି ଶରଣମ୍ ॥ ୫ ॥
ଶ୍ୱପାକୋ ଜଲ୍ପାକୋ ଭବତି ମଧୁପାକୋପମଗିରା
ନିରାତଙ୍କୋ ରଙ୍କୋ ବିହରତି ଚିରଂ କୋଟିକନକୈଃ ।
ତବାପର୍ଣ୍ଣେ କର୍ଣ୍ଣେ ବିଶତି ମନୁବର୍ଣ୍ଣେ ଫଳମିଦଂ
ଜନଃ କୋ ଜାନୀତେ ଜନନି ଜପନୀୟଂ ଜପବିଧୌ ॥ ୬ ॥

---

ହେ ଜଗଦମ୍ବା ! ହେ ମାତଃ ! ମୁଁ କେବେହେଲେ ତୁମ୍ଭ ଚରଣସେବା କରି ନାହିଁ। ହେ ଦେବି ! ତୁମ୍ଭଙ୍କୁ ମୁଁ ଅଧିକ ଧନ ସମର୍ପଣ କରି ନାହିଁ। ତଥାପି ମୋ ପରି ଅଧମକୁ ତୁମ୍ଭେ ଯେପରି ଅନୁପମ ସ୍ନେହ କରିଛ । ତାହାର କାରଣ ଏତିକି ଯେ ସଂସାରରେ କୁପୁତ୍ର ଜନ୍ମ ହୋଇପାରେ; କିନ୍ତୁ କୁମାତା କଦାପି ଦେଖାଯାଆନ୍ତି ନାହିଁ ॥ ୪ ॥

ଗଣେଶଙ୍କ ଜନ୍ମଦାତ୍ରୀ ହେ ମାତା ପାର୍ବତୀ ! (ଅନ୍ୟ ଦେବତାଙ୍କୁ ଆରାଧନା କରିବା ସମୟରେ) ମୁଁ ଅନେକ ପ୍ରକାର ସେବାରେ ବ୍ୟସ୍ତ ରହିଥିଲି । ତେଣୁ ପଞ୍ଚାଅଶୀ ବର୍ଷରୁ ଅଧିକ ସମୟ ଅତିବାହିତ ହେବାପରେ ମୁଁ ଦେବତାମାନଙ୍କୁ ଛାଡ଼ି ଦେଇଛି । ବର୍ତ୍ତମାନ ସେମାନଙ୍କ ସେବା-ପୂଜା ବିଧି ମୋଦ୍ୱାରା ହୋଇପାରୁନାହିଁ। ଅତଏବ ସେମାନଙ୍କଠାରୁ କୌଣସି ସହାୟତା ମିଳିବାର ଆଶା ନାହିଁ। ଏହି ସମୟରେ ଯଦି ତୁମେ ମୋତେ କୃପା ନ କର, ତେବେ ମୁଁ ଅବଲମ୍ବନରହିତ(ଅନାଶ୍ରୟୀ) ହୋଇ କାହା ପାଖରେ ଶରଣ ପଶିବି ? ॥ ୫ ॥

ହେ ମାତା ଅପର୍ଣ୍ଣା ! ତୁମ୍ଭ ମନ୍ତ୍ରର ଗୋଟିଏ ମାତ୍ର ଅକ୍ଷର କାନରେ ପଡ଼ିଲେ ତାହାର ଉତ୍ତମ ଫଳ ପ୍ରାପ୍ତି ହୁଏ । ମୂର୍ଖ ଚଣ୍ଡାଳ ମଧ୍ୟ ମଧୁପାକ ସମାନ ମଧୁର ବାଣୀ ଉଚ୍ଚାରଣ କରୁଥିବା ଉତ୍ତମ ବକ୍ତା ହୋଇଯାଏ । ଦରିଦ୍ର ମନୁଷ୍ୟ ମଧ୍ୟ କୋଟି କୋଟି ସ୍ୱର୍ଣ୍ଣମୁଦ୍ରା ପ୍ରାପ୍ତ ହୋଇ ଚିରକାଳ ପର୍ଯ୍ୟନ୍ତ ନିର୍ଭୟରେ ବିହାର କରେ । ଯେତେବେଳେ ମନ୍ତ୍ରର ଗୋଟିଏ ଅକ୍ଷର ଶ୍ରବଣମାତ୍ରକେ ଏତେ ଫଳ ପ୍ରାପ୍ତ ହୁଏ; ତେବେ ଯେଉଁ ଲୋକ ବିଧିପୂର୍ବକ ଜପରେ ମନୋନିବେଶ କରୁଥାନ୍ତି; ତାହାଙ୍କ ଜପ ଦ୍ୱାରା ପ୍ରାପ୍ତ ହେବାକୁ ଥିବା ଉତ୍ତମ ଫଳ ବିଷୟରେ କେଉଁ ମନୁଷ୍ୟ ବା ଜାଣିପାରେ ? ॥ ୬ ॥

ଚିତାଭସ୍ମାଲେପୋ ଗରଳମଶନଂ ଦିକ୍‌ପଟଧରୋ
ଜଟାଧାରୀ କଣ୍ଠେ ଭୁଜଗପତିହାରୀ ପଶୁପତିଃ ।
କପାଲୀ ଭୂତେଶୋ ଭଜତି ଜଗଦୀଶୈକପଦବୀଂ
ଭବାନି ତ୍ୱତ୍ପାଣିଗ୍ରହଣପରିପାଟୀଫଳମିଦମ୍ ॥ ୭ ॥
ନ ମୋକ୍ଷସ୍ୟାକାଙ୍‌କ୍ଷା ଭବବିଭବବାଞ୍ଛାପି ଚ ନ ମେ
ନ ବିଜ୍ଞାନାପେକ୍ଷା ଶଶିମୁଖି ସୁଖେଚ୍ଛାପି ନ ପୁନଃ ।
ଅତସ୍ତ୍ୱାଂ ସଂଯାଚେ ଜନନି ଜନନଂ ଯାତୁ ମମ ବୈ
ମୃଡାନୀ ରୁଦ୍ରାଣୀ ଶିବ ଶିବ ଭବାନୀତି ଜପତଃ ॥ ୮ ॥
ନାରାଧିତାସି ବିଧିନା ବିବିଧୋପଚାରୈଃ
କିଂ ରୁକ୍ଷଚିନ୍ତନପରୈର୍ନ କୃତଂ ବଚୋଭିଃ ।
ଶ୍ୟାମେ ତ୍ୱମେବ ଯଦି କିଞ୍ଚନ ମୟ୍ୟନାଥେ
ଧତ୍ସେ କୃପାମୁଚିତମମ୍ବ ପରଂ ତବୈବ ॥ ୯ ॥

---

ହେ ଭବାନୀ ! ଯିଏ ନିଜ ଅଙ୍ଗରେ ଚିତାର ଭସ୍ମ ଲେପନ କରନ୍ତି; ଯାହାଙ୍କର ବିଷ ହିଁ ଭୋଜନ; ଯିଏ ଦିଗମ୍ବରଧାରୀ; ମସ୍ତକରେ ଜଟା ଓ କଣ୍ଠରେ ନାଗରାଜ ବାସୁକିକୁ ଯିଏ ହାର ରୂପରେ ଧାରଣ କରନ୍ତି ଏବଂ ଯାହାଙ୍କ ହସ୍ତରେ କପାଳ(ଭିକ୍ଷାପାତ୍ର) ଶୋଭାପାଏ; ଏହିପରି ଭୂତନାଥ ପଶୁପତି ଯେ ଏକମାତ୍ର 'ଜଗଦୀଶ'ଙ୍କ ପଦବୀକୁ ଧାରଣ କରିଛନ୍ତି; ତାହାର କଣ ବା କାରଣ ଅଛି ? ଏହି ମହତ୍ତ୍ୱ ସେ କିପରି ପାଇଲେ ? ଏହା କେବଳ ତୁମ୍ଭର ପାଣିଗ୍ରହଣ ପରିପାଟୀର ଫଳ ଅଟେ । ତୁମ୍ଭ ସହିତ ବିବାହ ହେବାରୁ ତାଙ୍କର ମହତ୍ତ୍ୱ ବୃଦ୍ଧି ପାଇଲା ॥ ୭ ॥

ମୁଖରେ ଚନ୍ଦ୍ରମାର ଶୋଭା ଧାରଣ କରିଥିବା ହେ ମାତଃ ! ମୋକ୍ଷ ପାଇବାକୁ ମୋର ଇଚ୍ଛା ନାହିଁ । ସଂସାରର ବୈଭବ ମୁଁ ଅଭିଳାଷ କରୁ ନାହିଁ ବା ବିଜ୍ଞାନକୁ ଅପେକ୍ଷା ନାହିଁ । ମୁଁ ସୁଖ କାମନା କରୁ ନାହିଁ । ଏଣୁ ତୁମ୍ଭ ପାଖରେ ମୋର ଏତିକି କାମନା ଯେ ମୋର ଜୀବନକାଳ 'ମୃଡାନୀ, ରୁଦ୍ରାଣୀ, ଶିବ, ଶିବ, ଭବାନୀ'ଇତ୍ୟାଦି ନାମକୁ ଜପ କରି କରି ଅତିବାହିତ ହେଉ ॥ ୮ ॥

ହେ ଶ୍ୟାମା ! ନାନାପ୍ରକାରର ପୂଜନ-ସାମଗ୍ରୀ ଦ୍ୱାରା କେବେହେଲେ ବିଧିପୂର୍ବକ ତୁମ୍ଭର ଆରାଧନା ମୋଦ୍ୱାରା ହୋଇପାରିଲା ନାହିଁ । ସର୍ବଦା କଠୋର ଭାବକୁ ଚିନ୍ତନ

ଆପସ୍ତୁ ମଗ୍ନଃ ସ୍ମରଣଂ ତ୍ୱଦୀୟଂ
କରୋମି ଦୁର୍ଗେ କରୁଣାର୍ଣ୍ଣବେଶି ।
ନୈତଚ୍ଛଠତ୍ୱଂ ମମ ଭାବୟେଥାଃ
କ୍ଷୁଧାତୃଷାର୍ତ୍ତା ଜନନୀଂ ସ୍ମରନ୍ତି ॥ ୧୦ ॥
ଜଗଦମ୍ବ ବିଚିତ୍ରମତ୍ର କିଂ
ପରିପୂର୍ଣ୍ଣା କରୁଣାସ୍ତି ଚେନ୍ମୟି ।
ଅପରାଧପରମ୍ପରାପରଂ
ନ ହି ମାତା ସମୁପେକ୍ଷତେ ସୁତମ୍ ॥ ୧୧ ॥
ମତ୍ସମଃ ପାତକୀ ନାସ୍ତି ପାପଘ୍ନୀ ତ୍ୱତ୍ସମା ନ ହି ।
ଏବଂ ଜ୍ଞାତ୍ୱା ମହାଦେବି ଯଥାଯୋଗ୍ୟଂ ତଥା କୁରୁ ॥ ୧୨ ॥

ଇତି ଶ୍ରୀଶଙ୍କରାଚାର୍ଯ୍ୟବିରଚିତଂ ଦେବ୍ୟପରାଧକ୍ଷମାପନସ୍ତୋତ୍ରଂ ସମ୍ପୂର୍ଣ୍ଣମ୍ ।



---

କରୁଥିବା ମୋର ବାଣୀ କେଉଁ ଅପରାଧ ବା ନ କରିଛି । ତଥାପି ତୁମେ ସ୍ୱୟଂ ହିଁ ପ୍ରଯତ୍ନ କରି ମୋ ପରି ଅନାଥ ଉପରେ ଯାହା କିଞ୍ଚିତ୍ କୃପାଦୃଷ୍ଟି ରଖିଛ; ହେ ମାତଃ ! ଏହା ତୁମ୍ଭର ଯୋଗ୍ୟ ଅଟେ । ତୁମ ପରି ଦୟାମୟୀ ମାତା ହିଁ ମୋ ପରି କୁପୁତ୍ରକୁ ମଧ୍ୟ ଆଶ୍ରୟ ପ୍ରଦାନ କରିପାରେ ॥ ୯ ॥

ହେ ମାତା ଦୁର୍ଗେ ! ହେ କରୁଣାସିନ୍ଧୁ ମହେଶ୍ୱରୀ ! ମୁଁ ବିପଦରେ ପଡ଼ି ଆଜି ଯାହା ତୁମ୍ଭଙ୍କୁ ସ୍ମରଣ କରୁଛି (ଏହା ପୂର୍ବରୁ କେବେହେଲେ ପ୍ରାର୍ଥନା କରି ନାହିଁ) । ଏହାକୁ ମୋର ଶଠତା ବୋଲି ମନେକରିବ ନାହିଁ; କାରଣ ଭୋକଶୋଷରେ ପୀଡ଼ିତ ବାଳକ ମାତାକୁ ହିଁ ସ୍ମରଣ କରେ ॥ ୧୦ ॥

ହେ ଜଗଦମ୍ବା ! ମୋ ଉପରେ ତୁମ୍ଭର ଯେଉଁ ପୂର୍ଣ୍ଣ କୃପା ରହିଛି; ଏଥିରେ ଆଶ୍ଚର୍ଯ୍ୟର କଥା କଣ ଅଛି ? ପୁତ୍ର ଅପରାଧ ପରେ ଅପରାଧ କଲେ ମଧ୍ୟ ମାତା ତାହାକୁ ଉପେକ୍ଷା କରେ ନାହିଁ ॥ ୧୧ ॥

ହେ ମହାଦେବି ! ମୋ ପରି ପାପୀ କେହି ନାହିଁ ଏବଂ ତୁମ୍ଭପରି ଅନ୍ୟ କେହି ପାପହାରିଣୀ ନାହାଁନ୍ତି । ଏହା ଜାଣି ଯାହା ଉଚିତ ବୋଲି ମନେ କରୁଛ; ତାହା ହିଁ କର ॥ ୧୨ ॥



# ସିଦ୍ଧକୁଞ୍ଜିକାସ୍ତୋତ୍ରମ୍

ଶିବ ଉବାଚ

ଶୃଣୁ ଦେବି ପ୍ରବକ୍ଷ୍ୟାମି କୁଞ୍ଜିକାସ୍ତୋତ୍ରମୁତ୍ତମମ୍ ।
ଯେନ ମନ୍ତ୍ରପ୍ରଭାବେଣ ଚଣ୍ଡୀଜାପଃ ଶୁଭୋ ଭବେତ୍ ॥ ୧ ॥
ନ କବଚଂ ନାର୍ଗଳାସ୍ତୋତ୍ରଂ କୀଲକଂ ନ ରହସ୍ୟକମ୍ ।
ନ ସୂକ୍ତଂ ନାପି ଧ୍ୟାନଂ ଚ ନ ନ୍ୟାସୋ ନ ଚ ବାର୍ଚ୍ଚନମ୍ ॥ ୨ ॥
କୁଞ୍ଜିକାପାଠମାତ୍ରେଣ ଦୁର୍ଗାପାଠଫଳଂ ଲଭେତ୍ ।
ଅତି ଗୁହ୍ୟତରଂ ଦେବି ଦେବାନାମପି ଦୁର୍ଲଭମ୍ ॥ ୩ ॥
ଗୋପନୀୟଂ ପ୍ରଯତ୍ନେନ ସ୍ୱଯୋନିରିବ ପାର୍ବତି ।
ମାରଣଂ ମୋହନଂ ବଶ୍ୟଂ ସ୍ତମ୍ଭନୋଚ୍ଚାଟନାଦିକମ୍ ।
ପାଠମାତ୍ରେଣ ସଂସିଦ୍ଧ୍ୟେତ୍ କୁଞ୍ଜିକାସ୍ତୋତ୍ରମୁତ୍ତମମ୍ ॥ ୪ ॥

ଅଥ ମନ୍ତ୍ରଃ

ଓଁ ଐଂ ହ୍ରୀଂ କ୍ଲୀଂ ଚାମୁଣ୍ଡାୟୈ ବିଚ୍ଚେ ॥ ଓଁ ଗ୍ଲୌଂ ହୁଂ କ୍ଲୀଂ ଜୂଂ ସଃ
ଜ୍ୱାଳୟ ଜ୍ୱାଳୟ ଜ୍ୱଳ ଜ୍ୱଳ ପ୍ରଜ୍ୱଳ ପ୍ରଜ୍ୱଳ
ଐଂ ହ୍ରୀଂ କ୍ଲୀଂ ଚାମୁଣ୍ଡାୟୈ ବିଚ୍ଚେ ଜ୍ୱଳ ହଂ ସଂ ଲଂ କ୍ଷଂ ଫଟ୍ ସ୍ୱାହା
॥ ଇତି ମନ୍ତ୍ରଃ ॥

---

ଶିବ କହିଲେ—

ହେ ଦେବି ! ଶୁଣ । ମୁଁ ଉତ୍ତମ କୁଞ୍ଜିକାସ୍ତୋତ୍ରର ଉପଦେଶ ପ୍ରଦାନ କରିବି । ଏହି ମନ୍ତ୍ରର ପ୍ରଭାବରେ ଦେବୀଙ୍କ ଜପ(ପାଠ) ସଫଳ ହୁଏ ॥ ୧ ॥

କବଚ, ଅର୍ଗଳା, କୀଳକ, ରହସ୍ୟ, ସୂକ୍ତ, ଧ୍ୟାନ, ନ୍ୟାସ ଏପରିକି ଅର୍ଚ୍ଚନ ମଧ୍ୟ (ଆବଶ୍ୟକ) ହୁଏ ନାହିଁ ॥ ୨ ॥

କେବଳ କୁଞ୍ଜିକା ପାଠ ଦ୍ୱାରା ଦୁର୍ଗା-ପାଠର ଫଳ ମିଳେ । (ଏହି କୁଞ୍ଜିକା) ଅତ୍ୟନ୍ତ ଗୁପ୍ତ ଓ ଦେବତାମାନଙ୍କ ପାଇଁ ମଧ୍ୟ ଦୁର୍ଲଭ ଅଟେ ॥ ୩ ॥

ହେ ପାର୍ବତୀ ! ଏହାକୁ ସ୍ୱଯୋନିସଦୃଶ ପ୍ରଯତ୍ନପୂର୍ବକ ଗୁପ୍ତ ରଖିବା ଉଚିତ । ଏହି ଉତ୍ତମ କୁଞ୍ଜିକାସ୍ତୋତ୍ର କେବଳ ପାଠଦ୍ୱାରା ମାରଣ, ମୋହନ, ବଶୀକରଣ, ସ୍ତମ୍ଭନ ଏବଂ ଉଚ୍ଚାଟନ ଆଦି (ଆଭିଚାରିକ) ଉଦ୍ଦେଶ୍ୟକୁ ସିଦ୍ଧ କରେ ॥ ୪ ॥

ମନ୍ତ୍ର—ଓଁ ଐଂ ହ୍ରୀଂ କ୍ଲୀଂ ଚାମୁଣ୍ଡାୟୈ ବିଚ୍ଚେ ॥ ଓଁ ଗ୍ଲୌଂ ହୁଂ କ୍ଲୀଂ ଜୂଂ ସଃ ଜ୍ୱାଳୟ ଜ୍ୱାଳୟ ଜ୍ୱଳ ଜ୍ୱଳ ପ୍ରଜ୍ୱଳ ପ୍ରଜ୍ୱଳ ଐଂ ହ୍ରୀଂ କ୍ଲୀଂ ଚାମୁଣ୍ଡାୟୈ ବିଚ୍ଚେ ଜ୍ୱଳ ହଂ ସଂ ଲଂ କ୍ଷଂ ଫଟ୍ ସ୍ୱାହା ।

ନମସ୍ତେ ରୁଦ୍ରରୂପିଣ୍ୟୈ ନମସ୍ତେ ମଧୁମର୍ଦ୍ଦିନି ।
ନମଃ କୈଟଭହାରିଣ୍ୟୈ ନମସ୍ତେ ମହିଷାର୍ଦ୍ଦିନି ॥ ୧ ॥
ନମସ୍ତେ ଶୁମ୍ଭହନ୍ତ୍ର୍ୟୈ ଚ ନିଶୁମ୍ଭାସୁରଘାତିନି ॥ ୨ ॥
ଜାଗ୍ରତଂ ହି ମହାଦେବି ଜପଂ ସିଦ୍ଧଂ କୁରୁଷ୍ୱ ମେ ।
ଐଁକାରୀ ସୃଷ୍ଟିରୂପାୟୈ ହ୍ରୀଂକାରୀ ପ୍ରତିପାଳିକା ॥ ୩ ॥
କ୍ଲୀଂକାରୀ କାମରୂପିଣ୍ୟୈ ବୀଜରୂପେ ନମୋଽସ୍ତୁ ତେ ।
ଚାମୁଣ୍ଡା ଚଣ୍ଡଘାତୀ ଚ ଯୈକାରୀ ବରଦାୟିନୀ ॥ ୪ ॥
ବିଚ୍ଚେ ଚାଭୟଦା ନିତ୍ୟଂ ନମସ୍ତେ ମନ୍ତ୍ରରୂପିଣି ॥ ୫ ॥
ଧାଂ ଧୀଂ ଧୂଂ ଧୂର୍ଜଟେଃ ପତ୍ନୀ ବାଂ ବୀଂ ବୂଂ ବାଗଧୀଶ୍ୱରୀ ।
କ୍ରାଂ କ୍ରୀଂ କ୍ରୂଂ କାଳିକା ଦେବି ଶାଂ ଶୀଂ ଶୂଂ ମେ ଶୁଭଂ କୁରୁ ॥ ୬ ॥
ହୁଂ ହୁଂ ହୁଂକାରରୂପିଣ୍ୟୈ ଜଂ ଜଂ ଜଂ ଜମ୍ଭନାଦିନୀ ।
ଭ୍ରାଂ ଭ୍ରୀଂ ଭ୍ରୂଂ ଭୈରବୀ ଭଦ୍ରେ ଭବାନ୍ୟୈ ତେ ନମୋ ନମଃ ॥ ୭ ॥

(ମନ୍ତ୍ରରେ ଥିବା ବୀଜଗୁଡ଼ିକର ଅର୍ଥ ଜାଣିବା ସମ୍ଭବପର ନୁହେଁ; ଆବଶ୍ୟକ ନୁହେଁ କି ବାଞ୍ଛନୀୟ ନୁହେଁ; କେବଳ ଜପ ପର୍ଯ୍ୟାପ୍ତ ଅଟେ ।)

ହେ ରୁଦ୍ରସ୍ୱରୂପିଣି ! ତୁମ୍ଭଙ୍କୁ ନମସ୍କାର । ହେ ମଧୁଦୈତ୍ୟବିନାଶିନୀ ! ତୁମ୍ଭଙ୍କୁ ନମସ୍କାର । କୈଟଭବିନାଶିନୀଙ୍କୁ ନମସ୍କାର । ମହିଷାସୁରମର୍ଦ୍ଦିନୀ ଦେବି ! ତୁମ୍ଭଙ୍କୁ ନମସ୍କାର! ॥ ୧ ॥ ହେ ଶୁମ୍ଭ ଓ ନିଶୁମ୍ଭଙ୍କୁ ହତ୍ୟା କରିଥିବା ଦେବି ! ତୁମ୍ଭଙ୍କୁ ନମସ୍କାର ॥ ୨ ॥

ହେ ମହାଦେବି ! ମୋର ଜପକୁ ଜାଗ୍ରତ ଏବଂ ସିଦ୍ଧ କର । 'ଐଂକାର' ରୂପରେ ସୃଷ୍ଟିସ୍ୱରୂପିଣୀ, 'ହ୍ରୀଂ' ରୂପରେ ସୃଷ୍ଟି-ପାଳନକାରିଣୀ ॥ ୩ ॥ 'କ୍ଲୀଂ'ରୂପରେ କାମରୂପିଣୀ (ତଥା ସମଗ୍ର ବ୍ରହ୍ମାଣ୍ଡର) ବୀଜରୂପିଣୀ ହେ ଦେବି ! ତୁମ୍ଭଙ୍କୁ ନମସ୍କାର । ଚାମୁଣ୍ଡାଙ୍କ ରୂପରେ ଚଣ୍ଡବିନାଶିନୀ ଏବଂ 'ଯୈକାର' ରୂପରେ ତୁମେ ବର ପ୍ରଦାନ କର ॥ ୪ ॥ 'ବିଚ୍ଚେ'ରୂପରେ ତୁମ୍ଭେ ନିତ୍ୟ ଅଭୟ ପ୍ରଦାନ କର । (ଏହି ପ୍ରକାର ଐଂ ହ୍ରୀଂ କ୍ଲୀଂ ଚାମୁଣ୍ଡାୟୈ ବିଚ୍ଚେ) ତୁମ୍ଭେ ଏହି ମନ୍ତ୍ରର ସ୍ୱରୂପ ଅଟ ॥ ୫ ॥ 'ଧାଂ ଧୀଂ ଧୂଂ'ରୂପରେ ଧୂର୍ଜଟୀ(ଶିବ)ଙ୍କର ତୁମ୍ଭେ ପତ୍ନୀ ଅଟ । 'ବାଂ ବୀଂ ବୂଂ'ରୂପରେ ତୁମ୍ଭେ ବାଣୀର ଅଧୀଶ୍ୱରୀ ଅଟ । 'କ୍ରାଂ କ୍ରୀଂ କ୍ରୂଂ'ରୂପରେ କାଳିକା ଦେବୀ, 'ଶାଂ ଶୀଂ ଶୂଂ'ରୂପରେ ମୋର କଲ୍ୟାଣ କର ॥ ୬ ॥ 'ହୁଂ ହୁଂ ହୁଂକାର'ସ୍ୱରୂପିଣୀ, 'ଜଂ ଜଂ ଜଂ' ଜମ୍ଭନାଶିନୀ, 'ଭ୍ରାଂ ଭ୍ରୀଂ ଭ୍ରୂଂ'ରୂପରେ ହେ କଲ୍ୟାଣକାରିଣୀ ଭୈରବୀ ଭବାନୀ ! ତୁମ୍ଭଙ୍କୁ ବାରମ୍ବାର ପ୍ରଣାମ କରୁଛି ॥ ୭ ॥

ଅଂ କଂ ଚଂ ଟଂ ତଂ ପଂ ଯଂ ଶଂ ବୀଂ ଦୁଂ ଐଂ ବୀଂ ହଂ କ୍ଷଂ
ଧିଜାଗ୍ରଂ ଧିଜାଗ୍ରଂ ତ୍ରୋଟୟ ତ୍ରୋଟୟ ଦୀପ୍ତଂ କୁରୁ କୁରୁ ସ୍ୱାହା ॥
ପାଂ ପୀଂ ପୂଂ ପାର୍ବତୀ ପୂର୍ଣ୍ଣା ଖାଂ ଖୀଂ ଖୂଂ ଖେଚରୀ ତଥା ॥ ୮ ॥
ସାଂ ସୀଂ ସୂଂ ସପ୍ତଶତୀ ଦେବ୍ୟା ମନ୍ତ୍ରସିଦ୍ଧିଂ କୁରୁଷ୍ୱ ମେ ॥
ଇଦଂ ତୁ କୁଞ୍ଜିକାସ୍ତୋତ୍ରଂ ମନ୍ତ୍ରଜାଗର୍ତ୍ତିହେତବେ ।
ଅଭକ୍ତେ ନୈବ ଦାତବ୍ୟଂ ଗୋପିତଂ ରକ୍ଷ ପାର୍ବତି ॥
ଯସ୍ତୁ କୁଞ୍ଜିକୟା ଦେବି ହୀନାଂ ସପ୍ତଶତୀଂ ପଠେତ୍ ।
ନ ତସ୍ୟ ଜାୟତେ ସିଦ୍ଧିରରଣ୍ୟେ ରୋଦନଂ ଯଥା ॥

ଇତି ଶ୍ରୀରୁଦ୍ରୟାମଳେ ଗୌରୀତନ୍ତ୍ରେ ଶିବପାର୍ବତୀସଂବାଦେ
କୁଞ୍ଜିକାସ୍ତୋତ୍ରଂ ସମ୍ପୂର୍ଣ୍ଣମ୍ ।*

॥ ଓଁ ତତ୍ସତ୍ ॥

---

'ଅଂ କଂ ଚଂ ଟଂ ତଂ ପଂ ଯଂ ଶଂ ବୀଂ ଦୁଂ ଐଂ ବୀଂ ହଂ କ୍ଷଂ ଧିଜାଗ୍ରଂ ଧିଜାଗ୍ରଂ' ଏ ସବୁକୁ ଭାଙ୍ଗି ଦିଅ ଏବଂ ଦୀପ୍ତ କର । ସ୍ୱାହା କର । 'ପାଂ ପୀଂ ପୂଂ' ରୂପରେ ତୁମେ ପାର୍ବତୀ ପୂର୍ଣ୍ଣା ହୁଅ । 'ଖାଂ ଖୀଂ ଖୂଂ'ରୂପରେ ତୁମ୍ଭେ ଖେଚରୀ (ଆକାଶଗ୍ରିଣୀ) ଅଥବା ଖେଚରୀ ମୁଦ୍ରା ହୁଅ ॥ ୮ ॥ 'ସାଂ ସୀଂ ସୂଂ' ସ୍ୱରୂପିଣୀ ସପ୍ତଶତୀ ଦେବୀଙ୍କ ମନ୍ତ୍ରକୁ ମୋ ପାଇଁ ସିଦ୍ଧ କର । ଏହି କୁଞ୍ଜିକାସ୍ତୋତ୍ର ମନ୍ତ୍ରକୁ ଜାଗ୍ରତ କରିବା ନିମନ୍ତେ ରହିଛି । ଏହାକୁ ଭକ୍ତିହୀନ ପୁରୁଷକୁ ଦେବା ଅନୁଚିତ । ହେ ପାର୍ବତୀ ! ଏହାକୁ ଗୁପ୍ତ ରଖ । ହେ ଦେବୀ ! ଯିଏ କୁଞ୍ଜିକା ବିନା ସପ୍ତଶତୀକୁ ପାଠ କରେ; ତାହାକୁ ସିଦ୍ଧି ପ୍ରାପ୍ତି ହୁଏ ନାହିଁ; ଯେପରି ଅରଣ୍ୟରେ କ୍ରନ୍ଦନ କରିବା ନିରର୍ଥକ ହୋଇଥାଏ ।

ଏହି ପ୍ରକାର ଶ୍ରୀରୁଦ୍ରଯାମଳର ଗୌରୀତନ୍ତ୍ରରେ ଶିବ-ପାର୍ବତୀ-ସଂବାଦରେ ସିଦ୍ଧକୁଞ୍ଜିକାସ୍ତୋତ୍ର ସଂପୂର୍ଣ୍ଣ ହେଲା ।

---

* (ପ୍ରତିଦିନ ପ୍ରାତଃକାଳରେ ଉପର୍ଯ୍ୟୁକ୍ତ ସ୍ତୋତ୍ରକୁ ପାଠ କଲେ ସବୁ ପ୍ରକାରର ବାଧାବିଘ୍ନ ନଷ୍ଟ ହୋଇଯାଏ । ଏହି କୁଞ୍ଜିକାସ୍ତୋତ୍ର ତଥା ଦେବୀସୂକ୍ତ ସହିତ ସପ୍ତଶତୀ ପାଠ କଲେ ପରମ ସିଦ୍ଧି ପ୍ରାପ୍ତ ହୋଇଥାଏ ।) **ମାରଣ**—କାମକ୍ରୋଧନାଶ, **ମୋହନ**—ଇଷ୍ଟଦେବ-ମୋହନ, **ବଶୀକରଣ**—ମନର ବଶୀକରଣ, **ସ୍ତମ୍ଭନ**—ଇନ୍ଦ୍ରିୟମାନଙ୍କର ବିଷୟବାସନା ପ୍ରତି ଉପରତି ଏବଂ **ଉଚ୍ଚାଟନ**—ମୋକ୍ଷପ୍ରାପ୍ତି ନିମନ୍ତେ ଆତୁର ହେବା—ଏସବୁ ଏହି ସ୍ତୋତ୍ରକୁ ଏହି ଉଦ୍ଦେଶ୍ୟରେ ସେବନ କଲେ ସଫଳ ହୁଏ ।

# ସପ୍ତଶତୀଙ୍କ କେତେକ ସିଦ୍ଧ ସଂପୁଟ ମନ୍ତ୍ର

ଶ୍ରୀମାର୍କଣ୍ଡେୟପୁରାଣାନ୍ତର୍ଗତ ଦେବୀମାହାତ୍ମ୍ୟରେ 'ଶ୍ଳୋକ', 'ଅର୍ଧ ଶ୍ଳୋକ' ଏବଂ 'ଉବାଚ' ଆଦି ମିଶି ୭୦୦ଟି ମନ୍ତ୍ର ଅଛି। ଏହି ମାହାତ୍ମ୍ୟ ଦୁର୍ଗାସପ୍ତଶତୀ ନାମରେ ପ୍ରସିଦ୍ଧ। ଏହି ସପ୍ତଶତୀ ଅର୍ଥ, ଧର୍ମ, କାମ ଓ ମୋକ୍ଷ—ଚାରୋଟି ପୁରୁଷାର୍ଥ ପ୍ରଦାନ କରେ। ଯେଉଁ ପୁରୁଷ ଯେଉଁ ଭାବ ଏବଂ ଯେଉଁ କାମନାଦ୍ୱାରା ଶ୍ରଦ୍ଧା ଏବଂ ବିଧିସହିତ ସପ୍ତଶତୀ-ପାରାୟଣ କରେ; ତାହାର ସେହି ଭାବନା ଏବଂ କାମନା ଅନୁସାରେ ନିଶ୍ଚିତ ଭାବରେ ଫଳ-ସିଦ୍ଧି ହୁଏ। ଏହି କଥାକୁ ଅଗଣିତ ପୁରୁଷ ପ୍ରତ୍ୟକ୍ଷ ଭାବରେ ଅନୁଭବ କରିସାରିଛନ୍ତି। ଏଠାରେ ଆମ୍ଭେ କେତେକ ନିର୍ବାଚିତ ମନ୍ତ୍ରକୁ ଉଲ୍ଲେଖ କରିଛୁ। ସେଗୁଡ଼ିକର ସଂପୁଟ ଦେଇ ବିଧିବତ୍ ପାରାୟଣ କରିବାଦ୍ୱାରା ବିଭିନ୍ନ ପୁରୁଷାର୍ଥର ବ୍ୟକ୍ତିଗତ ଏବଂ ସାମୂହିକରୂପରେ ସିଦ୍ଧି ହୁଏ। ଏମାନଙ୍କ ମଧ୍ୟରୁ ଅଧିକାଂଶ ସପ୍ତଶତୀର ମନ୍ତ୍ର ଓ ଅନ୍ୟ କେତେକ ବହିର୍ଭୂତ ଶ୍ଳୋକ ଅଟନ୍ତି।

**(୧) ସାମୂହିକ କଲ୍ୟାଣ ନିମନ୍ତେ**

ଦେବ୍ୟା ଯୟା ତତମିଦଂ ଜଗଦାତ୍ମଶକ୍ତ୍ୟା
ନିଶ୍ଶେଷଦେବଗଣଶକ୍ତିସମୂହମୂର୍ତ୍ତ୍ୟା ।
ତାମମ୍ବିକାମଖିଳଦେବମହର୍ଷିପୂଜ୍ୟାଂ
ଭକ୍ତ୍ୟା ନତାଃ ସ୍ମ ବିଦଧାତୁ ଶୁଭାନି ସା ନଃ ॥

**(୨) ବିଶ୍ୱର ଅଶୁଭ ତଥା ଭୟ ବିନାଶ କରିବା ନିମନ୍ତେ**

ଯସ୍ୟାଃ ପ୍ରଭାବମତୁଲଂ ଭଗବାନନନ୍ତୋ
ବ୍ରହ୍ମା ହରଶ୍ଚ ନ ହି ବକ୍ତୁମଲଂ ବଳଞ୍ଚ ।
ସା ଚଣ୍ଡିକାଖିଳଜଗତ୍‌ପରିପାଳନାୟ
ନାଶାୟ ଚାଶୁଭଭୟସ୍ୟ ମତିଂ କରୋତୁ ॥

**(୩) ବିଶ୍ୱର ରକ୍ଷା ନିମନ୍ତେ**

ଯା ଶ୍ରୀଃ ସ୍ୱୟଂ ସୁକୃତିନାଂ ଭବନେଷ୍ୱଲକ୍ଷ୍ମୀଃ
ପାପାତ୍ମନାଂ କୃତଧିୟାଂ ହୃଦୟେଷୁ ବୁଦ୍ଧିଃ ।
ଶ୍ରଦ୍ଧା ସତାଂ କୁଳଜନପ୍ରଭବସ୍ୟ ଲଜ୍ଜା
ତାଂ ତ୍ୱାଂ ନତାଃ ସ୍ମ ପରିପାଳୟ ଦେବି ବିଶ୍ୱମ୍ ॥

(୪) ବିଶ୍ୱର ଉନ୍ନତି ନିମନ୍ତେ

ବିଶ୍ୱେଶ୍ୱରି ତ୍ୱଂ ପରିପାସି ବିଶ୍ୱଂ
ବିଶ୍ୱାତ୍ମିକା ଧାରୟସୀତି ବିଶ୍ୱମ୍ ।
ବିଶ୍ୱେଶବନ୍ଦ୍ୟା ଭବତୀ ଭବନ୍ତି
ବିଶ୍ୱାଶ୍ରୟା ଯେ ତ୍ୱୟି ଭକ୍ତିନମ୍ରାଃ ॥

(୫) ବିଶ୍ୱବ୍ୟାପୀ ବିପତ୍ତିର ବିନାଶ ନିମନ୍ତେ

ଦେବି ପ୍ରପନ୍ନାର୍ତ୍ତିହରେ ପ୍ରସୀଦ
ପ୍ରସୀଦ ମାତର୍ଜଗତୋଽଖିଳସ୍ୟ ।
ପ୍ରସୀଦ ବିଶ୍ୱେଶ୍ୱରି ପାହି ବିଶ୍ୱଂ
ତ୍ୱମୀଶ୍ୱରୀ ଦେବି ଚରାଚରସ୍ୟ ॥

(୬) ବିଶ୍ୱର ପାପ-ତାପ-ନିବାରଣ ନିମନ୍ତେ

ଦେବି ପ୍ରସୀଦ ପରିପାଳୟ ନୋଽରିଭୀତେ-
ର୍ନିତ୍ୟଂ ଯଥାସୁରବଧାଦଧୁନୈବ ସଦ୍ୟଃ ।
ପାପାନି ସର୍ବଜଗତାଂ ପ୍ରଶମଂ ନୟାଶୁ
ଉତ୍ପାତପାକଜନିତାଂଶ୍ଚ ମହୋପସର୍ଗାନ୍ ॥

(୭) ବିପତ୍ତି-ନାଶ ନିମନ୍ତେ

ଶରଣାଗତଦୀନାର୍ତ୍ତପରିତ୍ରାଣପରାୟଣେ ।
ସର୍ବସ୍ୟାର୍ତ୍ତିହରେ ଦେବି ନାରାୟଣି ନମୋଽସ୍ତୁ ତେ ॥

(୮) ବିପତ୍ତିନାଶ ଓ ଶୁଭପ୍ରାପ୍ତି ନିମନ୍ତେ

କରୋତୁ ସା ନଃ ଶୁଭହେତୁରୀଶ୍ୱରୀ
ଶୁଭାନି ଭଦ୍ରାଣ୍ୟଭିହନ୍ତୁ ଚାପଦଃ ।

(୯) ଭୟନାଶ ନିମନ୍ତେ

(କ) ସର୍ବସ୍ୱରୂପେ ସର୍ବେଶେ ସର୍ବଶକ୍ତିସମନ୍ୱିତେ ।
ଭୟେଭ୍ୟସ୍ତ୍ରାହି ନୋ ଦେବି ଦୁର୍ଗେ ଦେବି ନମୋଽସ୍ତୁ ତେ ॥

(ଖ) ଏତତ୍ତେ ବଦନଂ ସୌମ୍ୟଂ ଲୋଚନତ୍ରୟଭୂଷିତମ୍ ।
ପାତୁ ନଃ ସର୍ବଭୀତିଭ୍ୟଃ କାତ୍ୟାୟନି ନମୋଽସ୍ତୁ ତେ ॥

(ଗ) ଜ୍ୱାଳାକରାଳମତ୍ୟୁଗ୍ରମଶେଷାସୁରସୂଦନମ୍
ତ୍ରିଶୂଳଂ ପାତୁ ନୋ ଭୀତେର୍ଭଦ୍ରକାଳି ନମୋଽସ୍ତୁ ତେ ॥

(୧୦) ପାପ-ନାଶ ନିମନ୍ତେ

ହିନସ୍ତି ଦୈତ୍ୟତେଜାଂସି ସ୍ୱନେନାପୂର୍ଯ୍ୟ ଯା ଜଗତ୍ ।
ସା ଘଣ୍ଟା ପାତୁ ନୋ ଦେବି ପାପେଭ୍ୟୋଽନଃ ସୁତାନିବ ॥

(୧୧) ରୋଗନାଶ ନିମନ୍ତେ

ରୋଗାନଶେଷାନପହଂସି ତୁଷ୍ଟା
ରୁଷ୍ଟା ତୁ କାମାନ୍ ସକଳାନଭୀଷ୍ଟାନ୍ ।
ତ୍ୱାମାଶ୍ରିତାନାଂ ନ ବିପନ୍ନରାଣାଂ
ତ୍ୱାମାଶ୍ରିତା ହ୍ୟାଶ୍ରୟତାଂ ପ୍ରୟାନ୍ତି ॥

(୧୨) ମହାମାରୀ ନାଶ ନିମନ୍ତେ

ଜୟନ୍ତୀ ମଙ୍ଗଳା କାଳୀ ଭଦ୍ରକାଳୀ କପାଳିନୀ ।
ଦୁର୍ଗା କ୍ଷମା ଶିବା ଧାତ୍ରୀ ସ୍ୱାହା ସ୍ୱଧା ନମୋଽସ୍ତୁ ତେ ॥

(୧୩) ଆରୋଗ୍ୟ ଓ ସୌଭାଗ୍ୟ ପ୍ରାପ୍ତି ନିମନ୍ତେ

ଦେହି ସୌଭାଗ୍ୟମାରୋଗ୍ୟଂ ଦେହି ମେ ପରମଂ ସୁଖମ୍ ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥

(୧୪) ସୁଲକ୍ଷଣା ପତ୍ନୀପ୍ରାପ୍ତି ନିମନ୍ତେ

ପତ୍ନୀଂ ମନୋରମାଂ ଦେହି ମନୋବୃତ୍ତାନୁସାରିଣୀମ୍ ।
ତାରିଣୀଂ ଦୁର୍ଗସଂସାରସାଗରସ୍ୟ କୁଳୋଦ୍ଭବାମ୍ ॥

(୧୫) ବାଧା-ଶାନ୍ତି ନିମନ୍ତେ

ସର୍ବାବାଧାପ୍ରଶମନଂ ତ୍ରୈଲୋକ୍ୟସ୍ୟାଖିଳେଶ୍ୱରି ।
ଏବମେବ ତ୍ୱୟା କାର୍ଯ୍ୟମସ୍ମଦ୍‌ବୈରିବିନାଶନମ୍ ॥

(୧୬) ସର୍ବବିଧ ଅଭ୍ୟୁଦୟ ନିମନ୍ତେ

ତେ ସମ୍ମତା ଜନପଦେଷୁ ଧନାନି ତେଷାଂ
ତେଷାଂ ଯଶାଂସି ନ ଚ ସୀଦତି ଧର୍ମବର୍ଗଃ ।
ଧନ୍ୟାସ୍ତ ଏବ ନିଭୃତାତ୍ମଜଭୃତ୍ୟଦାରା
ଯେଷାଂ ସଦାଭ୍ୟୁଦୟଦା ଭବତୀ ପ୍ରସନ୍ନା ॥

(୧୭) ଦାରିଦ୍ର୍ୟଦୁଃଖାଦିନାଶ ନିମନ୍ତେ

ଦୁର୍ଗେ ସ୍ମୃତା ହରସି ଭୀତିମଶେଷଜନ୍ତୋଃ
ସ୍ୱସ୍ଥୈଃ ସ୍ମୃତା ମତିମତୀବ ଶୁଭାଂ ଦଦାସି ।
ଦାରିଦ୍ର୍ୟଦୁଃଖଭୟହାରିଣୀ କା ତ୍ୱଦନ୍ୟା
ସର୍ବୋପକାରକରଣାୟ ସଦାଽଽର୍ଦ୍ରଚିତ୍ତା ॥

(୧୮) ରକ୍ଷା ପାଇବା ନିମନ୍ତେ

ଶୂଳେନ ପାହି ନୋ ଦେବି ପାହି ଖଡ୍‌ଗେନ ଚାମ୍ବିକେ ।
ଘଣ୍ଟାସ୍ୱନେନ ନଃ ପାହି ଚାପଜ୍ୟାନିଃସ୍ୱନେନ ଚ ॥

(୧୯) ସମସ୍ତ ବିଦ୍ୟାପ୍ରାପ୍ତି ଓ ସମସ୍ତ ସ୍ତ୍ରୀମାନଙ୍କ ଠାରେ ମାତୃଭାବପ୍ରାପ୍ତି ନିମନ୍ତେ

ବିଦ୍ୟାଃ ସମସ୍ତାସ୍ତବ ଦେବି ଭେଦାଃ
ସ୍ତ୍ରିୟଃ ସମସ୍ତାଃ ସକଳା ଜଗତ୍ସୁ ।
ତ୍ୱୟୈକୟା ପୂରିତମମ୍ବୟୈତତ୍
କା ତେ ସ୍ତୁତିଃ ସ୍ତବ୍ୟପରା ପରୋକ୍ତିଃ ॥

(୨୦) ସମସ୍ତପ୍ରକାରର କଲ୍ୟାଣ ନିମନ୍ତେ

ସର୍ବମଙ୍ଗଳମଙ୍ଗଲ୍ୟେ ଶିବେ ସର୍ବାର୍ଥସାଧିକେ ।
ଶରଣ୍ୟେ ତ୍ର୍ୟମ୍ବକେ ଗୌରି ନାରାୟଣି ନମୋଽସ୍ତୁ ତେ ॥

(୨୧) ଶକ୍ତିପ୍ରାପ୍ତି ନିମନ୍ତେ

ସୃଷ୍ଟିସ୍ଥିତିବିନାଶାନାଂ ଶକ୍ତିଭୂତେ ସନାତନି ।
ଗୁଣାଶ୍ରୟେ ଗୁଣମୟେ ନାରାୟଣି ନମୋଽସ୍ତୁ ତେ ॥

(୨୨) ପ୍ରସନ୍ନତାପ୍ରାପ୍ତି ନିମନ୍ତେ

ପ୍ରଣତାନାଂ ପ୍ରସୀଦ ତ୍ୱଂ ଦେବି ବିଶ୍ୱାର୍ତ୍ତିହାରିଣି ।
ତ୍ରୈଲୋକ୍ୟବାସିନାମୀଡ୍ୟେ ଲୋକାନାଂ ବରଦା ଭବ ॥

(୨୩) ବିବିଧ ଉପଦ୍ରବରୁ ରକ୍ଷା ପାଇବା ନିମନ୍ତେ

ରକ୍ଷାଂସି ଯତ୍ରୋଗ୍ରବିଷାଶ୍ଚ ନାଗା
ଯତ୍ରାରୟୋ ଦସ୍ୟୁବଳାନି ଯତ୍ର ।
ଦାବାନଲୋ ଯତ୍ର ତଥାବ୍ଧିମଧ୍ୟେ
ତତ୍ର ସ୍ଥିତା ତ୍ୱଂ ପରିପାସି ବିଶ୍ୱମ୍ ॥

(୨୪) ବାଧାମୁକ୍ତ ହୋଇ ଧନ-ପୁତ୍ରାଦିପ୍ରାପ୍ତି ନିମନ୍ତେ

ସର୍ବାବାଧାବିନିର୍ମୁକ୍ତୋ ଧନଧାନ୍ୟସୁତାନ୍ୱିତଃ ।
ମନୁଷ୍ୟୋ ମତ୍ପ୍ରସାଦେନ ଭବିଷ୍ୟତି ନ ସଂଶୟଃ ॥

(୨୫) ଭୁକ୍ତି-ମୁକ୍ତି ପ୍ରାପ୍ତି ନିମନ୍ତେ

ବିଧେହି ଦେବି କଲ୍ୟାଣଂ ବିଧେହି ପରମାଂ ଶ୍ରିୟମ୍ ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥

(୨୬) ପାପନାଶ ତଥା ଭକ୍ତିପ୍ରାପ୍ତି ନିମନ୍ତେ

ନତେଭ୍ୟଃ ସର୍ବଦା ଭକ୍ତ୍ୟା ଚଣ୍ଡିକେ ଦୁରିତାପହେ ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥

(୨୭) ସ୍ୱର୍ଗ ଓ ମୋକ୍ଷ ପ୍ରାପ୍ତି ନିମନ୍ତେ

ସର୍ବଭୂତା ଯଦା ଦେବୀ ସ୍ୱର୍ଗମୁକ୍ତିପ୍ରଦାୟିନୀ ।
ତ୍ୱଂ ସ୍ତୁତା ସ୍ତୁତୟେ କା ବା ଭବନ୍ତୁ ପରମୋକ୍ତୟଃ ॥

(୨୮) ସ୍ୱର୍ଗ ଓ ମୁକ୍ତି ନିମନ୍ତେ

ସର୍ବସ୍ୟ ବୁଦ୍ଧିରୂପେଣ ଜନସ୍ୟ ହୃଦି ସଂସ୍ଥିତେ ।
ସ୍ୱର୍ଗାପବର୍ଗଦେ ଦେବି ନାରାୟଣି ନମୋଽସ୍ତୁ ତେ ॥

(୨୯) ମୋକ୍ଷପ୍ରାପ୍ତି ନିମନ୍ତେ

ତ୍ୱଂ ବୈଷ୍ଣବୀ ଶକ୍ତିରନନ୍ତବୀର୍ଯ୍ୟା
ବିଶ୍ୱସ୍ୟ ବୀଜଂ ପରମାସି ମାୟା ।
ସମ୍ମୋହିତଂ ଦେବି ସମସ୍ତମେତତ୍
ତ୍ୱଂ ବୈ ପ୍ରସନ୍ନା ଭୁବି ମୁକ୍ତିହେତୁଃ ॥

(୩୦) ସ୍ୱପ୍ନରେ ସିଦ୍ଧି-ଅସିଦ୍ଧି ଜାଣିବା ନିମନ୍ତେ

ଦୁର୍ଗେ ଦେବି ନମସ୍ତୁଭ୍ୟଂ ସର୍ବକାମାର୍ଥସାଧିକେ ।
ମମ ସିଦ୍ଧିମସିଦ୍ଧିଂ ବା ସ୍ୱପ୍ନେ ସର୍ବଂ ପ୍ରଦର୍ଶୟ ॥

ଓଓଓ

# ଶ୍ରୀଦେବୀଙ୍କ ଆରତୀ

ଜଗଜନନୀ ଜୟ ! ଜୟ !! (ମା ! ଜଗଜନନୀ ଜୟ ! ଜୟ !!)
ଭୟହାରିଣି, ଭବତାରିଣି, ଭବଭାମିନି ଜୟ ! ଜୟ !! ଜଗ.
ତୂ ହୀ ସତ-ଚିତ-ସୁଖମୟ ଶୁଦ୍ଧ ବ୍ରହ୍ମରୂପା ।
ସତ୍ୟ ସନାତନ ସୁନ୍ଦର ପର-ଶିବ ସୁର-ଭୂପା ॥ ୧ ॥ ଜଗଜନନୀ.
ଆଦି ଅନାଦି ଅନାମୟ ଅବିଚଲ ଅବିନାଶୀ ।
ଅମଲ ଅନନ୍ତ ଅଗୋଚର ଅଜ ଆନଁଦରାଶୀ ॥ ୨ ॥ ଜଗ.
ଅବିକାରୀ, ଅଘହାରୀ, ଅକଲ, କଲାଧାରୀ ।
କର୍ତ୍ତା ବିଧି, ଭର୍ତ୍ତା ହରି, ହର ସଁହାରକାରୀ ॥ ୩ ॥ ଜଗ.
ତୂ ବିଧିବଧୂ, ରମା, ତୂ ଉମା, ମହାମାୟା ।
ମୂଲ ପ୍ରକୃତି ବିଦ୍ୟା ତୂ, ତୂ ଜନନୀ, ଜାୟା ॥ ୪ ॥ ଜଗ.
ରାମ, କୃଷ୍ଣ ତୂ, ସୀତା, ବ୍ରଜରାନୀ ରାଧା ।
ତୂ ବାଞ୍ଛାକଲ୍ପଦ୍ରୁମ, ହାରିଣି ସବ ବାଧା ॥ ୫ ॥ ଜଗ.
ଦଶ ବିଦ୍ୟା, ନବ ଦୁର୍ଗା, ନାନାଶସ୍ତ୍ରକରା ।
ଅଷ୍ଟମାତୃକା, ଯୋଗିନୀ, ନବ ନବ ରୂପ ଧରା ॥ ୬ ॥ ଜଗ.
ତୂ ପରଧାମନିବାସିନି, ମହାବିଲାସିନି ତୂ ।
ତୂ ହୀ ଶ୍ମଶାନବିହାରିଣି, ତାଣ୍ଡବଲାସିନି ତୂ ॥ ୭ ॥ ଜଗ.
ସୁର-ମୁନି-ମୋହିନି ସୌମ୍ୟା ତୁ ଶୋଭାଽଽଧାରା ।
ବିବସନ ବିକଟ-ସରୂପା, ପ୍ରଲୟମୟୀ ଧାରା ॥ ୮ ॥ ଜଗ.
ତୂ ହୀ ସ୍ନେହ-ସୁଧାମୟି, ତୂ ଅତି ଗରଲମନା ।
ରତ୍ନବିଭୂଷିତ ତୂ ହୀ, ତୂ ହୀ ଅସ୍ଥି-ତନା ॥ ୯ ॥ ଜଗ.
ମୂଲାଧାରନିବାସିନି, ଇହ-ପର-ସିଦ୍ଧିପ୍ରଦେ ।
କାଲାତୀତା କାଲୀ, କମଲା ତୂ ବରଦେ ॥୧୦॥ଜଗ.
ଶକ୍ତି ଶକ୍ତିଧର ତୂ ହୀ ନିତ୍ୟ ଅଭେଦମୟୀ ।
ଭେଦପ୍ରଦର୍ଶିନି ବାଣୀ ବିମଲେ ! ବେଦତ୍ରୟୀ ॥୧୧॥ଜଗ.
ହମ ଅତି ଦୀନ ଦୁଖୀ ମା ! ବିପତ-ଜାଲ ଘେରେ ।
ହେଁ କପୂତ ଅତି କପଟୀ, ପର ବାଲକ ତେରେ ॥୧୨॥ଜଗ.
ନିଜ ସ୍ୱଭାବବଶ ଜନନୀ ! ଦୟାଦୃଷ୍ଟି କୀଜୈ ।
କରୁଣା କର କରୁଣାମୟି ! ଚରଣ-ଶରଣ ଦୀଜୈ ॥୧୩॥ଜଗ.

# ଶ୍ରୀ ଅମ୍ବାଦେବୀଙ୍କ ଆରତୀ

ଜୟ ଅମ୍ବେ ଗୌରୀ ମୈୟା ଜୟ ଶ୍ୟାମାଗୌରୀ ।
ତୁମକୋ ନିଶିଦିନ ଧ୍ୟାୱତ ହରି ବ୍ରହ୍ମା ଶିୱ ରୀ ॥ ୧ ॥ ଜୟ ଅମ୍ବେ.
ମାଁଗ ସିଂଦୂର ବିରାଜତ ଟୀକୋ ମୃଗମଦକୋ ।
ଉଜ୍ଜ୍ୱଲସେ ଦୋଉ ନୈନା, ଚଂଦ୍ରୱଦନ ନୀକୋ ॥ ୨ ॥ ଜୟ ଅମ୍ବେ.
କନକ ସମାନ କଲେୱର ରକ୍ତାମ୍ବର ରାଜୈ ।
ରକ୍ତ-ପୁଷ୍ପ ଗଲ ମାଲା, କଣ୍ଠନପର ସାଜୈ ॥ ୩ ॥ ଜୟ ଅମ୍ବେ.
କେହରି ବାହନ ରାଜତ, ଖଡ୍‌ଗ ଖପର ଧାରୀ ।
ସୁର-ନର-ମୁନି-ଜନ ସେୱତ, ତିନକେ ଦୁଖହାରୀ ॥ ୪ ॥ ଜୟ ଅମ୍ବେ.
କାନନ କୁଣ୍ଡଲ ଶୋଭିତ, ନାସାଗ୍ରେ ମୋତୀ ।
କୋଟିକ ଚଂଦ୍ର ଦିୱାକର ସମ ରାଜତ ଜ୍ୟୋତୀ ॥ ୫ ॥ ଜୟ ଅମ୍ବେ.
ଶୁମ୍ଭ ନିଶୁମ୍ଭ ୱିଦାରେ, ମହିଷାସୁର-ଘାତୀ ।
ଧୂମ୍ରୱିଲୋଚନ ନୈନା ନିଶିଦିନ ମଦମାତୀ ॥ ୬ ॥ ଜୟ ଅମ୍ବେ.
ଚଣ୍ଡ ମୁଣ୍ଡ ସଂହାରେ, ଶୋଣିତବୀଜ ହରେ ।
ମଧୁ କୈଟଭ ଦୋଉ ମାରେ, ସୁର ଭୟହୀନ କରେ ॥ ୭ ॥ ଜୟ ଅମ୍ବେ.
ବ୍ରହ୍ମାଣୀ, ରୁଦ୍ରାଣୀ ତୁମ କମଲାରାନୀ ।
ଆଗମ-ନିଗମ-ବଖାନୀ, ତୁମ ଶିୱ ପଟରାନୀ ॥ ୮ ॥ ଜୟ ଅମ୍ବେ.
ଚୌଁସଠ ଯୋଗିନି ଗାୱତ, ନୃତ୍ୟ କରତ ଭୈରୂଁ ।
ବାଜତ ତାଲ ମୃଦଂଗା ଔ ବାଜତ ଡମରୂ ॥ ୯ ॥ ଜୟ ଅମ୍ବେ.
ତୁମ ହି ଜଗକୀ ମାତା, ତୁମ ହୀ ହୋ ଭରତା ।
ଭକ୍ତନକୀ ଦୁଖ ହରତା ସୁଖ ସମ୍ପତି କରତା ॥୧୦॥ ଜୟ ଅମ୍ବେ.
ଭୁଜା ଚ୍ୱର ଅତି ଶୋଭିତ, ବର-ମୁଦ୍ରା ଧାରୀ ।
ମନବାଞ୍ଛିତ ଫଳ ପାୱତ, ସେୱତ ନର-ନାରୀ ॥୧୧॥ ଜୟ ଅମ୍ବେ.
କଂଚନ ଥାଲ ବିରାଜତ ଅଗର କପୁର ବାତୀ ।
(ଶ୍ରୀ) ମାଲକେତୁମେଁ ରାଜତ କୋଟିରତନ ଜ୍ୟୋତୀ ॥୧୨॥ ଜୟ ଅମ୍ବେ.
(ଶ୍ରୀ) ଅମ୍ବେଜୀକୀ ଆରତି ଜୋ କୋଇ ନର ଗାୱୈ ।
କହତ ଶିୱାନଂଦ ସ୍ୱାମୀ, ସୁଖ ସମ୍ପତି ପାୱୈ ॥୧୩॥ ଜୟ ଅମ୍ବେ.

ଡଡଡ

# ଦେବୀମୟୀ

**ତବ ଚ କା କିଲ ନ ସ୍ତୁତିରମ୍ବିକେ !**
**ସକଲଶବ୍ଦମୟୀ କିଲ ତେ ତନୁଃ ॥**
**ନିଖିଳମୂର୍ତ୍ତିଷୁ ମେ ଭବଦନ୍ୱୟୋ**
**ମନସିଜାସୁ ବହିଃପ୍ରସରାସୁ ଚ ॥**
**ଇତି ବିଚିନ୍ତ୍ୟ ଶିବେ ! ଶମିତାଶିବେ !**
**ଜଗତି ଜାତମୟତ୍ନବଶାଦିଦମ୍ ।**
**ସ୍ତୁତିଜପାର୍ଚ୍ଚନଚିନ୍ତନବର୍ଜିତା**
**ନ ଖଲୁ କାଚନ କାଲକଲାସ୍ତି ମେ ॥**

'ହେ ଜଗଦମ୍ବିକେ ! ସଂସାରରେ ଏପରି କେଉଁ ବାଙ୍ଗ୍‌ମୟ ରହିଛି; ଯେକି ତୁମର ସ୍ତୁତି ନୁହେଁ; କାରଣ ସକଳ ବାଙ୍ଗ୍‌ମୟ ତୁମର ହିଁ ଶରୀର ଅଟେ । ହେ ଦେବି ! ବର୍ତ୍ତମାନ ମୋ ମନରେ ସଙ୍କଳ୍ପବିକଳ୍ପାତ୍ମକ ରୂପରେ ଉଦିତ ହେଉଥିବା ଓ ସଂସାରରେ ଦୃଶ୍ୟରୂପରେ ସମ୍ମୁଖକୁ ଆସୁଥିବା ସମସ୍ତ ଆକୃତିଗୁଡ଼ିକରେ ଆପଣଙ୍କ ସ୍ୱରୂପର ଦର୍ଶନ ହେଉଛି । ହେ ସମସ୍ତ ଅମଙ୍ଗଳଧ୍ୱଂସକାରିଣୀ ! ହେ କଲ୍ୟାଣସ୍ୱରୂପେ ଶିବେ ! ଏହି କଥାକୁ ଚିନ୍ତା କରି ବର୍ତ୍ତମାନ କୌଣସି ଚେଷ୍ଟା ନ କରି ସମସ୍ତ ଚରାଚର ଜଗତ୍‌ରେ ମୋର ଏହି ସ୍ଥିତି ହୋଇଯାଇଛି ଯେ ମୋ ସମୟର କ୍ଷୁଦ୍ରତମ ଅଂଶ ମଧ୍ୟ ତୁମର ସ୍ତୁତି, ଜପ, ପୂଜା ଅଥବା ଧ୍ୟାନରହିତ ନୁହେଁ । ଅର୍ଥାତ୍ ମୋର ସମସ୍ତ ଜାଗତିକ ଆଗ୍ରର ବ୍ୟବହାର ତୁମର ଭିନ୍ନ ଭିନ୍ନ ରୂପ ପ୍ରତି ଯଥୋଚିତ ରୂପରେ ବ୍ୟବହୃତ ହେବାରୁ ତୁମର ପୂଜାରୂପରେ ପରିଣତ ହୋଇଯାଇଛି ।'

—ମହାମାହେଶ୍ୱର ଆଗ୍ରର୍ଯ୍ୟ ଅଭିନବଗୁପ୍ତ



# Gita Press, Gorakhpur

**Our Publications, Kalyan and Kalyana-Kalpataru available at :**

| | | |
|---|---|---|
| **Gorakhpur**—273005 | Gita Press—P.O. Gita Press | **© (0551) 2334721, 2331250; Fax 2336997** |
| | website:www.gitapress.org / e-mail:booksales@gitapress.org | |
| **Delhi**— 110006 | 2609, Nai Sarak | **© (011) 23269678; Fax 23259140** |
| **Kolkata**— 700007 | Gobind Bhavan-Karyalaya, 151, Mahatma Gandhi Road | |
| | e-mail : gobindbhawan@gitapress.org, | **© (033) 22686894; Fax 22680251** |
| **Mumbai**— 400002 | 282, Samaldas Gandhi Marg (Princess Street) Near Marine Lines Station | **© (022) 22030717** |
| **Kanpur**— 208001 | 24/55, Birhana Road | **© (0512) 2352351; Fax 2352351** |
| **Patna**— 800004 | Ashok Rajpath, Opposite Women's Hospital | **© (0612) 2300325** |
| **Ranchi**— 834001 | Cart Sarai Road, Upper Bazar | **© (0651) 2210685** |
| **Surat**— 395001 | Vaibhav Apartment, Opposite Nutan Niwas, Bhatar Road e-mail : suratdukan@gitapress.org | **© (0261) 2237362, 2238065** |
| **Indore**— 452001 | G-5, Shree Vardhan, 4 R.N.T. Marg | **© (0731) 2526516, 2511977** |
| **Jalgaon**— 425001 | 7, Bhim Singh Market Near Railway Station | **© (0257) 2226393;** |
| **Hyderabad** —500095 | 41, 4-4-1; Dilshad Plaza, Sultan Bazar | **© (040) 24758311** |
| **Nagpur**— 440002 | Shriji Kripa Complex, 851, New Etawari Road | **© (0712) 2734354** |
| **Cuttack**— 753009 | Bhartiya Towers, Badam Badi | **© (0671) 2335481** |
| **Raipur**— 492009 | Mittal Complex, Ganjpara, Telghani Chowk | **© (0771) 4034430** |
| **Varanasi**— 221001 | 59/9, Nichibag | **© (0542) 2413551** |
| **Haridwar**—249401 | Sabjimandi, Motibazar | **© (01334) 222657** |
| **Rishikesh**— 249304 | Gita Bhawan, P.O.-Swargashram e-mail : gitabhawan@gitapress.org | **© (0135) 2430122, 2432792** |
| **Coimbatore** — 641018 | Gita Press Mansion, 8/1M, Racecourse | **© (0422) 3202521** |
| **Bangalore** — 560027 | #15, 4th 'E' Cross, K.S. Garden, Lalbagh Road | **© (080) 22955190, 32408124** |

**Station-Stalls—** **Delhi** (Platform No. 12); **New Delhi** (No. 12-13); **Hazarat Nizamuddin** [Delhi] (No. 4-5); **Kota** [Rajasthan] (No. 1); **Bikaner** (No. 1); **Gorakhpur** (No. 1); **Kanpur** (No. 1); **Lucknow** [N.E. Railway]; **Varanasi** (No. 4-5); **Mughal Sarai** (No. 3-4); **Haridwar** (No. 1); **Patna** (Main Entrance); **Ranchi** (No. 1); **Dhanbad** (No. 2-3); **Muzaffarpur** (No. 1); **Samastipur** (No. 2); **Howrah** (No. 5 & 18 Both); **Kolkata** (No. 1); **Sealdah Main** (No. 8); **Asansol** (No. 5); **Cuttack** (No. 1); **Bhubaneshwar** (No. 1); **Aurangabad** [Maharashtra] (No. 1); **Secunderabad** [A.P.] (No.1); **Guwahati** (No. 1); **Kharagpur** (No.1-2); **Raipur** [Chhattisgarh] (No. 1); **Bangalore** (No.1); **Yesvantpur** (No.6); **Sri Satya Sai Prashanti Nilayam** [South Central Railway] (No.1) and **I.S.B.T. (Delhi)**

**Retail Counters**

| | |
|---|---|
| **Churu**— 331001 | Rishikul-Brahmacharyashram, Purani Sarak; **© (01562) 252674** |
| **Rishikesh** —249192 | Muni Ki Reti |
| **Tirupati** — 517504 | Shop No. 56, T.T.D. Mini Shopping Complex, Tirumalai Hills |
| **Berhampore**— 742101 | Municipal Market Complex, Block-B, Stall No. 57 to 60, I[st] Floor, K.N. Road (Murshidabad) |

ISBN 81-293-0399-X




**Code 1476**